ରାଧାନାଥ ରଥ ସ୍ମାରକ ପ୍ରକାଶନ

# ବାବୁଜୀ ଓ 'ସମାଜ'



କିଶୋର ଶତପଥୀ, କାନନ ଦାସ,
ଅଶୋକ ଦାସ, ତପନ ମିଶ୍ର

ରାଧାନାଥ ରଥ ସ୍ମାରକ ପ୍ରକାଶନ

# ବାବୁଜୀ ଓ 'ସମାଜ'

କିଶୋର ଶତପଥୀ, କାନନ ଦାସ,

ଅଶୋକ ଦାସ, ତପନ ମିଶ୍ର

ଶିକ୍ଷାସଂଧାନ, ଭୁବନେଶ୍ୱର.

ରାଧାନାଥ ରଥ ସ୍ମାରକ ପ୍ରକାଶନ

ବାବୁଜୀ ଓ 'ସମାଜ'

କିଶୋର ଶତପଥୀ, କାନନ ଦାସ,

ଅଶୋକ ଦାସ, ତପନ ମିଶ୍ର



ପ୍ରକାଶକ:

ଶିକ୍ଷାସନ୍ଧାନ,

ଏନ୍. ଡି. ୭, ଭି.ଆଇ.ପି. ଏରିଆ,

ଆଇ.ଆର୍. ସି. ଭିଲେଜ,

ଭୁବନେଶ୍ୱର, ୭୫୧ ୦୧୫

ଫେବୃଆରୀ, ୨୦୧୮

---

BABUJI O 'SAMAJA'

Kishore Satpathi, Kanan Das,
Ashok Das, Tapan Mishra.



Publisher:
Shikshasandhan;
N.D. -7, VIP Area,
Bhubaneswar, 751 015.

February, 2018.

# ସୂଚିପତ୍ର

# ମନେପଡେ

ବାବୁଜୀ (ମୋର ପିତା, ରାଧାନାଥ ରଥ) ଯିବାର କୋଡିଏ ବର୍ଷ ହେଲା । ତାଂକ ସହିତ ସମାଜରେ କାମ କରିଥିବା, ବିଶେଷତ: ସଂପାଦକୀୟ ବିଭାଗରେ, ଅଧିକାଂଶ ବ୍ୟକ୍ତି ଏବେ ଆଉ ନାହାଂତି । ଅନେକ ଚାଲିଗଲେଣି । ଯେଉଁ କେତେଜଣ ଅଛଂତି, ସେମାନେ ସେବାନିବୃତ୍ତ ଓ ଅନ୍ୟ କାମରେ ବ୍ୟସ୍ତ । ଖାଲି ତପନକୁମାର ମିଶ୍ରେ ଏବେ ସମାଜରେ ଅଛଂତି, ନିକଟ ଭବିଷ୍ୟତରେ ସେବାନିବୃତ୍ତ ହେବେ ।

ମୁଁ ଭାବିଲି ସେ ଅଳ୍ପ କେତେ ଜଣଂକ ଭିତରୁ ଚାରିଜଣ, ଯିଏ ଘନିଷ୍ଠ ଭାବରେ ତାଂକ ସହ କାମ କରିଥିଲେ, ତାଂକୁ ଅନୁରୋଧ କରିବି ତାଂକର ବାବୁଜୀ ଓ ସମାଜରେ ଅନୁଭୂତି କଥା ଲେଖିରଖିବାକୁ । ତାହା ସମାଜର, ସେତେବେଳର ଓଡିଆ ସାଂବାଦିକତାର ଏବଂ ସେ ଦୃଷ୍ଟିରୁ ଆଧୁନିକ ଓଡିଆ ସମାଜର ଇତିହାସର ବିଷୟବସ୍ତୁ ଭାବରେ ରହିବ । ସେମାନେ ମୋ ଅନୁରୋଧ ରକ୍ଷା କରି ଲେଖିଥିବାରୁ ମୁଁ ସେମାନଂକ ନିକଟରେ କୃତଜ୍ଞ ।

ସେମାନଂକ ଲେଖା ପଢିଲାବେଳେ ମତେ ସମାଜ ବାବଦରେ ମୋର ଅନେକ ବ୍ୟକ୍ତି ଓ ଘଟଣା ମନେପଡିଲା । ବୟସ ବଢିଲାରୁ ଅନେକ କଥା ଭୁଲି ହୋଇଯାଏ । ବାକି, ଏକେବାରେ ବ୍ୟକ୍ତିଗତ ବିଷୟର ମହତ୍ୱ ନାହିଁ । ଆଜି ଯାହା ମନେପଡୁଚି, ତହା ଲେଖିରଖୁଚି ।

ମୁଁ ୧୨୩୪ ମସିହାରେ ଆଠଗଡରୁ ଆସି କଟକରେ ରହିଲା ପରେ ମୋର ସମାଜ ଅଫିସକୁ ଯିବା ଆରଂଭ ହେଲା । ଆମେ ରହୁଥିବା ଘରର ଏକ ପଟେ ସମାଜର ସଂପାଦକୀୟ ବିଭାଗ ଓ ଆରପଟେ ଆମ ରହିବା ଜାଗା । ସଂପାଦକୀୟ ବିଭାଗ ସେଠାରେ ମୂଳରୁ ନଥିଲା । ଆମେ ସେଠାକୁ ଆସିଲା

ବେଳକୁ ନଂଦବାବୁ (ଶ୍ରୀ ନଂଦକିଶୋର ଦାସ, ପରେ ଓଡିଶା ବିଧାନସଭାର ସଭାପତି) ସେଠାରେ ରହୁଥିଲେ । କିଛିକାଳପରେ, ସେ ସେଠାରୁ ଚାଲିଯିବାରୁ ସଂପାଦକୀୟ ବିଭାଗ ସେଠାକୁ ଆସିଲା – ବାସ୍ତବିକ ସେଠାରେ ଖୋଲିଲା କହିବାଟା ଠିକ୍ ହେବ । ସମାଜର ବାକି ସବୁ ବିଭାଗ ଆମ ଗଳିରୁ ବାହାରି ରାସ୍ତା ଡେଇଁଲେ ବାଁପଟେ ପାଲିତଂକ ଠାରୁ ଭଡାରେ ନିଆଯାଇଥିବା ଘରେ ଥିଲା । ସମାଜ ସେ ଜାଗାରେ ୧୨୨୭ରୁ ୧୨୬୦ ପର୍ଯ୍ୟଂତ ଥିଲା ।

ସମାଜର ମୁଖ୍ୟ ଅଫିସକୁ ଗଲେ ଉପର ମହଲାର ପ୍ରଥମ ବଖରାରେ ଥିଲା ସଂପାଦକ ପଂଡିତ ଲିଂଗରାଜ ମିଶ୍ରଂକ ବସିବା ଜାଗା । (ଆମେ ଭାଇ-ଭଉଣୀ ତାଂକୁ ମଉସା ବୋଲି ସଂବୋଧନ କରୁଥିଲୁ) । ମଉସା ସବୁଦିନ କଟକରେ ନଥାଂତି । ସେ କଂଗ୍ରେସ ନେତା, ତେଣୁ ଅନେକ ସମୟରେ ଗସ୍ତରେ ଥାଆଂତି । କଟକରେ ଥିଲାବେଳେ ସକାଳୁ ଅଫିସକୁ ଆସଂତି । ବେଳେବେଳେ ସଂପାଦକୀୟ ଲେଖଂତି । ତାଂକ ପାଖ ହଲ୍ ରେ ପରିଚାଳନା ବିଭାଗର ଦିଜଣ ବସଂତି । ଜଣେ ହେଲେ ଫକିରବାବୁ (ଶ୍ରୀ ଫକିରଚରଣ ଦାସ) । ସେ ବାବୁଜୀଂକ ତଳକୁ ପ୍ରଧାନ ମ୍ୟାନେଜର । ମାତ୍ର ପରିଚାଳନାର ବିଭିନ୍ନ କାମ ସାଂଗକୁ ମଫସଲର ସଂବାଦ ପ୍ରତିଦିନର ସମାଜପାଇଁ ଲେଖିବା ବି ଥିଲା ତାଂକର ଦାୟିତ୍ୱ । ୧୨୪୦ ବେଳକୁ ସମାଜର କାମ ବଢିଲାଯୋଗୁଁ ତାଂକୁ ସଂବାଦଲେଖା କାମରୁ ଅବ୍ୟାହତି ମିଳି, ସେ ପୂର୍ଣ୍ଣବେଳ ପରିଚାଳନା ଦେଖିଲେ ।

ଦ୍ୱିତୀୟ ବ୍ୟକ୍ତି ଥିଲେ ଚୈତନବାବୁ (ଶ୍ରୀ ଚୈତନ୍ୟଚରଣ ଦାସ) । ସେ ଥିଲେ ଆକାଉଂଟାଂଟ । ପ୍ରଥମରୁ ସେ ଏକୁଟିଆ ଥିଲେ । କାମ ବଢିଲାରୁ ଅନ୍ୟ ଲୋକ ରହିଲେ । ମାତ୍ର ଚୈତନବାବୁ ଶେଷ ପର୍ଯ୍ୟଂତ ମୁଖ୍ୟ ଥିଲେ । ବାସ୍ତବିକ ସେବାନିବୃତ୍ତି ପରେ ବି ହିସାବ ବିଭାଗରେ କୌଣସି ଖାସ ହିସାବ କାମରେ ତାଂକୁ ରଖାଯାଇଥିଲା । ମାତ୍ର ସେ ଜୀବନରେ ଯାହା କେବେ

କରିନଥିଲେ – ମାନେ ପଇସାର ଅପବ୍ୟବହାର - କରିବାରୁ ଧରାପଡିଲାରୁ ପ୍ରେସରେ ସମସ୍ତେ ଆଶ୍ଚର୍ଯ ମିଶ୍ରିତ ଦୁ:ଖ ବ୍ୟକ୍ତ କଲେ । ମୁଁ ସେତେବେଳେ ଛୁଟିରେ କଟକ ଯାଇଥିବାବେଳେ ଏ କଥା ଶୁଣି ଆଶ୍ଚର୍ଯ ହେଲି । ବାବୁଜୀ ତାଂକଉପରେ ରାଗିଲେ ସତ, ମାତ୍ର ସେ କ୍ଷମାପ୍ରାର୍ଥନାକରି ଟଂକା ଫେରାଇଦେଲାରୁ ତାଂକୁ କାମରୁ କାଢିଲେନାହିଁ । ଉପର ମହଲାର ବାକି ଜାଗାରେ କଂପୋଜଖାନା ଥିଲା ।

ତଳ ମହଲାରେ ଆଗ ଥିଲା କର୍ମଚାରୀଂକ ହାଜିରା ଅଫିସ ଓ ପ୍ରୁଫ ସଂଶୋଧନ ବିଭାଗ । ମୁଁ ଦେଖିଲାବେଳେ ସେଠାରେ ମୁଖ୍ୟଥିଲେ ପଂଡିତ ଭୁବନେଶ୍ବର ମିଶ୍ର । ମୁଁ ବହୁପରେ ଗୋପବଂଧୁଂକ ସମୟର ଚିଠିପତ୍ର ପଢିଲାବେଳେ ଜାଣିଲି ସେ ସତ୍ୟବାଦୀ କାଳରୁ ସମାଜରେ ଥିଲେ । ଯେତେଦୂର ମନେ ଅଛି, 1940 ଦଶକର ଆରଂଭରେ ସେ ସମାଜ ଛାଡି ରାଷ୍ଟ୍ରଭାଷା ପ୍ରେସକୁ ଗଲେ । ସତ୍ୟବାଦୀରେ ଥିଲାବେଳେ ଦାସେ ଆପଣେ ତାଂକ କାମରେ ସେତେ ସଂତୁଷ୍ଟ ନଥିଲେ । ତଥାପି ସେ ବହୁକାଳ ରହିଲେ । ଅନ୍ୟମାନଂକ ଭିତରେ ଥିଲେ ଆର୍ତତ୍ରାଣ ମିଶ୍ର, ଉଦୟନାଥ ଷଡଂଗୀ ଓ ପଂଡିତ ଗଦାଧର ମହାପାତ୍ର । ଏମାନଂକର ପ୍ରଧାନ କାମ ଥିଲା ସମାଜର ପ୍ରତିଦିନର ପ୍ରୁଫ୍ ସଂଶୋଧନ ସାଂଗକୁ ଛପା ହେବାପାଇଁ ଆସିଥିବା ବହିମାନଂକର ପ୍ରୁଫ୍ ସଂଶୋଧନ । ଆର୍ତବାବୁ ସମାଜ କାମ ଛଡା ସକାଳ-ସଂଧ୍ୟାରେ ପିଲାଂକୁ ଟିଉଶନ କରୁଥିଲେ । ମୁଁ କଟକ ଆସିଲାପରେ ପଂଚମ ଓ ଷଷ୍ଠ ଶ୍ରେଣୀରେ ପଢିଲାବେଳେ ଟିଉଶନପାଇଁ ତାଂକପାଖକୁ ସଂଧ୍ୟାରେ ଘଂଟାଏ ଯାଉଥିଲି ।

ଉଦୟନାଥବାବୁ 1940 ଦଶକର ଆରଂଭରେ ସଂପାଦକୀୟ ବିଭାାଗକୁ ଆସି ମଫସଲ ଖବର ଲେଖିବା ଓ ପରେ ପେଜ୍ ବସେଇବା କାମ କରିବାକୁ ଆରଂଭ କଲେ । ମୋର ତାଂକର ଭଲ ପରିଚୟ-ସଂବଂଧ ସେ

ଯିବାପର୍ଯ୍ୟଂତ ରହିଥିଲା । ବାବୁଜୀ ମଂତ୍ରୀ ଥିବାବେଳେ ମୁଁ କେତେବେଳେ ସମାଜପାଇଁ ଲେଖା ଦେଲେ ସେ ତାକୁ ପଢି ଉପଯୁକ୍ତ ମନେ କଲେ ଛାପୁଥିଲେ । ଥରେ ମୋର ଜଣେ ସରକାରୀ କାମ କରୁଥିବା ସାଥୀଂକର ମତେ ଭାରି ଆକର୍ଷକ ଲାଗିଥିବା ଲେଖା, ସେ ସରକାରୀ ଚାକିରିଆ ଥିବାରୁ ଛଦ୍ମ ନାଆଁରେ ଛାପିବେ କି ବୋଲି ତାଂକୁ ପ୍ରଥମ ଲେଖାଟି ଦେଖାଇ ପଚାରିଲି । ଲେଖା ପଢି ସେ ଭାରି ଖୁସି ହୋଇ ଛାପିବେ ବୋଲି କହିଲେ । ପ୍ରତି ସପ୍ତାହରେ ମୋ ସାଂଗ, ବରଗଡ଼ର ପ୍ରଣବାନଂଦ ତ୍ରିପାଠୀଂକ (ବହୁ କାଳରୁ ଚାଲିଗଲେଣି) ଆଠଟି ଲେଖା ଏକ ଛଦ୍ମ ନାଆଁରେ ଛାପିଲେ । ଲେଖା ଭାରି ଆଦୃତ ହେଲା ବୋଲି ସମାଜକୁ ପତ୍ର ବ୍ୟବହାରରୁ ଜଣାପଡିଲା । ମାତ୍ର ଉଦୟନାଥବାବୁ ତାଂକ ନାଆଁ କାହାକୁ ଜଣାଇଲେ ନାହିଁ । ଉଦୟନାଥବାବୁ ପିଲା ଓ ବଡଂକପାଇଁ ଅନେକ ବହି ଲେଖିଥିଲେ । ସମାଜରେ ଶେଷକୁ ତାଂକୁ କୌଣସି ପୁରୁଣା କାମରୁ ଅବ୍ୟାହତିଦେଇ ତରୁଣ ଉପସଂପାଦକଂକୁ ସେ କାମ ଦେଲାରୁ ସେ ଭାରି ରାଗରେ ସମାଜ ଛାଡିଲେ ବୋଲି ଶୁଣିଲି । ମାତ୍ର ରାଗରେ ସେ ବାବୁଜୀଂକ ବିରୋଧରେ ଅନ୍ୟ ଏକ ସଂବାଦପତ୍ରରେ ମାନହାନୀକାରକ ଲେଖା ଲେଖିଲେ । ମୁଁ କଟକ ଛୁଟିରେ ଆସିଥିଲାବେଳେ ସେ ଘୋର ଦେହ ଖରାପରେ ପଡିଚଂତି ଶୁଣି ତାଂକୁ ଦେଖିବାପାଇଁ ଗଲି । ସେ କଥା କହିବା ଅବସ୍ଥାରେ ନଥିଲେ । ମାତ୍ର ମତେ ଦେଖି ମୋ ହାତ ଧରି ଖାଲି ଆଖିରୁ ଲୁହ ଗଡାଇଲେ । ମୁଁ ବ୍ୟସ୍ତ ହୋଇ ବିଦାୟ ନେଲି – ଶେଷ ବିଦାୟ । ବାବୁଜୀ ଗଲାପରେ ତାଂକ କାଗଜପତ୍ର ସବୁ ରଖିବାପାଇଁ ଦେଖୁଥିବାବେଳେ କେତେକ ଚିଠିପତ୍ରରୁ ସେ ଟଂକାପାଇଁ ଓ ରାଗଭରରେ ଯାହା କଲେ ବୋଲି ଜାଣିଲି । ମତେ ଦେଖିଲାବେଳକୁ ବୋଧହୁଏ ସେହିକଥା ମନକୁ ଆସି ଆଖିରୁ ଲୁହ ଗଡାଇଥିଲେ । ସେ ସତ୍ୟବାଦୀ ସ୍କୁଲର ଛାତ୍ର ଥିଲେ ଓ ସେକାଳର ଅନେକଂକ ସହିତ ତାଂକର ଭଲ ପରିଚୟ ଥିଲା । ପଂଡିତ ଗଦାଧର ମହାପାତ୍ର ପଛକୁ ମୁଖ୍ୟ

ସଂଶୋଧକ ହେଲେ । ଏମାନେ ସମସ୍ତେ ଶୁଦ୍ଧ ଓଡିଆ ଜାଣିଥିବାରୁ ସଂଶୋଧନ କାମରେ ପକ୍କାଥିଲେ । ସଂଦେହରେ ଥିଲେ ଅନ୍ୟମାନେ ତାଂକୁ ପଚାରଂତି ।

ଏମାନଂକ ଅଫିସ ଛଡା ତଳ ମହଲାରେ ଥିଲା କଂପୋଜଖାନା, ଦପ୍ତରୀଖାନା, ସତ୍ୟବାଦୀ କାଳରୁ ଛପାପାଇଁ ବ୍ୟବହାର ହେଉଥିବା ଏକ ହ୍ୟାଂଡପ୍ରେସ୍, ଏକ ଟ୍ରେଡ୍ଲ ମଶିନ୍, ଏକ କାଗଜ କଟା ଯଂତ୍ର ଏବଂ ଦୈନିକ ସମାଜ ଛପା ହେବାପାଇଁ ଏକ ଫ୍ଲାଟ୍ ବେଡ୍ ଛପା ମଶିନ୍ । ସ୍କୁଲପିଲା ହିସାବରେ ପ୍ରାୟ ସମସ୍ତେ ମତେ ଚିହ୍ନୁଥିଲେ । ଦପ୍ତରୀଖାନାର ମୁଖ୍ୟ ଥିଲେ ଲାଲା । ତାଂକ ଦି ପୁଅ ଫ୍ଲାଟ ବେଡ୍ ମଶିନର ଚାଳକ ଥିଲେ । ବାସ୍ତବିକ, ପରେ ସମାଜର ଆଉ ଦ୍ରୁତଗତିରେ ଛାପିବା ଫ୍ଲାଟ ବେଡ୍ ଛପାଯଂତ୍ର ଓ ପରେ ରୋଟରୀ ଯଂତ୍ର ଆସିଲା । ଏ ସବୁରେ ଲାଲାଂକ ପୁଅ, ନାତିମାନେ ହିଁ କାମ କଲେ ।

1940 ମସିହା ପୂର୍ବରୁ ସମାଜର ଡାକରୁ ଆସିଥିବା ମଫସଲ ଖବର ଫକିରବାବୁ ଲେଖୁଥିଲେ । ବାବୁଜୀ ଘରେ ତାଂକ ବଖରାରେ ବସି ବାକି ସବୁ ଖବର – ମାନେ ଓଡିଶା, ଦେଶ-ବିଦେଶର ଖବର, ଯାହା ସଂବାଦଦାତାମାନେ ଏବଂ ଏ.ପି. ଓ ୟୁ.ପି. ଭଳି ସଂବାଦ ଅନୁଷ୍ଠାନମାନ ତାରରେ ପଠାଉଥିଲେ ତାହାର ଅନୁବାଦ ଡାକୁଥିଲେ ଓ କେହିଜଣେ ଲେଖିନେଉଥିଲେ । ତା' ବାଦ, ଲିଂଗରାଜବାବୁ ନଥିବାବେଳେ ସେ ସଂପାଦକୀୟ ଓ ସଂବାଦ-ସଂକେତ ଲେଖୁଥିଲେ । ସେତେବେଳେ ଆଉକେହି ଉପ-ସଂପାଦକ ନଥିଲେ । ମାତ୍ର ଦ୍ୱିତୀୟ ମହାଯୁଦ୍ଧ ଆରଂଭ ହେବାପରେ ଖବର ବହୁତ ବଢିଲା । ତେଣୁ, ଉପ-ସଂପାଦକମାନେ ନିଯୁକ୍ତ ହେଲେ । ବାବୁଜୀ ଓ ଆମେ ରହୁଥିବା ଘରର ଯେଉଁପଟେ ନଂଦବାବୁ ରହୁଥିଲେ, ସେପଟଟା ସେ ଚାଲିଯିବାରୁ ଖାଲି ହେଲା । ସେଠାରେ ଉପ-ସଂପାଦକଂକ ବିଭାଗ ଖୋଲିଲା । ବାସ୍ତବିକ୍, ସେଠାରେ ଏକ

ବଡ ହଲ୍ ଥିଲା ଓ ଏକ ବଡ ଟେବୁଲର ଏକ ପଟେ ସେମାନେ ବସି ଲେଖାଲେଖି କରୁଥିଲେ । ସେ ବଡ ହଲ୍ ପାଖରେ ଏକ ଛୋଟ ବଖରା ଥିଲା । ଉଦୟନାଥବାବୁ ସେଠାରେ ବସି ମଫସଲ ସଂବାଦ ଲେଖୁଥିଲେ । ସେତେବେଳକୁ କିଏ କିଏ ଆସି ଉପ-ସଂପାଦକ ହେଲେ ସମସ୍ତଂକ ନାଆଁ ମୋର ମନେନାହିଁ । ତେବେ ଦି-ତିନି ଜଣଂକ ନାଆଁ ମନେ ଅଛି । ସେମାନଂକ ଭିତରୁ ଦି ଜଣ ହେଲେ ରେଂଗୁନ ଫେରଂତା ରାମଚଂଦ୍ର ଦାସ ଓ ଶ୍ରୀହର୍ଷ ମିଶ୍ର । ଏମାନେ ଗଂଜାମର ଲୋକ, ଯାଇ ରେଂଗୁନରେ କାମ କରୁଥିଲେ । ମୋର ଶୁଣିବାରୁ ଯାହା ମନେ ଅଛି, ରାମବାବୁ ଓ ଶ୍ରୀହର୍ଷବାବୁ ସେଠାରେ କୌଣସି ଛୋଟ ପତ୍ରିକାରେ ଖବର ଲେଖାଲେଖି କରୁଥିଲେ । ଜାପାନୀ ସୈନ୍ୟ ମାଡି ଆସିଲାବେଳେ ହଜାର ହଜାର ଅନ୍ୟ ଭାରତୀୟଂକଭଳି ଏମାନେ ସେଠାରୁ ବାହାରିପଡି ଚାଲି ଚାଲି, ମଣିପୁର, ପୂର୍ବବଂଗ ଦେଇ ଆସି କଟକରେ ପହଂଚିଲେ । ବାବୁଜୀଂକ ସହିତ ଦେଖା, କଥାପରେ ରାମବାବୁ ସମାଜରେ ଉପ-ସଂପାଦକ କାମରେ ରହିଲେ । ମୋର ଆଜି ଯେତେଦୂର ମନେ ପଡୁଚି, ଶ୍ରୀହର୍ଷବାବୁ ପରେ 1945 ରେ ସମାଜରେ ଯୋଗଦେଲେ । ଆଉଜଣେ, ବଳରାମ ମହାଂତି, ସେତେବେଳେ ଯୋଗଦେଲେ ନାଁ 1945ରେ ତାହା ଠିକ୍ ମନେ ପଡୁନି ।

1939ରୁ 1942 ଅଗଷ୍ଟ ପର୍ଯ୍ୟଂତ ତିନି ବର୍ଷରେ ବହୁତ ଘଟଣା ଘଟିଲା । 1936ରେ ନୂଆ ଓଡିଶା ପ୍ରଦେଶ ହୋଇ, ନୂଆ ଆଇନ ଅନୁସାରେ ପ୍ରାଦେଶିକ ଆସେଂବ୍ଲିକୁ ନିର୍ବାଚନ ହୋଇ କଂଗ୍ରେସ ସରକାର ଗଢାହେଲା । ବିଶ୍ବନାଥ ଦାସ ମୁଖ୍ୟମଂତ୍ରୀ, ଏବଂ ନିତ୍ୟାନଂଦ କାନୁନଗୋ ଏବଂ ବୋଧରାମ ଦୁବେ ଦିଜଣ ମଂତ୍ରୀ ଥାଇ କଂଗ୍ରେସ ସରକାର ଗଢାହେଲା । ୟୁରୋପରେ ଯୁଦ୍ଧ ଆରଂଭର କିଛି କାଳ ପରେ କଂଗ୍ରେସ ସରକାରରୁ ବାହାରିଗଲା । ପୂର୍ବର ବିଶିଷ୍ଟ କଂଗ୍ରେସ ନେତା ପଂଡିତ ନୀଳକଂଠ ଦାସ ଓ ପଂଡିତ ଗୋଦାବରୀଶ

ମିଶ୍ର କଂଗ୍ରେସରୁ ବାହାରି ଯାଇ ଭିନ୍ନ ଦଳ ଗଢ଼ିଲେ । ପାରଳା ମହାରାଜଂକ ନେତୃତ୍ୱରେ ଏକ ମିଳିତ ସରକାର ଓଡ଼ିଶାରେ ଗଢ଼ାହେଲା । ସେଥିରେ ପାରଳା ମହାରାଜ ମୁଖ୍ୟମଂତ୍ରୀ ଓ ପଂଡିତ ଗୋଦାବରୀଶ ମିଶ୍ର ଅର୍ଥ ଓ ଶିକ୍ଷା ମଂତ୍ରୀ ହେଲେ । ସମାଜ କଂଗ୍ରେସ ପଟର କାଗଜ, ତେଣୁ ଦି ପଂଡିତଂକ ସହିତ ପୁରୁଣା ନିବିଡ଼ ସଂପର୍କ ସତ୍ତ୍ୱେ ମିଳିତ ମଂତ୍ରିମଂଡଳର ସପକ୍ଷରେ ନଥିଲା । ଏଣେ ଯୁଦ୍ଧର ଜୋର ବଢ଼ିଲା, ନୂଆ ନୂଆ ଅସ୍ତ୍ରସବୁ ବ୍ୟବହାର ହେଲା – ଟ୍ୟାଂକ, ବିମାନ, ପାଣବୁଡ଼ି ଇତ୍ୟାଦି ମାରଣାସ୍ତ୍ର । ତେଣେ ସୁଭାଷଚଂଦ୍ର ବୋସ ଲୁଚି ଭାରତରୁ ଯାଇ ଜର୍ମାନୀରେ ପହଂଚି ହିଟଲରଂକ ସହ ଆଲୋଚନା କରି ସେଠାରେ ଏକ ଇଂରେଜବିରୋଧୀ ଭାରତୀୟ ସୈନ୍ୟ ବାହିନୀ ସ୍ଥାପନ କଲେ ଓ ପ୍ରାୟ ପ୍ରତିଦିନ ତାଂକ ରେଡିଓରେ ଭାଷଣ ଭାରତରେ ଶୁଣିବାକୁ ମିଳିଲା । ଅବଶ୍ୟ ସେତେବେଳେ ଅତି କମ୍ ସହରୀ ଲୋକଂକପାଖରେ ରେଡିଓ ଥିଲା । ସମାଜ ଅଫିସରେ ବା ଆମ ଘରେ ରେଡିଓ ନଥିଲା । ମାତ୍ର 1942 ଆରଂଭରେ ହଠାତ୍ ଆମ ଘରେ ଏକ ମର୍ଫୀ ରେଡିଓ କିଣାହୋଇ ଆସି ବସିଲା । ବାବୁଜୀ କଟକରେ ଥିଲାବେଳେ ପ୍ରାୟ ପ୍ରତିଦିନ ରାତିରେ ରେଡିଓ ଶୁଣିବାକୁ ଆରଂଭ କଲେ । ମୋ କାନରେ ପଡ଼ିଲା, ସେ ସୁଭାଷ ବୋସଂକ ଭାଷଣ ଶୁଣିବାପାଇଁ ରେଡିଓ କିଣା ହୋଇଚି । ତାଂକର ଜଣେ ଭାରି ପରିଚିତ ଓଡ଼ିଆ ସି.ଆୟ୍.ଡି. ଅଫିସର୍, ଯିଏ ପ୍ରଜାମଂଡଳ ଆଂଦୋଳନବେଳେ ତାଂକ ସାଂଗରେ ଆଠଗଡ ଆଡେ ଯାଇ ତାଂକୁ ସାହାଯ୍ୟ କରିଥିଲେ, ସେ ପ୍ରତିଦିନ ରାତିରେ ରେଡିଓ ଶୁଣିବାପାଇଁ ଆସଂତି । ମୋଟ ଉପରେ ଖବରକାଗଜବାଲାଂକପାଇଁ ଏହା ବଡ ଚଂଚଳ ସମୟ ଥିଲା । ମାତ୍ର ଆମ ପାଇଁ ଏ.ଆର୍. ପି. (ଏୟର୍ ରେଡ୍ ପ୍ରିକଶନ୍) ଓ ଷ୍ଟିରପ୍ ପଂପ୍ ର ବ୍ୟବହାର ହିଁ ଆମକୁ ଯୁଦ୍ଧର ସୂଚନା ଦେଉଥିଲା ।

1942 ଅଗଷ୍ଟ ମାସର କଥା । ମୁଁ ସେତେବେଳକୁ ମାଇନର ପାସ୍ କରି ଘରପାଖ ରେଭେନ୍‌ସା କଲିଜିଏଟ୍ ରେ ଅଷ୍ଟମ ଶ୍ରେଣୀରେ ନାଁ ଲେଖାଇ

ପଢା ଆରଂଭ କରିଥାଏ । ସେ ମାସର ଚାରି ବା ପାଁଚ ତାରିଖର କଥା । କିଲ୍ଲାପଡିଆରେ ଏକ ବିଶେଷ ଫୁଟବଲ ମ୍ୟାଚ ଦେଖିବାପାଇଁ ଆମେ ଚାରି-ପାଁଚଜଣ ସାଂଗ ଯାଇଥାଉ । ସେଠାରେ ପ୍ରବଳ ବର୍ଷାହେଲା । ଆମେ ନଖଶିଖାଂତ ଓଦା ହୋଇ ଘରକୁ ଫେରିଲୁ । ତା' ଆରଦିନ ଶ୍ରେଣୀରେ ବସିଲାବେଳେ ମତେ ଜର ଆସିଲା । ଆରଦିନଠାରୁ ମୋର ସ୍କୁଲଯିବା ବଂଦ । ଅଗଷ୍ଟ ନଅ ତାରିଖ ଦିନ ସକାଳ ପ୍ରାୟ ନଅଟା ସମୟରେ ଆଚାର୍ଯ ମହାଶୟ (ଆଚାର୍ଯ ହରିହର ଦାସ) ଆଉ ତିନି-ଚାରିଜଣ କଂଗ୍ରେସ ନେତାଂକ ସହ ଆସି ଆମ ଘରେ ପହଁଚିଲେ, ବାବୁଜୀଂକ ସହ କଥା ହେବାକୁ । ମାତ୍ର ବାବୁଜୀ ଆଗଦିନ ସମାଜପାଇଁ କାଗଜ କିଣିବାକୁ ଓ ଅନ୍ୟ କାମରେ କଲିକତା ଯାଇଥାଆଂତି । ସେମାନେ ବସି କଥାହେଲେ ଓ ବୋଉକୁ ଚାହା ଦେବାକୁ କହିଲେ । ମୁଁ ପାଖ ବଖରାରେ ଶୋଇରହିଥେ । ମୋ କାନରେ ପଡିଲା, ସେମାନେ କହୁଚଂତି, ବଂବେରେ ଗାଂଧୀଂକ ସମେତ କଂଗ୍ରେସ କାର୍ଯକାରୀ ସମିତିର ସବୁ ସଦଶ୍ୟଂକୁ ଇଂରେଜ ସରକାର ସେ ଦିନ ସକାଳୁ ଧରି ଜେଲକୁ ପଠେଇ ଦେଇଚି । ଖବରଟା ଅତି ବେଗରେ କଂଗ୍ରେସବାଲାଂକୁ ମିଳିଗଲା । ବୋଧହୁଏ ସେ ବିଷୟରେ କଥା ହେବାକୁ ସେମାନେ ଆସିଥାଆଂତି । ଚାହା ପିଇବାର କେତେ ସମୟପରେ ସେମାନେ ଘରୁ ବାହାରି ପଡିଲେ । କିଛି ସମୟପରେ କେହି ଆସି ଆମକୁ କହିଲା, ରାସ୍ତା ଉପରେ ଆଚାର୍ଯ ମହାଶୟଂକୁ ଓ ଆଉ ଜଣେ-ଦିଜଣଂକୁ ପୁଲିସ ଧରି ନେଇଗଲା ।

ବାବୁଜୀ ତା' ଆରଦିନ ସକାଳୁ ଆସି ପହଁଚିଲେ । ସେତେବେଳକୁ ମୋର ଜର ପ୍ରବଳ । ଏଣେ ସବୁଆଡୁ କଂଗ୍ରେସବାଲାଂକୁ ଧରପକଡର ଖବର ଆସି ପହଁଚୁଥାଏ । ତେଣେ ସମାଜପାଇଁ ଖବର ଲେଖୁ ଲେଖୁ ଏଣେ ବାବୁଜୀ ମୋ ଦେହ ବିଷୟରେ ଚିଂତିତହୋଇ ତାଂକ ସ୍କୁଲ ଦିନରୁ ସାଂଗ ଥିବା ଓ ସେତେବେଳେ କଟକର ସରକାରୀ ବଡ ଡାକ୍ତରଖାନାର ମୁଖ୍ୟ କାଶୀବାବୁ

ଡାକ୍ତରଂକୁ (ଡାକ୍ତର କାଶୀନାଥ ମିଶ୍ର) ପଚାରିପଠାଇଲେ । କାଶୀବାବୁ ଆସି ଦେଖିଲେ ମୋ ଦେହ ଅତି ଖରାପ – ତାପ 106 ଡିଗ୍ରୀ । ସେ ବାବୁଜୀଂକୁ କହିଲେ, ୟାକୁ ସାଂଗେସାଂଗେ ଡାକ୍ତରଖାନାକୁ ନେବାକୁ ହେବ । ସେତେବେଳେ ଆଂବୁଲେନ୍‌ସର ସୁବିଧା ନଥିଲା । ମାତ୍ର ଯୁଦ୍ଧ ଯୋଗୁଁ ଇଂରେଜ ସୈନ୍ୟଂକପାଇଁ ଏକ ମିଲିଟାରି ଆଂବୁଲେନ୍‌ସ ଡାକ୍ତରଖାନାରେ ଥାଏ । ସେ ମୋତେ ନେବାପାଇଁ ତାହାର ବ୍ୟବସ୍ଥା କରିଦେଲେ । ଇଂରେଜ 'ଟମି' ସୈନିକ ଆସି ମତେ ତାଂକ ଆଂବୁଲେନ୍‌ସରେ ପକାଇ ଡାକ୍ତରଖାନାର ଏକ କଟେଜରେ ପହଁଚାଇଲେ । ସେ ଦିନଠାରୁ ବାବୁଜୀ ଓ ମୋ ବୋଉ ସେଠାରେ ମୋର ସେବା ଶୁଶ୍ରୁଷା ପାଇଁ ରହିଲେ । ବାବୁଜୀ ସେଠାରୁ ପ୍ରତିଦିନ ସମାଜପାଇଁ ସଂପାଦକୀୟ ଲେଖି ପଠାଉଥାଆଂତି । (ମଉସା ସେତେବେଳକୁ ଜେଲରେ) । ପ୍ରାୟ ଦି ସପ୍ତାହ ଏହିପରି ଚାଲିଥାଏ । ଶେଷକୁ ମୋ ଦେହ ଟିକିଏ ବାଟକୁ ଆସିଲା । ପରେ ମୁଁ ଶୁଣିଲି, ଆଗ ଦିନ ବାବୁଜୀ ଇଂଲଂଡରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଆମେରୀ ଭାରତର ପରିସ୍ଥିତି ଉପରେ ସେଠା ପାର୍ଲାମେଂଟରେ ଦେଇଥିବା ଭାଷଣ ଉପରେ ଏକ ସଂପାଦକୀୟ ଲେଖିଥାଆଂତି – ସବ୍ ଠିକ୍ ହୈ ! ସେଦିନ ଚାରିଟାବେଳେ ହଠାତ୍ ପୁଲିସ ଆସି କଟେଜରେ ପହଁଚିଲେ – ବାବୁଜୀଂକୁ ଗିରଫ କରିବାପାଇଁ । ବାବୁଜୀ ଘରକୁ ଯାଇ ଦିଖଂଡ ଲୁଗାପଟା ନେବାପାଇଁ ଅନୁମତି ମାଗିବାରୁ ଦିଆଗଲା । ସେ ବୋଉକୁ ପୁଅ ତଥା ଘର ସଂଭାଳିବାକୁ କହି ବାହାରି ପଡିଲେ ।

ମୁଁ ଡାକ୍ତରଖାନାରୁ ଫେରିବାପରେ ପଛକୁ ପଛ ଆମ ଘରେ ଆଉ ଚାରିଜଣ ବି ଟାଇଫଏଡ୍ ରେ ପଡିଲେ । ତେଣୁ ବୋଉକୁ ସମସ୍ତଂକ ସେବା କରିବାକୁ ପଡିଲା ପ୍ରାୟ ସାତ ମାସ କାଳ । ମୁଁ ଦିମାସ ପରେ ସ୍କୁଲ ଯିବାକୁ ଲାଗିଲି । ଘର ଆମର କୌଣସି ପ୍ରକାରେ ଚାଲିଥାଏ । ସମାଜରେ ହଠାତ୍ ସଂପାଦକ କିଏ ଠାରୁ ଆରଂଭକରି କିଏ କାଗଜକାମ ଦେଖିବ ଏ ସମସ୍ୟା

ଠିଆହେଲା । ଉଦୟନାଥ ଷଡଂଗୀଂକୁ ସଂପାଦକ ଘୋଷିତ କରାଗଲା । ସେ, ରାମବାବୁ ଓ ମୋ ସାନ କକେଇ (ବିଶ୍ୱନାଥ ରଥ, ଯିଏ ସେତବେଳେ ବି.ଏ. ପାସ୍ କରି ଲ ପଢୁଥାଆଂତି), ସେ ସଂପାଦନା କାମରେ ଲାଗିଗଲେ । ଅଳ୍ପ କିଛିକାଳ ପରେ ହଠାତ୍ ଉଦୟନାଥ ବାବୁଂକୁ ପୁଲିସ ଧରି ଜେଲ ନେଇଗଲା । ତାଂକ ପଛକୁ ରାମଚଂଦ୍ର ଦାସ ସଂପାଦକ ଘୋଷିତ ହେଲେ । ମାତ୍ର, ସଂପାଦକୀୟ ସହିତ ସଂପାଦନା ବିଭାଗର ମୁଖ୍ୟକାମ କରୁଥାଆଂତି ବିଶି କକେଇ, କୌଣସି ପଦ ନଥାଇ । ଅଢେଇ ବର୍ଷ ପରେ ଲିଂଗରାଜବାବୁ ଓ ବାବୁଜୀ ଜେଲରୁ ବାହାରିବା ପରଯାକେ ଏହି ବ୍ୟବସ୍ଥା ସମାଜର ଚାଲିଥିଲା । ବାବୁଜୀ ଓ ଉଦୟନାଥ ବାବୁଂକୁ ଧରି ନେଇ ଜେଲରେ ପୂରାଇବାରୁ ଅନେକ କହିବାକୁ ଲାଗିଲେ ଯେ ମିଳିତ ମଂତ୍ରିମଂଡଳ ତାଂକ ବିରୋଧୀ ସମାଜକୁ ବଂଦ କରିଦେବାଲାଗି ଯତ୍ନ କଲେ । ମାତ୍ର ସମାଜ ବଂଦ ହେଲା ନି, ଚାଲିଲା । ଖାଲି ଚାଲିଲା ନୁହେଁ । ତହିଁ ଆର ବର୍ଷ ବଂଗଳାରେ ପ୍ରଚଂଡ ଦୁର୍ଭିକ୍ଷ, ସେ ଦୁର୍ଭିକ୍ଷ ଓଡିଶାର ବାଲେଶ୍ୱର ଜିଲ୍ଲାକୁ ବି ବ୍ୟାପିଥିଲା । ସମାଜ ସେ ବିଷୟରେ କାଗଜ ଜରିଆରେ ଆଂଦୋଳନ କଲା । ଭାରତ ସେବକ ସମାଜର (ସର୍ଭାଂଟସ୍ ଅଫ୍ ଇଂଡିଆ ସୋଶାଇଟି, ଯାହାର ଆମ ଭାଷାରେ ନାଆଁ ପରେ ବଦଳି ହିଂଦ ସେବକ ସମାଜ ହେଲା) ସଭାପତି ପଂଡିତ ହୃଦୟନାଥ କୁଂଜୁରୁ ଆସି ଦୁର୍ଭିକ୍ଷ ଅଂଚଳ ଗସ୍ତକରି କଟକ ଟାଉନ ହଲ୍ ରେ ଏକ ବିରାଟ ସଭାରେ ପରିସ୍ଥିତିର ବର୍ଣନା କରି ସରକାର ଯାହା କରିବାର କଥା କରିନାହାଂତି ବୋଲି କହିଲେ । ସଭାରେ ବିଶିକକେଇ ଓ ରାମବାବୁଂକ ସହିତ ମୁଁ ବି ଉପସ୍ଥିତ ଥିଲି ।

1945 ର ମଝିବେଳକୁ ଆଗ ମଉସା ଓ ପରେ ବାବୁଜୀ ଜେଲରୁ ଖଲାସ ହୋଇ ଆସିଲେ । ସମାଜ ପୁଣି ପୂରାଦମ୍ ରେ ଚାଲିଲା । ବାବୁଜୀ ଫେରିବାର ଅଳ୍ପ ଦିନପରର କଥା । ସେତେବେଳର ଓଡିଶା ସରକାର ମାଂଦ୍ରାଜ ସରକାରଂକ ସହ ଏକ ଚୁକ୍ତି କରିଥାଆଂତି କୋରାପୁଟର

ମାଛକୁଂଡଠାରେ ବିଦ୍ୟୁତ ଉତ୍ପାଦନ ଲାଗି ଏକ ବଂଧ ବାଧିବାପାଇଁ, ସେ ବିଦ୍ୟୁତ ଉତ୍ପାଦନ ପୂରା ମାଂଦ୍ରାଜକୁ ମିଳିବ ବୋଲି । ବାବୁଜୀ ଏହା ବିରୋଧରେ ତିନିଟା ଦୀର୍ଘ ସଂପାଦକୀୟ ସମାଜରେ ଲେଖିଲେ – ସବୁ ପ୍ରକାରର ତଥ୍ୟ ଦେଇ । ସମାଜ ଏ ବାବଦରେ ଏକ ଆଂଦୋଳନ ଆରଂଭ କଲା । ସରକାର ବାଧ୍ୟହୋଇ ଆଡଭୋକେଟ-ଜେନେରାଲ ଲିଂଗରାଜ ପାଣିଗ୍ରାହୀଂକୁ ଚୁକ୍ତି ସଂଶୋଧନପାଇଁ ମାଂଦ୍ରାଜ ସରକାରଂକ ସହ ଆଲୋଚନାପାଇଁ ମାଂଦ୍ରାଜ ପଠାଇଲେ । ଏ ଆଂଦୋଳନ ଓ ତଥ୍ୟ ସବୁର ଫଳହେଲା ନୂଆ ଚୁକ୍ତି ଅନୁସାରେ ଓଡିଶାର ଭାଗ ତିରିଶ ଶତାଂଶ ହେବ ଓ ମାଂଦ୍ରାଜର ସତୁରୀ ଶତାଂଶ । ମତେ ବଖରାରେ ଶୋଇଲାବେଳେ ଦିଶୁଥାଏ ବାବୁଜୀ ଏ ସଂପାଦକୀୟପାଇଁ କେତେ ପରିଶ୍ରମ କରିଚଂତି । ସେ ରାତି ଦିଟା-ତିନିଟା ଯାଏ ପଢାପଢି କଲେ । ସଂପାଦକୀୟ ଲେଖିବାପାଇଁ ସେତେବେଳେ ତାଂକ ସହିତ ସାକ୍ଷାତ କରିବାକୁ ଆସିଥିବା ଶ୍ରୀହର୍ଷ ମିଶ୍ରଂକୁ ବସାଇଲେ – ବାବୁଜୀ ଡାକୁଥାଆଂତି, ଶ୍ରୀହର୍ଷବାବୁ ଲେଖୁଥାଆଂତି ପାହାଂତିଆ ପର୍ଯଂତ ।

ଶ୍ରୀହର୍ଷବାବୁ ଉପସଂପାଦକ ଭାବରେ ସମାଜରେ ଯୋଗଦେଲେ । ସେତେବେଳକୁ ଆଉ କେତେକ ନୂଆ ଉପସଂପାଦକ ବି ଆସିଲେ । ମୋର ମନେ ପଡୁଥିବା ନାଆଁ – ବଳରାମ ମହାଂତି, ଅନଂତ ପଟ୍ଟନାୟକ, ନରସିଂହ ତ୍ରିପାଠୀ ଓ ବିଭୂଧେଂଦ୍ର ମିଶ୍ର । ଆଉ କେତେ ଅଳ୍ପକାଳପାଇଁ ଆସି ଗଲେ । ନୂଆ ହୋଇ ଆସିଲେ ମୋର ବଡ କକେଇ କୃଷ୍ଣଚଂଦ୍ର ରଥ । ସେ ଆଗରୁ କଟକ ଟ୍ରେଡିଂ କଂପାନୀର ବ୍ରହ୍ମପୁର ବ୍ରାଂଚର ମ୍ୟାନେଜର ଥିଲେ । ବିଶି କକେଇ ଦରକାର ବେଳେ ବିଶେଷ ସଂବାଦଦାତା ଭାବରେ କ୍ରିପ୍ସ ମିଶନ୍, କ୍ୟାବିନେଟ ମିଶନ୍, ଇତ୍ୟାଦିପାଇଁ ଦିଲ୍ଲୀ ଓ ଶିମଳା ଯାଇଥିଲେ । ମାତ୍ର ଅନ୍ୟ ସମୟରେ ସେ ତାଂକ ଓକିଲ କାମ ଓ ଲ କଲେଜରେ ପଢେଇବା କାମ କରୁଥିଲେ ।

ସେତେବେଳେ ନୂଆହୋଇ ସମାଜରେ ଟେଲିପ୍ରିଂଟର ଆସି ବସିଲା – ଆସୋସିଏଟେଡ୍ ପ୍ରେସ୍ ର, ଏବଂ କିଛିକାଳ ପରେ ୟୁନାଇଟେଡ୍ ପ୍ରେସ୍ ର । ବାବୁଜୀ ସମାଜର ପ୍ରସାର ବଢ଼ିଲାରୁ କଲିକତାରୁ ଯାଇ ଏକ ଅଧିକ ବେଗବାନ ଫ୍ଲାଟ୍ ବେଡ୍ ଛପା ଯଂତ୍ର କିଣିଲେ । ହିଂଦୁସ୍ତାନ ଷ୍ଟାଂଡାର୍ଡର ଶ୍ରୀ ମଜୁମଦାର ତାଂକୁ ସେଥିରେ ଭାରି ସହାଯ୍ୟ କରିଥିଲେ । ସେ ମଶିନଟି ଆମେ ରହିବା ଘର ଓ ସଂପାଦକୀୟ ବିଭାଗର ହଲ୍ ମଝିରେ ଥିବା ଅଗଣାରେ ବସାଗଲା । ମଜୁମଦାର ସେତେବେଳେ କଟକ ଆସିଥିଲେ । ବାବୁଜୀଂକ କୁଣିଆ ହିସାବରେ ରହିଥିଲେ । ସମାଜ ସଂଧ୍ୟାବେଳେ ପ୍ରକାଶିତ ହେବାର କାଗଜ ଥିଲା । ଉପସଂପାଦକମାନେ ସକାଳ ଆଠଟାରୁ ଦଶଟା ଭିତରେ ଆସଂତି । ଦିନ ତିନିଟା ସୁଦ୍ଧା ଆସିଥିବା ଖବରର ଅନୁବାଦ ହୋଇ ଛପାହେବାକୁ ଯାଏ । ସଂପାଦକୀୟ ବାବୁଜୀ ଅଢ଼େଇଟା-ତିନିଟାବେଳେ ଲେଖଂତି । ସେ ପର୍ଯଂତ ସଂବାଦ ଲେଖା ଓ ଅନୁବାଦର କାମ କରଂତି । ସାଢ଼େ ପାଂଚଟା ସୁଦ୍ଧା ଫର୍ମ ତିଆରିହେଲେ ମଶିନ ଉପରକୁ ଛାପିବାପାଇଁ ଯିବ । ତାହାହେଲେ ସଂଧ୍ୟା ଛଅଟା ବେଳକୁ କାଗଜ କଟକ ବଜାରରେ ବିକିବାପାଇଁ ବାହାରିବ । ନୂଆ ଛପା ଯଂତ୍ର ସଂଧ୍ୟା ଛଅଟାରୁ ରାତି ତିନିଟା ପର୍ଯଂତ ଚାଲେ । ଆମେ ତଳେ ଉପରେ ଶୋଉଥିବା ବଖରାର ଝରକା ଆରପଟେ ସେ ଯଂତ୍ର ଚାଲିଥାଏ । ପ୍ରଚଂଡ ଶବ୍ଦ । ତେଣୁ ଆମର ଖାଲି ସେଭଳି ଶବ୍ଦ ଭିତରେ ଶୋଇବାର ଅଭ୍ୟାସ ହେଲା ସେତିକି ନୁହେଁ । ଆମକୁ ଟିକିଏ ବଡପାଟିରେ କହିବାର ବି ଅଭ୍ୟାସ ହୋଇଗଲା ।

ଟେଲିପ୍ରିଂଟର ଆସି ବସିବାପରେ ସେଥିରେ ରାତିଯାକ ଆସି କାଗଜରେ ଛପା ହୋଇଥିବା ଖବରସବୁକୁ ସକାଳେ ଆସି ରିଲ୍ କାଗଜରୁ କାଟି ଭିନ୍ନ ଭିନ୍ନ ଖବରକୁ ଏକାଠି ପିନ୍ କରି ରଖିବା କାମ ବଳରାମବାବୁ ଆଗ ସକାଳ ପ୍ରାୟ ନଅଟା ବେଳକୁ ଆସି କରଂତି । ମୋତେ ସେ ଟେଲିପ୍ରିଂଟର ବାବଦରେ

ଭାରି ଆକର୍ଷଣ । ଅନେକ ସମୟରେ ମୁଁ ସକାଳ ସାତଟା ବେଳକୁ ସ୍କୁଲ ଓ ପରେ କଲେଜ ପଢ଼ାପଢ଼ି ଆରଂଭ କରିବା ଆଗରୁ ଯାଇ ଟେଲିପ୍ରିଂଟରର ଖବର ସବୁକୁ ଏକାଠି କରି ପିନ୍ ରେ ଯୋଡି ବଳରାମ ବାବୁଂକ କାମ କରି, ଅନେକ ଖବର ପଢ଼ିଥାଏ । ମତେ ଖବର ଜାଣିବା, ଇଂରେଜୀ ଶିଖିବାରେ ଏହା ସହାୟକ ହୋଇଥାଇପାରେ । ମାତ୍ର, ପରେ କଲେଜ ଜୀବନରେ ଏହା କ୍ଷତିକାରକ ବି ହେଲା ।

କ୍ରମେ ମୋର ମୋ ଠାରୁ ବୟସରେ ବହୁତ ବଡ, ମୋର ଅଭିଭାବକ ଶ୍ରେଣୀର ଉପସଂପାଦକମାନଂକ ସହିତ ଭଲ ପରିଚୟ ହେଲା । ସେମାନେ ମତେ ଭାରି ସୁଖ ପାଉଥିଲେ । ନରସିଂହ ତ୍ରିପାଠୀ ତ ମୋର ବଡ ଭାଇଭଳି ମୋ ସହିତ ବ୍ୟବହାର କରୁଥିଲେ । ମୁଁ ମାଟ୍ରିକ୍ ପାସ୍ କଲାପରେ କଳା ନା ବିଜ୍ଞାନ ଶାଖାରେ ପଢ଼ିବି ଏ ନେଇ ସେ ମୋ ସହିତ ଖାସ୍ ଆଲୋଚନା କଲେ, ମୁଁ କଳାରେ ପଢ଼ିବି କହିଲାରୁ ମତେ କାରଣ ପଚାରିଲେ ଓ ମତେ କେତେକ ଉପଦେଶ ଦେଇ ସାହାଯ୍ୟ ବି କଲେ । ମୁଁ ବି.ଏ. ପାସ୍ କରି କଟକରୁ ପୁଣେ ଯିବାପର ପର୍ଯଂତ ତାଂକର ମୋର ଭାରି ଭଲ ସଂବଂଧ ଥିଲା । ସେ 1960 ଦଶକରେ ବିଜୁ ପଟ୍ଟନାୟକ କାଢ଼ିବାକୁ ବସିଥିବା ଓଡିଆ ଖବର କାଗଜରେ ଅଧିକ ବେତନରେ ଯୋଗଦେବାକୁ ସମାଜ ଛାଡିଗଲେ । ତା'ପରେ ତାଂକର ମୋର ମାତ୍ର ଥରେ ଦେଖା ହୋଇଥିଲା । ସେ ସମାଜ ଛାଡିବାଟା ଠିକ୍ କଲେନାହିଁ ବୋଲି ମୃଦୁଭାବରେ ମତେ କହିଥିବା ମୋର ମନେଅଛି ।

ଅନଂତବାବୁ ଭରି ହସଖୁସିରେ କାମ କରିବା ଲୋକ । ସେ ବରାବର ସିଗାରେଟ ଟାଣଂତି । ମାତ୍ର, କାମ ଛଡା ଗପସପରେ ବେଳ କଟାଇବାର ନଥିଲେ । ସେ କବି ବୋଲି ମୁଁ ଜାଣିବାକୁ ପାଇଥିଲି । ପରେ ତାଂକ ଅନେକ କବିତା ପଢ଼ିଲି ଓ କେତେ ଅନେକ କାଳ ମନେ ଥିଲା । ମାତ୍ର ମୁଁ

କଟକ ଛାଡିବା ପରେ ସେ ସମାଜ ଛାଡିଲେ ଓ ମୋର ତାଂକସହିତ ପୁଣି କେବେ ଦେଖା ହେଲାନାହିଁ ।

ବଳରାମବାବୁ ଅନେକ ଦିନ ସମାଜରେ ଥିଲେ । ନବବାବୁ (ନବକୃଷ୍ଣ ଚୌଧୁରୀ) ମୁଖ୍ୟମଂତ୍ରୀ ହେଲାପରେ ସେ ତାଂକୁ ତାଂକର ସହାୟକ ହେବାପାଇଁ ଡାକିଲାରୁ ସେ ସମାଜଛାଡି ସେତେବେଳେ ସରକାରୀ ଚାକିରୀରେ ପଶିଲେ । ମୋର ତାଂକ ସହ ଶେଷ ଦେଖା ମୋ ବୋଉ ଯିବାର ଦଶଦିନ ଦିନ ସଂଧ୍ୟାରେ । ସେ ଭାରି ମନମିଳାଉ ବ୍ୟକ୍ତିଥିଲେ । ଅକ୍ଷର ଭାରି ସୁଂଦର । ଭଲ ଓଡିଆ ଲେଖୁଥିଲେ ।

ରାମଚଂଦ୍ର ଦାସ ଜଣେ ପକ୍କା ସାଂବାଦିକ । ସମାଜ କାମ ଛଡା ସେ କୌଣସି ଇଂରାଜୀ ସଂବାଦପତ୍ରର କଟକ ସଂବାଦଦାତା ବି ଥିଲେ । ସେ ଅନ୍ୟମାନଂକଠାରୁ ଟିକିଏ ଦୂରେଇ ରହୁଥିଲେ ବୋଲି ମୋର ଧାରଣା । ସମାଜରୁ ଅବ୍ୟାହତି ନେବାପରେ ସେ ବହୁ କାଗଜର ସଂବାଦଦାତା ଥିଲେ । ମୁଁ ଛୁଟିରେ ଆସିଥିଲାବେଳେ କେତେବେଳେ ଅକସ୍ମାତ ଦେଖାହେଲେ ଭଲରେ କଥାବାର୍ତା ହୁଅଂତି ।

ଶ୍ରୀହର୍ଷ ବାବୁଂକ ସହ ମୋର ଖୁବ୍ ଭଲ ପରିଚୟ ଥିଲା । ସେ ଭାରି କାମିକା ଲୋକ । ତାଂକ ପରିବାରରେ ସେ ଓ ତାଂକ ପତ୍ନୀ ଦିଜଣ । ଆମେ ଭାଇଭଉଣୀ କେବେ କେବେ ତାଂକ ଘରକୁ ଯିବାର ମୋର ମନେ ଅଛି । ସମାଜରେ ଥିଲାବେଳେ ସେ ବହୁତ ସମୟଦେଇ କାମ କରଂତି । ତାଂକର ପ୍ରଧାନ ଦୋଷ – ସେ ଭାରି କ୍ଷଣକୋପୀ, ଠିକ୍ ବାବୁଜୀଂକ ଭଳି । ଫଳରେ, ଯାହାହେବାର ତାହାହେଲା, କୌଣସି କାରଣରୁ ଦିଜଣଂକ ଭିତରେ ଭାରି ମତଭେଦ ହେଲା ଓ ଶ୍ରୀହର୍ଷବାବୁ ସମାଜ ଛାଡି ଅନ୍ୟ କାଗଜରେ ଯୋଗ

ଦେଲେ । ମୁଁ କଟକ ବାହାରେ ରହୁଥିବାରୁ ତାଂକ ସହିତ ଆଉ କେବେ ଦେଖା ହେଲାନାହିଁ ।

ଆଉ ଜଣେ ସେତେବେଳେ ସମାଜର ପୂର୍ଣବେଳ ଉପସଂପାଦକ ନଥିଲେ ବି ସଂବଦଦାତା ଥିଲେ ଓ ମଝିରେ ମଝିରେ ଆସି ସଂପାଦନା ବିଭାଗରେ କାମ ବି କରୁଥିଲେ । ସେ ହେଲେ ବିନୋଦ ବାବୁ (ବିନୋଦ କାନୁନଗୋ) । ବାବୁଜୀଂକର ତାଂକର ଭାରି ଭଲ ସଂବଂଧ ଥିଲା । ଏତେ ଯେ ତାଂକ ପତ୍ନୀ ଶଶୀଅପା ମୋ ବୋଉର ଝିଅଭଳି । ତାଂକଯୋଗୁଁ ଆମର ତାଂକ ମାମୁଁ ଅଧ୍ୟାପକ ଆର୍ତବଲ୍ଲଭ ମହାଂତିଂକ କୁଟୁଂବ ସହିତ ପରିଚୟ ହେଲା । ମାତ୍ର ମୁଁ କଟକ ଛାଡି ଯିବାପରେ କୌଣସି କାରଣରୁ ତାଂକର ଓ ବାବୁଜୀଂକର ଘୋର ମତଭେଦ ହୋଇ ସେ ସମାଜ ସହିତ ସଂପର୍କ ତୁଟାଇଦେଲେ । ଏ ସବୁ କଥା ମୁଁ ବହୁପରେ ଜାଣିବାକୁ ପାଇଲି । ଥରେ ମୁଁ ତାଂକୁ ଦେଖା କରିବାକୁ ବାରବାଟି ଷ୍ଟେଡିୟମ୍ କୁ ଗଲି । ସେ ମୋତେ ଦେଖି ଭାରି ଆନଂଦରେ ଓ ଆଗ୍ରହରେ ସେ ଏକତ୍ର କରୁଥିବା ଖବରକାଗଜ ଓ ବିଭିନ୍ନ ମାସିକ ପତ୍ରିକାର କଟିଂ ସବୁ କିପରି ବିଧିବଦ୍ଧ ଭାବରେ ଏକାଠି କରି ତାଂକ ଓଡିଆ ଏନ୍‌ସାଇକ୍ଲୋପିଡିଆର କାମ ଆରଂଭ କରିଚଂତି ମତେ ବୁଲି ଦେଖାଇଲେ । ମୁଁ ଅଭିଭୂତ ହେଲି, ମାତ୍ର ପରେ ବିଚାରିଲି, ବିନୋଦବାବୁ ଯେଉଁ କାମରେ ହାତ ଦେଇଚଂତି, ଯେତେ ଯୋଗ୍ୟର ଓ କର୍ମଠହେଲେବି ଏହା ଜଣେ ମଣିଷର କାମ ନୁହେଁ । କିପରି କରିବେ, କେଜାଣି ।

କଟକ ଛାଡିବା ପୂର୍ବରୁ ଆଉ ଏକ ଖାସ୍ ଘଟଣା ଘଟିଲା । ୧୯୪୪ ମସିହା ଜାନୁଆରୀ ୩୦ ତାରିଖ । ମୁଁ କଲେଜରୁ ଫେରି ମୋ ଭେଣେଇ ହାତଫୁଟିରେ ପଡିଥିବାରୁ ତାଂକ ସହିତ କଥା ହେଉଥାଏ, ହଠାତ୍ ସେଠାରେ ଥିବା ଟେଲିଫୋନ ବାଜି ଉଠିଲା । ମୁଁ ଟେଲିଫୋନ ଉଠାଇବାରୁ ଆର ପଟୁ

ଶବ୍ଦ ଆସିଲା ଇଂରେଜୀରେ, ମୁଁ ଏନ୍. ଆର୍. ସ୍ୱାମୀ କହୁଚି (ସେ ସେତେବେଳେ ଏ.ପି.ର କଟକ ତଥା ଓଡିଶା ସଂବାଦଦାତା ଥିଲେ) । ସାଂଗେସାଂଗେ ତମ ପ୍ରେସର ଛପା ବଂଦ କର । ଗାଂଧୀଜୀଂକୁ ଗୁଳିମାରି ହତ୍ୟା କରାଯାଇଚି । ମୁଁ ହାତର ଟେଲିଫୋନଟା ଧଡ୍ କିନି ରଖିଦେଇ ଭେଣେଇଂକୁ ସେତିକି ବାକ୍ୟ କହୁକହୁ ପ୍ରେସକୁ ଦୌଡିଲି । କାଗଜ ଛପା ସାଂଗେସାଂଗେ ବଂଦହେଲା । ଚାହୁଁ ଚାହୁଁ, କେହି ନଡାକି ବି ସମାଜର କଂପୋଜିଟର ଠାରୁ ଉପସଂପାଦକଂକ ପର୍ଯ୍ୟଂତ ସମସ୍ତେ ଆସି ହାଜର ହେଲେ । ବାବୁଜୀ ସେଦିନ କଟକରେ ନଥିଲେ, କଲିକତା କାମରେ ଯାଇଥିଲେ । (ବାସ୍ତବିକ ଏଭଳି ବଡ ଘଟଣା ଘଟିବାବେଳେ ବାବୁଜୀ କଟକରେ ନଥିବା ଏହା ଦ୍ୱିତୀୟ ଘଟଣା ।) ସମାଜର ଖାସ୍ ଖବରର ସଂଖ୍ୟା ତିଆରି ଓ ଛପା ଆରଂଭ ହେଲା । ସେ ଦିନ ସଂଧ୍ୟା ଓ ଆର ସକାଳ ଭିତରେ ସମାଜର ଦିଟା ସଂସ୍କରଣ ବାହାରିଲା । ସମସ୍ତେ କାମ କରୁଥାଆଂତି । କେହି ଖାଇନଥିଲେ । ରାତି ଦଶଟାବେଳକୁ ପ୍ରଥମ ସଂଖ୍ୟା ପ୍ରେସକୁ ଗଲାପରେ ଗୁଡିଆ ଦୋକାନରୁ କିଛି ଖାଇବାକୁ ମଗାଇ ପଠେଇଲା ବେଳକୁ ଦୋକାନୀ କହିଲା, ସବୁ ସରି ଯାଇଚି, ଖାଲି ରସଗୋଲା ଅଛି ! ଆଜିଭଳି ଦିନରେ ସବୁଛାଡି ରସଗୋଲା ! ମାତ୍ର ଉପସଂପାଦକମାନେ ନିରୁପାୟ । ଆମ ଘରେ ଚୁଲି ଜଳି ନଥିଲା । ନିମଚଉଡିରୁ ବାଲୁବଜାର ଓ ଏପଟେ ଲାଲବାଗ ରୁ ଚାଂଦିନୀଚୌକ ପର୍ଯ୍ୟଂତ ସବୁ ଆଡେ ଲୋକ ରାସ୍ତା ଉପରେ ପଂଝା ପଂଝା ଜମାହୋଇ ଏ କଅଣ ଘଟିଲା ବୋଲି ରାତିସାରା ଆଲୋଚନା କରୁଥାଆଂତି । ସେଦିନ ସଂଧ୍ୟାବେଳେ ଜଣେ ଉପସଂପାଦକ ତାଂକଘରୁ ସମାଜ ଅଫିସକୁ ଆସିଲାବେଳେ ସନ୍‌ସାଇନ ପଡିଆ ପଛପଟ ରାସ୍ତା କଡରେ ଥିବା ଏକ ଓକିଲଂକ କଂପାଉଁଡ କାଂଥଥିବା ଘର ସାମ୍ନା ଖୋଲା ଜାଗାରେ ସ୍କୁଲ ପିଲାଂକୁ ପେଡା ବଂଟା ହେଉଥିବାର ଦେଖିଲେ । ସେ ସେଠାରେ କାହାକୁ ପଚାରିଲାରୁ ଶୁଣିଲେ ଯେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ବୋଲି ଏକ ଅନୁଷ୍ଠାନ ସେଠାରେ

ତାଂକ ସଂଘ ଏକାଠି କରିଥିବା ପିଲାଂକୁ ଦୈନିକ ତାଲିମ ଦେଉଥିଲେ । ଆଜି ଗାଂଧୀଂକ ହତ୍ୟା ଖବର ମିଳିବାପରେ ସେ ପିଲାଂକୁ ପେଡା ବାଂଟିଲେ । ସେ ଉପସଂପାଦକ ଅଫିସରେ ପହଁଚିଲାପରେ ସାଥିମାନଂକୁ ଏ କଥା କହିଲେ । ମୁଁ ଓ ତାଂକସାଥିମାନେ ସେ ଦିନ ପ୍ରଥମ ହୋଇ ଏପରି ଏକ ଅନୁଷ୍ଠାନର ନାଆଁ ଶୁଣିଲୁ ଓ ସେ ଅନୁଷ୍ଠାନ ଗାଂଧୀ ବିରୋଧୀ ବୋଲି ଜାଣିବାକୁ ପାଇଲୁ । ଏହାପରେ ଅନେକ ଦିନ ପର୍ଯଂତ ଗାଂଧୀହର୍ତ୍ୟାହିଁ ସମାଜର ମୁଖ୍ୟ ଖବର ହେଲା

ମୁଁ କଟକରେ ଥିଲାପର୍ଯଂତ, ମାନେ ୧୯୪୨ ପର୍ଯଂତ, ଥରେ ସମାଜରେ କଂପୋଜିଟରମାନେ ଧର୍ମଘଟ କରିଥିଲେ । ସେତେବେଳେ ଅନ୍ୟଜାଗାରୁ ଜଣେ ଭଲ କଂପୋଜିଟର ଆସି ସମାଜରେ ଯୋଗଦେଇ ମୁଖ୍ୟତ: ଫର୍ମ ବସାଇବା କାମ କଲେ । ଧର୍ମଘଟ ସରିଲାପରେ ବି ସେ ସମାଜରେ ରହିଲେ ଓ ଅନ୍ୟମାନଂକସହ ତାଂକର ଭଲ ସଂପର୍କ ଥିବାର ମତେ ଦିଶିଲା ।

ବି.ଏ. ପାସ୍ କଲାପରେ ମୁଁ କଟକଛାଡି ଅନ୍ୟଜାଗାରେ ପଢିବାକୁ ଯିବାକୁ ସ୍ଥିର କଲି ଓ ସବୁଦିନପାଇଁ ମୋର ସମାଜସହ ଥିବା ଅନୌପଚାରିକ ପ୍ରାୟ ଦୈନିକ ସଂବଂଧ ତୁଟିଗଲା । ଏହାପରେ ମୁଁ ଛୁଟିରେ କଟକ ଆସିଲେ ବେଳେ ବେଳେ ଯାଇ ଉପସଂପାଦକ ବିଭାଗରେ ବସି ନୂଆ-ପୁରୁଣା ଉପସଂପାଦକଂକ ସହିତ ଗପ ଲଗାଇବା ମୋର ଅଭ୍ୟାସ ଥିଲା । ଫଳରେ ଉଦୟନାଥ ବାବୁଂକ ଭଳି ପୁରୁଣାଂକ ସାଂଗକୁ ଅନେକ ନୂଆ ଲୋକଂକ ସହିତ ପରିଚୟ ହେଲା । କେତେକଂକ ସହିତ ସଂପର୍କ ଏବେବି ରହିଚି । ଏ ବହିର ଚାରିଜଣ ଲେଖକ ସେମାନଂକ ଭିତରୁ । ଯେଉଁମାନେ ଆଉ ନାହାଂତି ତାଂକ କଥା ଟିକିଏ କହେ । ଜଣେ ହେଲେ ଆନଂଦ ପାଣି । ପାଣିବାବୁ ସିଂହଭୂମିର ଲୋକ, ମତେ ଲାଗୁଚି ସୀମା ଆଂଦୋଳନବେଳେ ସେ ସମାଜରେ ଯୋଗ ଦେଲେ । ମୁଁ ଦେଖିଲାବେଳକୁ ସେ ସମାଜରେ ନିଉଜ ଏଡିଟରର କାମ

କରୁଥିଲେ । ସମାଜକୁ କୌଣସି ଲେଖା ପ୍ରକାଶପାଇଁ ଦେବାକୁ ହେଲେ ମୁଁ ଆଗେ ଉଦୟନାଥବାବୁଂକୁ ଦେଉଥିଲି, ପରେ ପାଣିବାବୁଂକୁ । ଲେଖା ତାଂକ ପସଂଦକୁ ଆସିଲେ ସେ ଛାପୁଥିଲେ, ବାବୁଜୀଂକୁ ନ ପଚାରି । ସେ ସମସ୍ତଂକୁ ଜାଣି, ବୁଝି, ବୁଝେଇ କାମ କରୁଥିଲେ ବୋଲି ମୋର ସେତେବେଳେ ଧାରଣା ଥିଲା । ମୋର ତାଂକ ଶେଷ ପର୍ଯ୍ୟଂତ ଭାରି ଭଲ ସଂପର୍କ ଥିଲା ।

ଉଦୟନାଥବାବୁ ଥିବା ସମୟରେ ଓ ପରେ ବି ବାଂଛାନିଧି ଦାସ ମଫସଲ ସଂବାଦ ଦାୟିତ୍ୱରେ ଥିଲେ । ସେ ବାସ୍ତବିକ କବି ପ୍ରାଣର ବ୍ୟକ୍ତି । ଖବରକାଗଜ କାମ କେବଳ ତାଂକର ଜୀବିକାର୍ଜନର ମାର୍ଗ ଥିଲା । ତାଂକ ସହିତ ମୋର କଥା ମୁଖ୍ୟତ: ତାଂକ କବିତା ବାବଦରେ ହେଉଥିଲା । ସମାଜରେ ଆଉଜଣେ କବିଥିଲେ – ଜ୍ଞାନୀଂଦ୍ର ବର୍ମା । ସେ ଦୂରେଇରହିବା ଲୋକ ଥିବାରୁ ମୋଭଳି କେତେବେଳେ ଦେଖାହେବାର ଲୋକ ସହିତ ବିଶେଷ ସଂପର୍କ ରଖିବାର ତାଂକ ସ୍ୱଭାବ ନଥିଲା । ଭଗବାନ ପତି ଭାରି ପୁରୁଖା ଲୋକ, ମାତୃଭୂମିରେ ଥିଲେ, ମୋର ଯେତେଦୂର ଶୁଣିବାକଥା ମନେ ଅଛି, ସେ ସେଥିର କେତେବେଳେ ସଂପାଦକ ବି ଥିଲେ । ତାଂକୁ ଅଧିକାଂଶ ଉପସଂପାଦକ ଭାରି ସମ୍ମାନ କରୁଥିଲେ । ମୋ ଭଳି ନୂଆ ଅଜଣା ତରୁଣଂକ ସହିତ ତାଂକର ଗପମାରିବା ଆଶାକରିବା ଅନୁଚିତ । ତେବେ ମୁଁ କେତେବେଳେ ସମାଜରେ ଅନ୍ୟଦେଶର, ଅନ୍ୟପ୍ରାଂତର ଲୋକଂକ ନାଆକୁ ଓଡିଆଭଳି କରି ଲେଖିବା ବାବଦରେ ନାପସଂଦ ବ୍ୟକ୍ତକଲାରୁ ସେ ମତେ ସେଠାରେ ଶୁଣାଇବାର ମନେ ଅଛି – ନାଆଁ ଯାହାହେଲେ ବି ଆମ ଓଡିଆ ଛାପ ତା'ଉପରେ ପଡିବ ହିଁ ପଡିବ ।

ଆଉଜଣେ ଉପସଂପାଦକ ସମାଜର ରବିବାର ସଂଖ୍ୟାର ଦାୟିତ୍ୱରେ ଥିଲେ - ବ୍ରଜକିଶୋର ଦାସ । ମୋର ତାଂକସହ ଭଲ ପରିଚୟ ହୋଇଥିଲା । ସେ ଜଣେ ବହୁଶ୍ରୁତ ବ୍ୟକ୍ତି ଥିଲେ ବୋଲି ମୋର ଧାରଣା ହେଲା । ଥରେ ମୁଁ

ମହାରାଷ୍ଟ୍ରର ଏକ ପ୍ରଧାନ ବିଦୂଷୀ (ସ୍ୱ) ପଂଡିତା ରମାବାଈଂକ ବିଷୟରେ ଏକ ଦୀର୍ଘଲେଖା ଗୋପବଂଧୁ ଶ୍ରାଦ୍ଧ ସଂଖ୍ୟା ପାଇଁ ତାଂକୁ ଦେଲି । ସେ ତାହା ପଢିସାରି ମତେ କହିଲେ, ଆମ କଟକର ଖ୍ରିଷ୍ଟିୟାନ୍ ଅନୁଷ୍ଠାନ ତାଂକ ବିଷୟରେ ବହୁକାଳ ତଳେ ଏକ ଛୋଟ ପୁସ୍ତିକା ପ୍ରକାଶ କରିଥିଲେ । ମାତ୍ର ତହିଁରେ କେବଳ ତାଂକର ଖ୍ରିଷ୍ଟିୟନଂକ ବାବଦ କାର୍ଯର ଉଲ୍ଲେଖ ଥିଲା । ତମ ଲେଖାରୁ ମୁଁ ତାଂକ ବ୍ୟାପକ କାର୍ଯ ବାବଦରେ ଜାଣିଲି । ମତେ ଆଶ୍ଚର୍ଯ ଲାଗିଲା, କେହି ଓଡିଆ ଲେଖକ ନଜାଣିଥିବା ବ୍ୟକ୍ତିଂକ ବିଷୟରେ ସେ ଜାଣିଥିଲେ ବୋଲି । ସେ ଆଉ ଏବେ ନାହାଂତି ।

ଆଉ ଜଣଂକ କଥା – ଯାହାଂକ ସହିତ ମୋର କୌଣସି ବ୍ୟକ୍ତିଗତ ପରିଚୟ ନଥିଲା, ମାତ୍ର ଯାହାଂକ କଥା ମୁଁ ପରେ ବାବୁଜୀଂକ କାଗଜପତ୍ର ଦେଖିଲାବେଳେ ଜାଣିଲି – ସେ ହେଲେ ମନମୋହନ ସାହୁ । ସେ ସେ ସମୟରେ କଟକ ସଂବାଦଦାତା ଥାଆଂତି । କାଗଜପତ୍ରରୁ ଜାଣିଲି ବାବୁଜୀ ତାଂକ ଉପରେ କଟକର ସବୁ ପ୍ରକାରର ସଂବାଦ ଲାଗି କେତେ ନିର୍ଭର କରୁଥିଲେ । ତାଂକର କେତେ ଲେଖା ଖବର ସେ ତାଂକ ଟ୍ରଂକରେ ସଂଭାଳି ରଖିଥିଲେ ।

ସମାଜରେ ଫକିରବାବୁଂକ ମୃତ୍ୟୁପରେ ବାବୁଜୀ ହଠାତ୍ ପଦାରବିଂଦ ମହାପାତ୍ରଂକୁ (ସେବାନିବୃତ ଚିଫ୍ କଂଜରଭେଟର ଅଫ୍ ଫରେଷ୍ଟ) ମ୍ୟାନେଜର ଭାବରେ ରଖିଲେ । ଦୁର୍ଭାଗ୍ୟକୁ ସେ ଦି ବର୍ଷ ପରେ ଭୀଷଣ ଦେହଖରାପରେ ପଡି ତାଂକର ମୃତ୍ୟୁ ହେଲା । ମୋ ସ୍କୁଲ ବେଳର ଜଣେ ପରିଚିତ ବଂଧୁ (ଯିଏ ଇଂଲଂଡରେ ଛାପା ବିଷୟରେ ପଢାପଢିକରି ଆସିଥାଆଂତି), ସୂର୍ଯନାରାୟଣ ଆଚାର୍ଯଂକୁ ମ୍ୟାନେଜର କରାଗଲା । ଏହାପରେ ମୁଁ ମୋର ସେବାନିବୃତ୍ତିପରେ କଟକ ଯାଇଥିବାବେଳେ ଦିନେ ବାବୁଜୀ ମତେ ହଠାତ୍ ପଚାରିଲେ, ତୁ ସମାଜର ଆର୍ଥୀକ ପରିସ୍ଥିତି ବିଷୟରେ ହିସାବ କିତାବ ଦେଖି, ଆଲୋଚନାକରି ଏକ

ରିପୋର୍ଟ ଦେବୁ କି ? ମୁଁ ଟିକିଏ ଆଶ୍ଚର୍ଯ ହେଲେ ବି, ହଁ ଚେଷ୍ଟା କରିବି ବୋଲି କହିଲି । ମୁଁ ସାଂଗେ ସାଂଗେ ସେ କାମରେ ଲାଗିଲି । ସମସ୍ତେ ମତେ ଜାଣିଥିବାରୁ କେହି ମୋ ସହିତ ଅସହଯୋଗ କଲେନାହିଁ । ଦି ସପ୍ତାହପରେ ମୁଁ ତଥ୍ୟ ସଂବଳିତ ଏକ ରିପୋର୍ଟ ଲେଖି ବାବୁଜୀଂକୁ ଦେଲି । (ଅବଶ୍ୟ ଏ କାମ ମୁଁ ଅବୈତନିକ ଭାବରେ କରିଥିଲି) । ବାବୁଜୀ ସେ ବିଷୟରେ ମାତ୍ର ପରେ ମୋ ସହିତ କେବେ କୌଣସି କଥା ହୋଇନଥିଲେ । ବହୁ ପରେ ମୁଁ ଶୁଣିବାକୁ ପାଇଲି, ସେ ରିପୋର୍ଟନେଇ ବହୁ ଆଲୋଚନା ସୋଶାଇଟିରେ ହୋଇଥିଲାବୋଲି । ସମାଜରେ ବେଳେ ବେଳେ ଲେଖା ଲେଖିବା ଛଡା ଏହା ମୋ ଜୀବନରେ ସମାଜ ସହ ଏକମାତ୍ର ଔପଚାରିକ ସଂବଂଧ ।

ବାବୁଜୀ ଯିବା ପରେ ସେତେବେଳର ସୋସାଇଟିର ସଭାପତିଂକ ସମ୍ମତିରେ ମୁଁ ପ୍ରତିବର୍ଷ ତିନି ସପ୍ତାହ ସେ ଜାଗାରେ ରହି ବାବୁଜୀଂକ ବ୍ୟକ୍ତିଗତ ବହିପତ୍ର ଏବଂ ସେ ସଂଭାଳି ରଖିଥିବା ଗୋପବଂଧୁଂକ ଓ ତାଂକ ନିଜ କାଗଜ ଓ ଚିଠିପତ୍ରର ବଛାବଛି କରି, ସମାଜ ସହାୟତାରେ, ସମାଜ ଖର୍ଚରେ, ତାହାର ଲାମିନେଶନ୍ କରାଇ ଦଶ ବର୍ଷ ଭିତରେ ସେ କାମ ସାରିଲି । ବାବୁଜୀ ଯିବା ପରେ ଦିଲ୍ଲୀର ନେହରୁ ମ୍ୟୁଜିୟମରୁ ମୋ ପାଖକୁ ଚିଠି ଆସିଥିଲା, ତାଂକ କାଗଜପତ୍ର, ଚିଠିପତ୍ର ମ୍ୟୁଜିୟମରେ ରଖିବାପାଇଁ । ମୁଁ ନିଜେ ଏହାର ନିଷ୍ପତ୍ତି ନେବା ଉଚିତ ମନେ ନକରି ସୋଶାଇଟିକୁ ପଚାରିଲି । ସେତେବେଳର ସୋଶାଇଟିର ସଭାପତି, ଉପସଭାପତି ଓ ସେକ୍ରେଟେରୀ ମତେ ମୁଂବଇ ଡକାଇ, ମୋ ଠାରୁ ସବୁ ଶୁଣି, ମତେ କହିଲେ – ସୋଶାଇଟି ସେ ସବୁ କାଗଜପତ୍ର ନେହରୁ ମ୍ୟୁଜିୟମ୍ କୁ ଦେବା ପରିବର୍ତେ, ବାବୁଜୀ ରହୁଥିବା ଜାଗାରେ ଏକ ମ୍ୟୁଜିୟମ କରି ସେଠାରେ ରଖିବ । ମୁଁ ରାଜି ହେଲି । ମାତ୍ର, ଦଶ ବର୍ଷ ପରେ ମୋ କାମ ସଇଲାବେଳକୁ, ସମାଜରେ ପ୍ରଚଂଡ ପରିବର୍ତନ ଘଟି ଯାଇଥିଲା । ସେତେବେଳର ମ୍ୟାନେଜର ଓ ସୋଶାଇଟି ଭିତରେ ବାଦ-ବିବାଦ

ଚରମସୀମାକୁ ଯାଇ ତାଂକୁ ସୋଶାଇଟିରୁ ବରଖାସ୍ତ କରାଯାଇଥିଲା । ସେଠାରେ କେହି ପୂର୍ବକଥା ଜାଣିବା ଶୁଣିବା ଲୋକ ନଥାଂତି । ତେଣୁଁ, ମୁଁ ଦିନେ କଟକରେ ସଭାପତିଂକ ସହ ଦେଖା କରି ତାଂକୁ ଏ ସବୁ କାଗଜପତ୍ର ନେହରୁ ମ୍ୟୁଜିୟମକୁ ପଠାଇଦେବାର ପ୍ରସ୍ତାବର ପୁନରୁଚ୍ଚାର କଲି । ସଭାପତି ଏଥର କୌଣସି ଅସୁବିଧା ନଦେଖାଇ ସାଂଗେ ସାଂଗେ ମୋ ପ୍ରସ୍ତାବ ଗ୍ରହଣ କଲେ ଓ ସେତେବେଳର ମ୍ୟାନେଜରଂକୁ ନେହରୁ ମ୍ୟୁଜିୟମକୁ ସେ ସବୁ ପଠେଇବାପାଇଁ ମତେ ସାହାଯ୍ୟ କରିବାକୁ କହିଲେ । ତେଣୁ ମୁଁ ନେହରୁ ମ୍ୟୁଜିୟମର ଡିରେକ୍ଟରଂକୁ ଚିଠିଲେଖି, ସେଠାରୁ ଦି ଜଣ କର୍ମଚାରୀ ଆସି ପାଂଚଟା ବଡ ଟ୍ରଂକରେ ଭର୍ତୀ କାଗଜପତ୍ର ଦିଲ୍ଲୀ ନେଇ ଗଲେ । ପରେ, ସେଠାର ଡିରେକ୍ଟର ମହୋଦୟା ମତେ ଚିଠିଲେଖି, ଏତେ ଠିକଣାଭାବରେ ଲାମିନେଟ୍ ହୋଇଥିବା କାଗଜ, ତାରିଖ ଅନୁସାରେ ଲଗାହୋଇ ପ୍ଲାଷ୍ଟିକ ମୁଣିରେ କ୍ରମିକ ଭାବରେ ରଖା ଯାଇଥିବାରୁ ଭାରି ଆନଂଦପ୍ରକାଶ କଲେ । ମୁଁ ପରେ ଥରେ ଯାଇ ସେଠାରେ ରହିଥିବା ସେ କାଗଜପତ୍ର ଦେଖିଚି । ସୁବିଧାରେ ଅଛି । କେହି ବ୍ୟବହାର କରିବାକୁ ଚାହିଁଲେ ସହଜରେ କରିପାରିବେ । କାଳକ୍ରମେ ଡିଜିଟାଲାଇଜଡ୍ ହେବବୋଲି ଜାଣିଲି । ବାକି କେତେକ କାଗଜପତ୍ର ଓ ବାବୁଜୀଂକୁ ମିଳିଥିବା ତାରକସିକାମର ଉପହାର ଓ ଅନ୍ୟସବୁ ବ୍ୟକ୍ତିଗତ ସମ୍ମାନର କାଗଜ ଓ ବସ୍ତୁ ଏବେ ବି ସମାଜ ଅଫିସରେ ଅଛି । ଆଶା, ତାହାର ଉଚିତ ବ୍ୟବସ୍ଥା ହେବ ।

ବାବୁଜୀ ଯିବାପର୍ଯ୍ୟଂତ ମୁଁ ଛୁଟିରେ କଟକ ଗଲେ ଉପସଂପାଦକ ବିଭାଗରେ ଯାଇ କିଛିସମୟ ଗପ ଲଗାଇବା ମୋର ଅଭ୍ୟାସ ଥିଲା । ବାବୁଜୀ ଗଲାପରେ ମୁଁ ସେଠାରେ ଚାରିମାସ କାଳ ରହି ତାଂକ କାଗଜପତ୍ରର ବ୍ୟବସ୍ଥା କରୁଥିଲେ ବି ସଂପାଦକୀୟ ବିଭାଗକୁ ଯିବା ମୋର ବଂଦ ହେଲା । ଆଜି ଯେଉଁ ଚାରିଜଣ ଏ ବହିରେ ନିଜର ଅନୁଭୂତିର ବର୍ଣନା କରିଚଂତି, ସେମାନଂକ ସହିତ ବ୍ୟକ୍ତିଗତ ଭଲ ପରିଚୟ ହେତୁ ମୁଁ ବାବୁଜୀଂକ ଶ୍ରାଦ୍ଧ ଦିନରେ କରୁଥିବା

ଭାଷଣର ବଂଦୋବସ୍ତ ଇତ୍ୟାଦିପାଇଁ ସେମାନଂକର ସାହାଯ୍ୟ ଲୋଡୁଥିଲି । ଏମାନଂକ ଭିତରୁ ଅଶୋକ ଦାସ ବାବୁଜୀ ଗଲାପରେ ଆଗ ସମାଜ ଛାଡିଲେ । ତା'ପରେ କ୍ରମେ ସେବାନିବୃତ୍ତହେଲେ କିଶୋର ଶତପଥୀ ଓ କାନନ ଦାସ । ତପନବାବୁ ଏବେ ବି ସମାଜରେ ଅଛଂତି, ଅଚିରେ ସେବାନିବୃତ୍ତ ହେବେ । ଏହା ଆଗରୁ ସେମାନଂକୁ ଲେଖିବାକୁ କହିଥିଲେ କେଜାଣି ସେମାନେ ସମାଜରେ ଥିବାବେଳେ ତାହା ଉପଯୁକ୍ତ ହେବନି ଭାବି ମୁଁ ତାଂକୁ ସେତେବେଳେ ଅନୁରୋଧ କରିନଥିଲି । ଏବେ କଲାରୁ ସେମାନେ ଆନଂଦରେ ରାଜି ହେଲେ । ମୋର ଆଶା ଶେଷ ବର୍ଷରେ ତପନବାବୁଂକୁ ସେଥିପାଇଁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡିବ ନାହିଁ । ସେମାନେ ଯାହା ଉଚିତ ଭାବିଲେ, ତାହା ଲେଖିଚଂତି । ମୁଁ ସେ ବାବଦରେ ତାଂକୁ କୌଣସି ଅନୁରୋଧ ବା ସୂଚନା ଦେଇନାହିଁ – ସେମାନେ ତାହା ମାନିବା ଲୋକ ନୁହଁତି ।

ଏ ବହିର ମଲାଟ ଉପରେ ଥିବା ବାବୁଜୀଂକ ଫଟ ପ୍ରସିଦ୍ଧ ଛାୟାଚିତ୍ରକାର ଘନଶ୍ୟାମ ପହାପାତ୍ର ବାବୁଜୀଂକ ଶେଷ ଦିନ ଆଡକୁ ତାଂକ ବିଷୟରେ ଏକ ଚିତ୍ରପଟ କରିବା ସମୟରେ ଉଠାଇଥିଲେ, ସେକାଳେ ବାବୁଜୀ ପ୍ରତିଦିନ ସଂଧ୍ୟାବେଳେ ସମାଜ ଅଫିସ ପିଂଡାରେ ବସୁଥିବା ଅବସ୍ଥାରେ । ଛାପିବାପାଇଁ ଅନୁମତି ଦେଇଥିବାରୁ ଘନଶ୍ୟାମବାବୁଂକୁ ଆଂତରିକ ଧନ୍ୟବାଦ ।

ନୀଳକଂଠ ରଥ.

31-12-2017.

# ଶ୍ରୀ ରାଧାନାଥ ରଥ ସାଂବାଦିକତା ଜଗତର ଅନ୍ୟତମ ମହାରଥୀ

କିଶୋର ଶତପଥୀ

ପଣ୍ଡିତ ଗୋପବନ୍ଧୁ ଦାସ 'ସମାଜ'ର ପ୍ରତିଷ୍ଠାତା ଥିଲେ । ଏହାକୁ କିନ୍ତୁ ବିଭିନ୍ନ ପ୍ରତିବନ୍ଧକ ଯଥା ଆର୍ଥିକ, ରାଜନୈତିକ, ବ୍ୟକ୍ତିଗତ ଏବଂ ସାମାଜିକ ବିପଦରୁ ରକ୍ଷା କରି ଏକ ବିକଶିତ ପ୍ରତିଷ୍ଠାନ ଭାବେ ଗଢି ତୋଳିବାରେ ଶ୍ରୀ ରାଧାନାଥ ରଥ ଯେଉଁ ଚରମ ତ୍ୟାଗ ଏବଂ କଠୋର ପରିଶ୍ରମ କରିଛନ୍ତି ତାହାର ତୁଳନା ନାହିଁ। ୧୯୧୯ ମସିହା ଅକ୍ଟୋବର ୪ ତାରିଖ ବିଜୟା ଦଶମୀ ଦିନ ସତ୍ୟବାଦୀରୁ ଏକ ସାପ୍ତାହିକୀ ସଂବାଦପତ୍ର ଭାବେ 'ସମାଜ' ପ୍ରକାଶ ପାଇଥିଲା । ଓଡିଶାର ଲୋକମାନେ ସାଧାରଣ କଥାବାର୍ତ୍ତା ବେଳେ ଯେଉଁ ଭାଷାର ବ୍ୟବହାର କରନ୍ତି ତାହାକୁ ସାଂବାଦିକତାର ଭାଷା ଭାବେ ଗୋପବନ୍ଧୁ 'ସମାଜ'ରେ ବ୍ୟବହାର କଲେ। ନିଜର ରାଜନୈତିକ ଆଦର୍ଶ ଏବଂ ବିଚାରକୁ ଲୋକଙ୍କ ନିକଟରେ ପହଞ୍ଚାଇବାପାଇଁ 'ସମାଜ'କୁ ସେ ଏକ ମାଧ୍ୟମ ଭାବେ ବ୍ୟବହାର କଲେ। 'ସମାଜ' ୧୯୨୫ ମସିହା ପର୍ଯନ୍ତ ସତ୍ୟବାଦୀରୁ ପ୍ରକାଶିତ ହେଉଥିଲା । ୧୯୨୫ରେ ଏହା ପୁରୀକୁ ଉଠିଗଲା । ସେଠାରୁ ୧୯୨୭ ପର୍ଯ୍ୟନ୍ତ ପ୍ରକାଶିତ ହେଲା । ୧୯୨୭ରେ ଗୋପବନ୍ଧୁ 'ସମାଜ'ଏବଂ 'ସତ୍ୟବାଦୀ ପ୍ରେସ'କୁ କଟକ ଉଠାଇ ଆଣିଥିଲେ । ନିମଚଉଡିରେ ପାଲିତଙ୍କ ଘର

ଉତାରେ ନେଇ ସେଠାରୁ 'ସମାଜ' ପ୍ରକାଶନ ହେଲା । ୧୯୬୦ରେ ନିମଚଉଡିର ସେ ଘରୁ ଉଠିଆସି 'ସମାଜ' ନିଜଘର 'ଗୋପବନ୍ଧୁ ଭବନ' ବକ୍ସିବଜାରକୁ ଆସିଲା । 'ସମାଜ'କୁ ପୁରୀ ନେବା ଏବଂ ସେଠାରୁ ପୁଣି କଟକ ଆଣିବା ଆଦି କାର୍ଯ୍ୟ ରାଧାନାଥ ବାବୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କରାଯାଇଥିଲା । ରାଧାନାଥ ବାବୁଙ୍କର ସବୁଠାରୁ ବଡ ଦୁଃସାହସିକ କାର୍ଯ୍ୟଥିଲା ଏହାକୁ ୧୯୩୦ ମସିହାରେ ଦୈନିକ କରି ଛାପିବା । ସେହି ସମୟରେ ଗାନ୍ଧିଜୀ ଦେଶରେ ଲୁଣମରା ଆନ୍ଦୋଳନ ଏବଂ ଦାଣ୍ଡିଯାତ୍ରା ଆଦି କାର୍ଯ୍ୟକ୍ରମ ଆରମ୍ଭ କରିଦେଇଥିଲେ । ଗାନ୍ଧିଜୀଙ୍କ ଆନ୍ଦୋଳନ ଫଳରେ ଦେଶର ରାଜନୈତିକ କ୍ଷେତ୍ରରେ କଣ ସବୁ ଘଟୁଛି ତାହା ଲୋକମାନଙ୍କୁ ଜଣାଇବାପାଇଁ ଦାଣ୍ଡିଯାତ୍ରା ଦିନ ବାବୁଜୀ ( ରାଧାନାଥ ବାବୁ) 'ସମାଜ'କୁ ଦୈନିକ କରି ଛାପିଦେଲେ । ଏଥିନିମନ୍ତେ ସେ ଲୋକସେବକ ମଣ୍ଡଳର ଅନୁମତି ନେଇନଥିଲେ । 'ସମାଜ' ଦୈନିକ ଭାବେ ପ୍ରକାଶ ପାଇବାପରେ ସେ ଲୋକସେବକ ମଣ୍ଡଳକୁ ଜଣାଇବା ପରେ ସ୍ୱୀକୃତି ମିଳିଥିଲା । ' ସମାଜ' ଦୈନିକ ଭାବେ ଛପା ହେବାପରେ ସେହି ୧୯୩୦ରେ ସରକାରଙ୍କ ରୋଷର ଶୀକାର ହୋଇଥିଲା, ଯାହା ଫଳରେ ନଅ ମାସ ନିମନ୍ତେ ଏହାର ଛପା ବନ୍ଦ ହୋଇଯାଇଥିଲା । ବାବୁଜୀ କିନ୍ତୁ ସରକାରଙ୍କ ଆଖିରେ ଚୂନକାଳି ଦେଇ ଲୁଚାଇକରି ସାଇକ୍ଲୋଷ୍ଟାଇଲ କରି 'ସମାଜ'କୁ ଛାପି ଲୋକଙ୍କ ପାଖରେ ପହଞ୍ଚାଉଥିଲେ । ବାବୁଜୀ କଂଗ୍ରେସର ସକ୍ରିୟ ସଦସ୍ୟ ଥିଲେ ମଧ୍ୟ ୧୯୪୨ ପର୍ଯ୍ୟନ୍ତ ସେ ଜେଲ ଯାଇନଥିଲେ । ତେବେ ଲିଙ୍ଗରାଜ ମିଶ୍ର କଂଗ୍ରେସର ସକ୍ରିୟ ସଦସ୍ୟ ଥିବାରୁ ତାଙ୍କୁ ବହୁବାର ଜେଲ ଯିବାକୁ ପଡୁଥିଲା । ସେତେବେଳେ ବାବୁଜୀଙ୍କୁ 'ସମାଜ'ର ଉଭୟ ପରିଚାଳକ ଏବଂ ସଂପାଦକ ଦାୟିତ୍ୱ ତୁଲାଇବାକୁ ପଡୁଥିଲା । ୧୯୪୨ ମସିହା ଅଗଷ୍ଟ ୨୦/୨୧ ତାରିଖ ବେଳକୁ ବାବୁଜୀଙ୍କୁ ଜେଲ ଯିବାକୁ ହେଲା । ଶୁଣାଯାଏ 'ସମାଜ'ରେ ତାଙ୍କ ଲେଖା ନବାହାରିବାପାଇଁ ଏବଂ ତାଙ୍କୁ 'ସମାଜ'ର ପରିଚାଳନା ଦାୟିତ୍ୱରୁ ହଟାଇବା ନିମନ୍ତେ ସେତେବେଳେ

ଓଡିଶାର ଶାସନ ଦାୟିତ୍ୱରେ ଥିବା ମିଳିତ ମନ୍ତ୍ରିମଣ୍ଡଳ ପକ୍ଷରୁ ଏପରି ଷଡ଼ଯନ୍ତ୍ର କରାଯାଇଯାଇଥିଲା । 'ସମାଜ'କୁ ବାବୁଜୀ ନିଜର ସନ୍ତାନ ପରି ବଡ କରିଛନ୍ତି । ଏହାର ଅକ୍ଷର କଂପୋଜ ଠାରୁ ଆରମ୍ଭ କରି ପରିଚାଳନା ଏବଂ ସଂପାଦନା ପର୍ଯ୍ୟନ୍ତ ସବୁ କାମ ସେ ଅତି ନିଷ୍ଠାର ସହ କରିଛନ୍ତି । ତେଣୁ 'ସମାଜ'ର କୌଣସି କାର୍ଯ୍ୟରେ ଯଦି ନିଷ୍ଠାର ଅଭାବ ସେ କର୍ମଚାରୀଙ୍କଠାରେ ଦେଖୁଥିଲେ ତାହାକୁ ସହ୍ୟ କରୁନଥିଲେ । ସେହି ସମୟରେ ଏହା ସେ କରିନଥିଲେ 'ସମାଜ' ଯେଉଁ ସବୁ ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲା ସେଥିରେ ଉଠିବା ତ ଦୂରର କଥା ଲୋପ ପାଇଯାଇଥାଆନ୍ତା । କାରଣ ଯେଉଁ ଦଶନ୍ଧିରେ 'ସମାଜ' ପ୍ରକାଶ ପାଇଲା ସେହି ସମୟରେ ଏବଂ ତାହା ପୂର୍ବରୁ ଅନେକ ପାକ୍ଷିକ ଏବଂ ସାପ୍ତାହିକ ସଂବାଦପତ୍ର ଓଡିଶାରେ ପ୍ରକାଶିତ ହୋଇଥିଲା । କିନ୍ତୁ ବିଭିନ୍ନ କାରଣ ଯୋଗୁ ସେଗୁଡିକ ବନ୍ଦ ହୋଇଯାଇଥିଲା । 'ସମାଜ' ପ୍ରକାଶ ପାଇବାର ୭ ବର୍ଷ ପରେ ଅର୍ଥାତ ୧୯୨୪ ମସିହାରେ ହରେକୃଷ୍ଣ ମହତାବଙ୍କ ଉଦ୍ୟମରେ ବାଲେଶ୍ୱରରୁ ପାକ୍ଷିକ 'ପ୍ରଜାତନ୍ତ୍ର' ପ୍ରକାଶିତ ହୋଇଥିଲା । ମାତ୍ର ୧୯୩୦ ମସିହା ବେଳକୁ ଏହା ବନ୍ଦ ହୋଇଯାଇଥିଲା । ୧୯୪୭ରେ ମହତାବ ବାବୁ ମୁଖ୍ୟମନ୍ତ୍ରୀ ହେବାପରେ 'ପ୍ରଜାତନ୍ତ୍ର' ଦୈନିକ ଭାବେ ପ୍ରକାଶିତ ହୋଇଥିଲା । ୧୯୪୭ ମସିହାରେ ବାଳକୃଷ୍ଣ କରଙ୍କ ସଂପାଦନାରେ ଏକ ସାପ୍ତାହିକୀ ସଂବାଦପତ୍ର ଭାବେ 'ମାତୃଭୂମି' ପ୍ରକାଶିତ ହୋଇଥିଲା । ଏହାପରେ ୧୯୫୨ ମସିହାରେ ହେବାକୁ ଥିବା ଦେଶର ପ୍ରଥମ ସାଧାରଣ ନିର୍ବାଚନ ପୂର୍ବରୁ ୧୯୫୧ ମସିହାରେ ବଲାଙ୍ଗୀରର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଠାରୁ ଆର୍ଥିକ ସହାୟତା ଆଣି ବାଳକୃଷ୍ଣ ବାବୁ ଏହାକୁ ଏକ ଦୈନିକ ସଂବାଦପତ୍ର ଭାବେ ପ୍ରକାଶ କରିଥିଲେ । କଟକର ଦରଘାବଜାରରୁ ଏହାର ପ୍ରକାଶନ ହେଉଥିଲା ।

ସତୁରୀ ଦଶକର ଆରମ୍ଭ ପର୍ଯ୍ୟନ୍ତ ଏହି ତିନି ସଂବାଦପତ୍ର ସମଗ୍ର ରାଜ୍ୟରେ ପ୍ରାଧାନ୍ୟ ବିସ୍ତାର କରି ଚାଲିଥିଲେ । ପରେ ଅନ୍ୟ ସବୁ ସଂବାଦପତ୍ର

ପ୍ରକାଶିତ ହେଲା । ଏହା ଲେଖିବା ବେଳେ ଓଡିଶାରେ କାହିଁକି ଅଧିକ ସଂବାଦପତ୍ର ପ୍ରକାଶିତ ହୋଇପାରୁନାହିଁ ତାହା ଉପରେ ପୂର୍ବତନ ସାଂସଦ ପ୍ରଦ୍ୟୁମ୍ନ ବଳ ଦେଇଥିବା ଏକ ମନ୍ତବ୍ୟ ମନେପଡେ । ସେ କହିଥିଲେ ଯେପର୍ଯ୍ୟନ୍ତ 'ସମାଜ' ସଂପାଦକ ରାଧାନାଥ ରଥ ରୂପକ ବଟବୃକ୍ଷ ଥିବେ ସେପର୍ଯ୍ୟନ୍ତ ଓଡିଶାରେ ଅନ୍ୟ କୌଣସି ସଂବାଦପତ୍ର ଉଧେଇପାରିବ ନାହିଁ। ଏହାର କାରଣ ସଂପର୍କରେ ସେ କହିଥିଲେ ଯେ ରାଧାନାଥ ବାବୁଙ୍କ ଉଦ୍ୟମରେ 'ସମାଜ' ଓଡିଶାର ଲୋକମାନଙ୍କର ମୁଖପାତ୍ର ହୋଇପାରିଛି । ଓଡିଶାର ଗାଁଗଣ୍ଡା ଏପରିକି ସହରରେ ମଧ୍ୟ 'ସମାଜ' କହିଲେ ଲୋକେ ସଂବାଦପତ୍ରକୁ ବୁଝନ୍ତି । ଏପରିକି ପ୍ରଜାତନ୍ତ୍ର ଏବଂ ମାତୃଭୂମିକୁ ମଧ୍ୟ ଲୋକେ 'ସମାଜ' କୁହନ୍ତି । ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଉଛି ଯେ ଇଂରାଜୀ ଭାଷାରେ ପ୍ରକାଶିତ ସଂବାଦପତ୍ରକୁ ମଧ୍ୟ କିଛି ଲୋକ ଇଂରାଜୀ ଭାଷାରେ ଛାପା ହୋଇଥିବା 'ସମାଜ' ବୋଲି କହୁଥିଲେ । ସେହି ପ୍ରଦ୍ୟୁମ୍ନ ବାବୁ ଯେତେବେଳେ 'ପ୍ରଗତିବାଦୀ' ନାମକ ଏକ ସଂବାଦପତ୍ର ପ୍ରକାଶ କଲେ ତାହାକୁ ଉନ୍ମୋଚନ କରିବାକୁ ରାଧାନାଥ ବାବୁ ଯାଇଥିଲେ ଏବଂ ବଧାଇ ଜଣାଇ କହିଥିଲେ ଯେ ପ୍ରଦ୍ୟୁମ୍ନ ବାବୁ କଳ,ବଳ ଏବଂ କୌଶଳ ପ୍ରୟୋଗକରି ଯେଉଁ ସଂବାଦପତ୍ରଟି ଆରମ୍ଭ କରିଛନ୍ତି ତାହାର ପ୍ରଗତି ସେ କାମନା କରନ୍ତି ।

'ସମାଜ' ଉପରେ ଲୋକଙ୍କର ଆସ୍ଥା ଏବଂ ଏହାର ଲୋକପ୍ରିୟତା କିଛି ମାସ ବା କିଛି ବର୍ଷ ମଧ୍ୟରେ ହୋଇନାହିଁ । 'ସମାଜ' ପ୍ରକାଶ ପାଇବା ପରେ ଏହାର ପ୍ରଥମ ପଚାଶ ବର୍ଷ ନିମନ୍ତେ ରାଧାନାଥ ବାବୁ ତାଙ୍କ ଯୌବନ ଏବଂ ପ୍ରୌଢ଼ତ୍ୱର ସମସ୍ତ ସମୟ ନିରବଚ୍ଛିନ୍ନ ଭାବେ ଏହାର ବିକାଶ ନିମନ୍ତେ ଉତ୍ସର୍ଗ କରିଦେଇଥିଲେ । ଏହି ସମୟ ମଧ୍ୟରେ ସେ ନିଜର ପରିବାର ଏବଂ ଭବିଷ୍ୟତ କଥା ଚିନ୍ତା କରିନଥିଲେ । ପ୍ରଥମ କିଛି ବର୍ଷ ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ 'ସମାଜ' କଥା ବୁଝୁଥିଲେ

ଏବଂ ପରେ ନିଜେ ଏହାର ପରିଚାଳନା ଦାୟିତ୍ୱ ହାତକୁ ନେଇଥିଲେ । ଗୋପବନ୍ଧୁଙ୍କ ପରେ ଏହାର ଯେପରି କୌଣସି କ୍ଷତି ନହୁଏ ଏବଂ ପ୍ରସାର ପଥରେ କୌଣସି ବାଧା ନଉପୁଜେ ସେଥିନିମନ୍ତେ ସେ ଯକ୍ଷ ପରି 'ସମାଜ'କୁ ଜଗି ରହିଥିଲେ। ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ଫଳରେ 'ସମାଜ' ଆଜି ଓଡିଶାର ଗଣମାଧ୍ୟମ ଜଗତରେ ଏକ ମହାଦ୍ରୁମରେ ପରିଣତ ହୋଇପାରିଛି। 'ସମାଜ'କୁ ବନ୍ଦ କରିଦେବାପାଇଁ ଉଭୟ କୋଡିଏ ଏବଂ ତିରିଶ ଦଶକରେ କିଛି ବ୍ୟକ୍ତି ଉଦ୍ୟମ କରିଥିଲେ । ଏହାପରେ ଚାଳିଶ ଦଶନ୍ଧିର ପ୍ରାରମ୍ଭରେ ଭାରତ ଛାଡ ଆନ୍ଦୋଳନ ବେଳେ ବାବୁଜୀଙ୍କୁ ଜେଲରେ ପୂରାଇ ଏହାର ଦାୟିତ୍ୱ ନିଜେ ନେବାପାଇଁ ନଚେତ ବନ୍ଦ କରିଦେବାକୁ ଏହି କୁଚକ୍ରୀ ଗୋଷ୍ଠୀ ଉଦ୍ୟମ କରି ବିଫଳ ହୋଇଥିଲେ। ଏହାପରେ ମଧ୍ୟ ଗୋପବନ୍ଧୁଙ୍କ ପରିବାରର ସଦସ୍ୟ ଭାବେ ନିଜକୁ ଦାବି କରି ଏହାର ମାଲିକାନା ହାତେଇବାକୁ କିଛି ବ୍ୟକ୍ତି ଉଦ୍ୟମ କରିଥିଲେ । ଆମେ ସବୁ 'ସମାଜ'ରେ କାମ କଲାବେଳେ ଏହି ଘଟଣାମାନ ଘଟିବା ଦେଖିଛୁ । ସେହି ସମୟରେ ରାଜନୈତିକ କ୍ଷେତ୍ରରେ ଏହି ବ୍ୟକ୍ତିମାନେ ବେଶ ପ୍ରଭାବଶାଳୀ ଥିବାରୁ 'ସମାଜ'କୁ ବନ୍ଦ କରିଦେବାପାଇଁ ଉଦ୍ୟମ କରିଥିଲେ। ସ୍ୱାଧୀନତା ସଂଗ୍ରାମବେଳେ ଓଡିଶାର ଜନମତକୁ ସରକାରଙ୍କ ବିରୋଧରେ ପ୍ରୋତ୍ସାହିତ କରୁଥିବା ଅଭିଯୋଗରେ 'ସମାଜ'କୁ ବନ୍ଦ କରିଦେବାପାଇଁ ବ୍ରିଟିଶ ସରକାର ଉଦ୍ୟମ କରିଥିଲେ। ଏଥିପାଇଁ ରାଧାନାଥ ବାବୁଙ୍କୁ ଜେଲ୍ ଯିବାକୁ ପଡିଥିଲା । ଜେଲ୍ କିନ୍ତୁ ତାଙ୍କର ମନୋବଳକୁ ଭାଙ୍ଗି ପାରିନଥିଲା। କିମ୍ବା 'ସମାଜ' ବନ୍ଦ ହୋଇନଥିଲା । 'ସମାଜ'କୁ କିପରି ଅଧିକରୁ ଅଧିକ ଲୋକଙ୍କ ପାଖରେ ପହଞ୍ଚାଇ ପାରିବେ ସେଥି ନିମନ୍ତେ ସେ ପ୍ରତିଦିନ ଅକ୍ଲାନ୍ତ ପରିଶ୍ରମ କରୁଥିଲେ । ପରେ ଏହା ତାଙ୍କର ଏକ ନିଶାରେ ପରିଣତ ହୋଇଗଲା । 'ସମାଜ'ର ପ୍ରସାର ଏବଂ ପ୍ରଚାର ନିମନ୍ତେ ବ୍ୟକ୍ତିଗତ ସ୍ତରରେ ସେ ଯେପରି ଉଦ୍ୟମ କରିଥିଲେ ତାହା ଥିଲା ଅସାଧାରଣ । ତାଙ୍କ ବ୍ୟକ୍ତିତ୍ୱର ସବୁଠାରୁ ଉଲ୍ଲେଖନୀୟ ଦିଗ ହେଉଛି ଯେ ସେ କୌଣସି ସମୟରେ ପରିସ୍ଥିତିର

ଦାସ ହେଉନଥିଲେ । ନିଜର ପୁରୁଷାକାର ବଳରେ ପରିସ୍ଥିତିକୁ ସେ ନିଜର ନିୟନ୍ତ୍ରଣରେ ରଖିବାରେ ସଫଳ ହୋଇପାରିଥିଲେ । ତାଙ୍କ ସଫଳତାର ଏହା ହିଁ ହେଉଛି ବୀଜମନ୍ତ୍ର । ସେ ବିଭିନ୍ନ ସଂଗଠନରେ ପ୍ରମୁଖ କର୍ମକର୍ତ୍ତା ହୋଇଛନ୍ତି । ମନ୍ତ୍ରୀ ହୋଇଛନ୍ତି, କିନ୍ତୁ ସମାଜ ସହିତ ତାଙ୍କର ଯେଉଁ ଘନିଷ୍ଠ ଯୋଗସୂତ୍ର ତାହାକୁ କୋହଳ କରିବାକୁ ଦେଇନାହାଁନ୍ତି । ଅର୍ଥାତ ସବୁ ପ୍ରତିଷ୍ଠାନର ବିକାଶ କଥା ଚିନ୍ତା କଲାବେଳେ ସେ 'ସମାଜ'ର ସ୍ୱାର୍ଥକୁ ଭୁଲି ନଥାନ୍ତି । ସବୁ କାମ କଲାବେଳେ ନିଜର ଅବଚେତନ ମନରେ 'ସମାଜ'ର ଯେପରି କିଛି କ୍ଷତି ନହେବ ସେଥି ପ୍ରତି ସେ ସଚେତନ ରହୁଥିଲେ । 'ସମାଜ' ଆର୍ଥିକ ସଂକଟର ସମ୍ମୁଖୀନ ହୋଇଥିବା ବେଳେ ସେ ପତ୍ନୀଙ୍କ ଗହଣା ବନ୍ଧା ପକାଇଛନ୍ତି କିମ୍ବା ବିକି ଦେଇଛନ୍ତି । ସେଥିରୁ ଯାହା କିଛି ଅର୍ଥ ମିଳିଛି ସେଥିରେ ସେ 'ସମାଜ' ଚଳାଇଛନ୍ତି । 'ସମାଜ'କୁ ବନ୍ଦ ହେବାକୁ ଦେଇନାହାଁନ୍ତି । ସରକାରୀ ବା ବେସରକାରୀ ପଦପଦବୀରେ ରହିଥିବା ବେଳେ ସେ 'ସମାଜ'ର ସ୍ୱାର୍ଥକୁ ପ୍ରାଧାନ୍ୟ ଦେଇଛନ୍ତି । 'ସମାଜ'ପ୍ରତି ତାଙ୍କର ଶ୍ରଦ୍ଧାକୁ ଦେଖିଲେ ମନେ ହେଉଥିଲା ଏହା ଯେପରି ତାଙ୍କର ଚେତନାକୁ ସବୁବେଳେ ଆଚ୍ଛାଦିତ କରି ରଖିଛି । କ୍ୱଚିତ ବ୍ୟକ୍ତିଙ୍କ ଠାରେ ଏପରି ଏକନିଷ୍ଠ ତ୍ୟାଗ ମନୋଭାବ ଦେଖାଯାଏ ।

ରାଧାନାଥ ବାବୁଙ୍କ ଚରିତ୍ରର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଯେଉଁ ପରିସ୍ଥିତିକୁ ସେ ପସନ୍ଦ କରନ୍ତି ନାହିଁ ତାହାକୁ ସେ ପରିବର୍ତ୍ତନ କରିଛନ୍ତି । ଯଦି ପରିବର୍ତ୍ତନ କରି ନପାରିଛନ୍ତି ତେବେ ତାହାର ବିନାଶ ନିମନ୍ତେ ସମସ୍ତ ଉପାୟ ଅବଲମ୍ବନ କରିଛନ୍ତି ଏବଂ ସେଥିରେ ସଫଳ ମଧ୍ୟ ହୋଇଛନ୍ତି । 'ସମାଜ'କୁ ଏକ ଲାଭଦାୟକ ସଂସ୍ଥାରେ ପରିଣତ କରି ଏହାକୁ କର୍ପୋରେଟ ଢାଞ୍ଚା ଦେବାକୁ ସେ ଉଦ୍ୟମ କରିନାହାଁନ୍ତି । ସମାଜରୁ ହେଉଥିବା ଲାଭକୁ ସେ ଓଡିଶାର ଶିକ୍ଷା ଏବଂ ଲୋକମାନଙ୍କୁ ସାହାଯ୍ୟ କାର୍ଯ୍ୟରେ ଲଗାଇଦେଇଛନ୍ତି । ତେଣୁ ତାଙ୍କ ସମୟରେ 'ସମାଜ'ରୁ ବିପୁଳ ଲାଭ

ମିଳୁଥିଲେ ମଧ୍ୟ ସେ ଏହାକୁ ଚାକଚକ୍ୟ ନକରି ଲୋକଙ୍କ ସେବାରେ ଲାଭଲବ୍ଧ ଅର୍ଥକୁ ବ୍ୟୟ କରିଦେଉଥିଲେ । ତେବେ ଏହା କଲାବେଳେ ସେ କର୍ମଚାରୀମାନଙ୍କ ସ୍ୱାର୍ଥକୁ ବଳି ଦେଉନଥିଲେ । ଓଡିଶାରେ କେବଳ 'ସମାଜ' ବ୍ୟତୀତ ଅନ୍ୟ କୌଣସି ସଂବାଦପତ୍ର ସେତେବେଳେ ମଜୁରୀ ବୋର୍ଡର ସୁପାରିଶକୁ କାର୍ଯ୍ୟକାରୀ କରୁନଥିଲେ । ରାଧାନାଥ ବାବୁ କିନ୍ତୁ ମଜୁରୀ ବୋର୍ଡ ସୁପାରିଶ ପ୍ରକାଶ ପାଇବା ମାତ୍ରେ ତାହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ପଦକ୍ଷେପମାନ ଗ୍ରହଣ କରୁଥିଲେ । ତେବେ ଏହା ସତ୍ୟ ଯେ 'ସମାଜ'ରେ ଚାକିରୀ ଖଣ୍ଡେ ପାଇବା ସହଜ ନଥିଲା । ବିଶେଷକରି ସଂପାଦକୀୟ ବିଭାଗରେ ଚାକିରୀ ପାଇବା ଅତି କଷ୍ଟକର ଥିଲା । ଏହାକୁ ରାଧାନାଥ ବାବୁଙ୍କ ହସ୍ତମୁଦି ମାହାଲ ବୋଲି କୁହାଯାଏ । ରାଧାନାଥ ବାବୁଙ୍କର ସଂପୂର୍ଣ୍ଣ ବିଶ୍ୱାସ ଭାଜନ ନହେବା ପର୍ଯ୍ୟନ୍ତ ଏହି ବିଭାଗରେ ସେ କାହାରିକୁ ନେଉନଥିଲେ । ଅନ୍ୟାନ୍ୟ ବିଭାଗରେ ହେଉଥିବା ନିଯୁକ୍ତି କଥା ମ୍ୟାନେଜର ଫକିର ବାବୁ ବୁଝୁଥିଲେ ଏବଂ ଏଥିରେ ରାଧାନାଥ ବାବୁ ଆଦୌ ହସ୍ତକ୍ଷେପ କରୁନଥିଲେ । ଏହି ଅନୁଷ୍ଠାନରେ ଥରେ ଚାକିରୀ ହୋଇଗଲେ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଚାକିରୀ ଚାଲିଯିବାର ଭୟ ରହୁନଥିଲା । କର୍ମଚାରୀ ନିଜେ ଯଦି ଚାକିରୀ ଛାଡି ଦେବାକୁ ଚାହୁଁଥିଲେ ତାହା ଭିନ୍ନ କଥା । ଏହି ଅନୁଷ୍ଠାନର ଆଉ ଏକ ଢାଞ୍ଚା ହେଉଛି ଏଠାରେ ଶିକ୍ଷାନବୀଶ (ପ୍ରୋବେସନ) ସମୟର ସୀମା ନଥାଏ । କାରଣ ଶିକ୍ଷାନବୀଶଙ୍କ ଉପରେ ଆସ୍ଥା ନଆସିବା ପର୍ଯ୍ୟନ୍ତ ସ୍ଥାୟୀ ନିଯୁକ୍ତି ମିଳେନାହିଁ । ଏହି ଆସ୍ଥା ଆସିବାକୁ କେତେଦିନ ବା ବର୍ଷ ଲାଗିବ ତାହା ରାଧାନାଥ ବାବୁ ଏବଂ ଫକିରବାବୁ ଜାଣିଥିଲେ । ପରେ ଅବଶ୍ୟ ପଦାରବିନ୍ଦ ବାବୁ ପରିଚାଳକ ଦାୟିତ୍ୱ ନେବାପରେ ଏହି ପ୍ରକ୍ରିୟାରେ ପରିବର୍ତ୍ତନ ହେଲା ।

ସେତେବେଳେ କୁହାଯାଉଥିଲା ଟାଟା କଂପାନୀ ଏବଂ ରାଧାନାଥ ବାବୁଙ୍କ 'ସମାଜ'ରେ ଚାକିରୀ କଲେ ବର୍ଷକୁ ଷୋହଳମାସର ଦରମା

ମିଳେ । ବୋନସ ଠାରୁ ଆରମ୍ଭ କରି ଅର୍ଜ୍ଜନ ଛୁଟି (ଇଏଲ))ପର୍ଯ୍ୟନ୍ତ ସବୁର ପାଉଣା 'ସମାଜ'ର କର୍ମଚାରୀମାନେ ଯଥାବିଧି ପାଉଥିଲେ । ଏହାବାଦ ଏହା ମଧ୍ୟ ସମସ୍ତେ ଜାଣନ୍ତି ଯେ ରାଧାନାଥ ବାବୁଙ୍କ 'ସମାଜ'ରେ ଚାକିରୀ ପାଇଲେ ଚାକିରୀ ଯାଏ ନାହିଁ । କାରଣ ରାଧାନାଥ ବାବୁ କାହାରିକୁ ଚାକିରୀରୁ ବାହାର କରନ୍ତିନାହିଁ । କର୍ମଚାରୀ ଯଦି ଭୁଲ କରନ୍ତି ତେବେ ତାଙ୍କୁ ସେ ଅତି କଠୋର ଭାଷାରେ ଗାଳି ଦିଅନ୍ତି । ଏପରିକି ତଣ୍ଟିଆ ମଧ୍ୟ ଦିଅନ୍ତି । ବାହାରିଯିବାକୁ କୁହନ୍ତି । କୋପ କରନ୍ତି, କିନ୍ତୁ କାହାର ଦାନା ମାରନ୍ତି ନାହିଁ । କର୍ମଚାରୀମାନେ ଯଦି କୌଣସି ଦାବି ବା ପ୍ରସ୍ତାବ ନେଇ ତାଙ୍କ ପାଖକୁ ଯାଉଥିଲେ ତେବେ ପ୍ରଥମେ ସେ କିଛି ନବୁଝି ଗ୍ରହଣ କରିବାକୁ ମନା କରିଦେଉଥିଲେ । ଏପରି କ୍ରୋଧ ପ୍ରକାଶ କରୁଥିଲେ ଯେ ସତେ ଯେପରି ସେ ମାରିବେ ଏବଂ ସମସ୍ତଙ୍କୁ ବାହାର କରିଦେବେ । ପରେ ବୁଝିଗଲେ ସେ ଦାବି ଗ୍ରହଣ କରୁଥିଲେ ଏବଂ ତାହାକୁ ତୁରନ୍ତ କାର୍ଯ୍ୟକାରୀ କରୁଥିଲେ । ତାଙ୍କୁ କିପରି ବୁଝାଇବାକୁ ହୁଏ ସେହି କଳାଟି ଫକିର ବାବୁଙ୍କୁ ଖୁବ ଭଲଭାବେ ଜଣାଥିଲା । କର୍ମଚାରୀଙ୍କ ଉପରେ ସେ କେତେବେଳେ ତୁଷ୍ଟ ଏବଂ କେତେବେଳେ ରୁଷ୍ଟ ରହୁଥିଲେ ତାହା ବୁଝିବା ମଧ୍ୟ ସହଜ ନଥିଲା । ତାଙ୍କର ଏହି ବିଚିତ୍ର ମନୋଭାବକୁ ସହଜରେ ବୁଝିହେଉନଥିଲା । ତାଙ୍କର ଏହି ମନୋଭାବକୁ ଦେଖି ତାଙ୍କୁ କେତେକ ବ୍ୟକ୍ତି ଗୌରବୋନ୍ମାଦ କହୁଥିଲେ । ବାସ୍ତବରେ ସେ ତାହା ନଥିଲେ । ସେ ବିଶ୍ୱାସ କରୁଥିବା ବହୁ ବ୍ୟକ୍ତି ତାଙ୍କ ସହିତ ବିଶ୍ୱାସଘାତକତା କରିଥିବାରୁ ସେ ହଠାତ୍ କାହାରି ଉପରେ ବିଶ୍ୱାସ କରିପାରୁନଥିଲେ । ତେବେ ତାଙ୍କର ସବୁଠାରୁ ବଡ ଦୁର୍ବଳତା ଥିଲା ଯଦି କାହାକୁ ସେ ବିଶ୍ୱାସ କରୁଥିଲେ ତେବେ ତାଙ୍କ ବିରୋଧରେ ଯିଏ ଯେତେ ଯାହା କହିଲେ ମଧ୍ୟ ସେ ବିଶ୍ୱାସ କରୁନଥିଲେ । ଅଖଣ୍ଡ ବିଶ୍ୱାସ ଏବଂ ଚରମ ଅବିଶ୍ୱାସ ତାଙ୍କ ଜୀବନର ଦୁଇଟି ପରସ୍ପର ବିରୋଧୀ ଚରିତ୍ର ଥିଲା ।

## ବାବୁଜୀ ଓ 'ସମାଜ'

ରାଧାନାଥ ବାବୁଙ୍କର ଆଉ ଏକ ବୈଶିଷ୍ଟ୍ୟ ହେଉଛି 'ସମାଜ'ରେ ଯଦି କିଛି ଭୁଲ ବାହାରିଯାଏ ତେବେ ସେହି ବ୍ୟାପାରରେ ସେ କ୍ଷମା କରୁନଥିଲେ । ଭୁଲ କରିଥିବା ବ୍ୟକ୍ତିକୁ ସେ ଏପରି ଭାବେ ଗାଳି କରୁଥିଲେ ଯେ ସେହି ବ୍ୟକ୍ତି ସେହି କ୍ଷଣି ଚାକିରୀ ଛାଡି ଚାଲିବାକୁ ଚାହୁଁଥିଲେ । ଏପରି ମଧ୍ୟ ହୋଇଛି ଯେ ଭୁଲ କରିଥିବା କର୍ମଚାରୀଙ୍କୁ ବାହାର କରିଦେବାପାଇଁ ସେ ପରିଚାଳକଙ୍କୁ ମୌଖିକ ନିର୍ଦ୍ଦେଶ ଦେଇଛନ୍ତି । ପରିଚାଳକ କିନ୍ତୁ ତାହା କାର୍ଯ୍ୟକାରି କରନ୍ତି ନାହିଁ । କାରଣ ରାଧାନାଥ ବାବୁଙ୍କ କ୍ଷଣକୋପ ସଂପର୍କରେ ସମସ୍ତେ ଜାଣନ୍ତି । ରାଧାନାଥ ବାବୁଙ୍କ କ୍ରୋଧକୁ ସହ୍ୟ କରିବାର ଶକ୍ତି ନଥିଲେ 'ସମାଜ'ରେ କାମ କରିବା ସଂଭବ ନଥିଲା । ଏପରି ମଧ୍ୟ କୁହାଯାଏ ଯେ କର୍ମଚାରୀମାନେ ପ୍ରତିଦିନ କାମ କରିବାକୁ ଆସିବା ବେଳେ 'ସମାଜ' ଫାଟକରେ ପଶିବା ବେଳେ ଭାବନ୍ତି ଆଜି ତାଙ୍କର ଚାକିରୀ ରହିବ ତ? ଆଉ କିଛି ଭାବନ୍ତି ସେମାନଙ୍କ ଚାକିରୀ ଅଛି ତ? ବିଶେଷକରି ସଂପାଦନା ବିଭାଗରେ ଯେଉଁମାନେ କାମ କରନ୍ତି ସେମାନଙ୍କ ନିମନ୍ତେ ଦିନଟିଏ ଗଲେ ଯୁଗଟିଏ ଯିବାପରି ଲାଗେ । କାରଣ ଯେକୌଣସି ମୁହୂର୍ତ୍ତରେ ରାଧାନାଥ ବାବୁଙ୍କ ନିକଟରୁ ଡାକରା ଆସିଯିବାର ଭୟ ଥାଏ । ଡାକରା ଆସିବା ଅର୍ଥ ଗାଳି ଶୁଣିବା । ଥରେ ସଂପାଦନା ବିଭାଗରେ ଯୋଗଦେଇଥିବା ଜନୈକ କର୍ମଚାରୀଙ୍କ କାର୍ଯ୍ୟକଳାପ ଉପରେ ରାଧାନାଥ ବାବୁ କୌଣସି ଏକ କାରଣରୁ ସନ୍ଦେହ କଲେ । ଏହି ଘଟଣା ଘଟିବା ବେଳେ ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ତିକ୍ତ ମନୋମାଳିନ୍ୟ ଘଟିଥାଏ । ବିଜୁ ବାବୁଙ୍କ ସହିତ ଏହି କର୍ମଚାରୀଙ୍କର ପାରିବାରିକ ସଂପର୍କ ଥିବାର ସେ ଶୁଣିବାକୁ ପାଇବା ପରେ ତାଙ୍କୁ ଡାକିଲେ । କର୍ମଚାରୀ ଜଣକ ପହଞ୍ଚିବା ପରେ ସେ ନିଜ ଅଫିସ ପ୍ରକୋଷ୍ଠର ସବୁ ଝରକା କବାଟ ବନ୍ଦ କରିଦେଇ କର୍ମଚାରୀ ଜଣଙ୍କୁ ଏପରି ଜେରା କଲେ ଯେ ସେ ତାଙ୍କ ପାଖରୁ ଫେରିବା ବେଳେ ସେ କାନ୍ଦୁଥିଲେ । ନିଜ ଚୌକି ପାଖକୁ ଆସିବାପରେ ସେ ଚାକିରୀ ଛାଡି ଚାଲିଯିବେ ବୋଲି

ବାର୍ତ୍ତା ସଂପାଦକଙ୍କୁ କହିଲେ ଏବଂ ଇସ୍ତଫା ପତ୍ର ଲେଖି ପରିଚାଳକ ଫକିର ବାବୁଙ୍କୁ ଦେବାକୁ ଗଲେ। ପରିଚାଳକ ତାଙ୍କର ଇସ୍ତଫା ପତ୍ର ରଖିଲେ ନାହିଁ, ବରଂ କହିଲେ ବାବୁଜୀ (ରାଧାନାଥ ବାବୁଙ୍କୁ ସମସ୍ତେ ବାବୁଜୀ ବୋଲି ଡାକୁଥିଲେ) ସିନା ଗାଳି ଦେଲେ, ତୁମକୁ କିନ୍ତୁ ବାହାର କରିଦେବାପାଇଁ ମତେ କିଛି କହି ନାହାଁନ୍ତି। ଯାଅ କାମ କର।' ଏହାପରେ ସେହି କର୍ମଚାରୀ ଦୀର୍ଘ ୩୦ ବର୍ଷ କାମ କଲାପରେ ୧୯୮୪ରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଜାମାତା ସୌମ୍ୟ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ଦୈନିକ ସଂବାଦପତ୍ର 'ସଂବାଦ'ରେ ଯାଇ ଏକ ବରିଷ୍ଠ ପଦବୀରେ ଯୋଗଦେଲେ। ଏହି ୩୦ ବର୍ଷ ମଧ୍ୟରେ ବାବୁଜୀ ତାଙ୍କୁ ଥରେ ବି ଡାକି କିଛି ଅସମ୍ମାନଜନକ ଭାବେ କହି ନଥିଲେ। କାରଣ ସେହି ବ୍ୟକ୍ତିଙ୍କର ନିରପେକ୍ଷତା ସନ୍ଦେହର ଊର୍ଦ୍ଧ୍ୱରେ ବୋଲି ପରେ ତାଙ୍କର ହୃଦୟଙ୍ଗମ ହୋଇଥିଲା ଏବଂ ତାଙ୍କୁ ଡାକି ଗାଳି ଦେଇଥିବା ଯୋଗୁ ସେ ଅନୁତାପ କରିଥିଲେ।

'ସମାଜ' ଏକ ଅବିଶ୍ୱାସମୟ ବାତାବରଣ ମଧ୍ୟ ଦେଇ ଗତି କରୁଥିବା ବେଳେ ବାବୁଜୀ ତାହାକୁ ସୁରକ୍ଷିତ କରି ରଖିବାପାଇଁ ବହୁ ସମସ୍ୟା ଏବଂ ବିଶ୍ୱାସଘାତକତାର ସମ୍ମୁଖୀନ ହୋଇଛନ୍ତି। ତେଣୁ ସେ ହଠାତ୍ କାହାକୁ ବିଶ୍ୱାସ କରିପାରୁନଥିଲେ। ଏହା ଫଳରେ ଯାହା ଉପରେ ତାଙ୍କର ସାମାନ୍ୟ ଅବିଶ୍ୱାସ ହେଉଥିଲା ତାଙ୍କୁ ସେ ମନଇଚ୍ଛା ଗାଳି କରୁଥିଲେ। ଅନେକ ସମୟରେ ତାଙ୍କୁ ଦେଖିଲେ ମନେ ହୁଏ ସେ ଗୋଟିଏ ଶିଶୁ ଠାରୁ ମଧ୍ୟ ଅବୁଝା। ତାଙ୍କ ହୃଦୟରେ ଅମାପ ଶ୍ରଦ୍ଧା ରହିଛି। ପ୍ରକୃତରେ ସେ କ'ଣ-କୋମଳ ନା କଠୋର ଏହା ବୁଝିବା କାହାରି ପାଖରେ ସହଜ ନଥିଲା। ତାଙ୍କର ଏହି ସନ୍ଦେହୀ ମନୋଭାବ ମଧ୍ୟରେ ବି ସେ କେତେକ ବ୍ୟକ୍ତିଙ୍କୁ ଅକୁଣ୍ଠିତ ଭାବେ ବିଶ୍ୱାସ କରୁଥିଲେ। ଏହି ବ୍ୟକ୍ତିମାନେ ଯଦି କୁଆକୁ ଧଳା କହୁଥିଲେ ତେବେ ବାବୁଜୀ ମଧ୍ୟ କୁଆକୁ ଧଳା କହିବାକୁ କୁଣ୍ଠିତ

ହେଉନଥିଲେ । ତାଙ୍କର ଏହି ମନୋଭାବ ଯୋଗୁ ବହୁ କ୍ଷେତ୍ରରେ ସେ ଅପାତ୍ରରେ ମଧ୍ୟ ଦାନ କରିଛନ୍ତି ଏବଂ ସେଥି ନିମନ୍ତେ ଅପଦସ୍ଥ ମଧ୍ୟ ହୋଇଛନ୍ତି, କିନ୍ତୁ ସେହି ବ୍ୟକ୍ତିମାନଙ୍କୁ ତ୍ୟାଗ କରିନାହାଁନ୍ତି । ବୋଧେ ବଡ ମଣିଷମାନଙ୍କର ଏହା ଏକ ଗୁଣ ! ତେବେ ଏହାକୁ କଦାପି ସୁଗୁଣ କୁହାଯାଇନପାରେ ।

ଦେଶ ସ୍ୱାଧୀନ ହେବା ପରେ ରାଧାନାଥ ବାବୁ ପ୍ରଥମ ୨୫ ବର୍ଷ ସକ୍ରିୟ ଭାବେ ରାଜନୀତିରେ କାର୍ଯ୍ୟ କରିଛନ୍ତି । କଂଗ୍ରେସ ଟିକଟରେ ସେ ଆଠଗଡ ବିଧାନସଭା ଆସନରୁ ଜିତି ମନ୍ତ୍ରୀ ହୋଇଛନ୍ତି । ଏହି ସମୟ ମଧ୍ୟରେ ସେ ମନ୍ତ୍ରୀ ହୋଇ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱ ନିଷ୍ଠାର ସହିତ ତୁଲାଇଛନ୍ତି । ବର୍ତ୍ତମାନ ମନ୍ତ୍ରୀମାନେ ଫାଇଲରେ ଦସ୍ତଖତ କରିବା ପୂର୍ବରୁ ଯେପରି ବ୍ୟୁରୋକ୍ରାଟମାନଙ୍କ ଉପରେ ନିର୍ଭର କରୁଛନ୍ତି ରାଧାନାଥ ବାବୁ ତାହା କରୁନଥିଲେ । ସେ ଫାଇଲ ସବୁ ଭଲଭାବେ ପଢି ବୁଝୁଥିଲେ ଏବଂ ତାହାପରେ ଦସ୍ତଖତ କରୁଥିଲେ । ଅଫସିରମାନଙ୍କୁ ସେ ସମ୍ମାନ କରୁଥିଲେ ଏବଂ ଅଫିସରମାନେ ମଧ୍ୟ ତାଙ୍କୁ ସମ୍ମାନ କରୁଥିଲେ । ଏହି ସମ୍ମାନ ପ୍ରଦର୍ଶନରେ ସାମାନ୍ୟ କୁଟିଳତା ନଥିଲା, ଯାହା ଫଳରେ ସେ କ୍ଷମତା ରାଜନୀତିରୁ ଅବସର ନେଇ 'ସମାଜ' ନିମନ୍ତେ ସଂପୂର୍ଣ୍ଣ ସମୟଦେଇ କାମ କଲାବେଳେ ଏହି ଅଫିସରମାନେ ବିଭିନ୍ନ ସମୟରେ ତାଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରଦାନ କରୁଥିଲେ । ଏହା କଲାବେଳେ ସେମାନେ ମଧ୍ୟ ଜାଣିଥିଲେ ଯେ ବାବୁଜୀ ସେମାନଙ୍କ ନାମ ପ୍ରକାଶ କରିବେ ନାହିଁ । ଏହି କାରଣ ଯୋଗୁ ସରକାରୀ କଳରେ କିଛି ଦୁର୍ନୀତି ହେବା ମାତ୍ରେ ବାବୁଜୀ ଖବର ପାଇଯାଉଥିଲେ ଏବଂ ତାହାକୁ ଛାପିଦେଉଥିଲେ । ସେ ମନ୍ତ୍ରୀ ଥିବା ସମୟରେ ଗସ୍ତରେ ଯିବା ବେଳେ ଫାଇଲ ସବୁ ନେଇକରି ଯାଉଥିଲେ । ଦିନରେ କର୍ମଚାରୀମାନଙ୍କ ସହିତ ଆଲୋଚନା କରୁଥିଲେ । ଏହାପରେ ରାଜନୈତିକ କର୍ମୀମାନଙ୍କ ସହିତ ଆଲୋଚନା କରୁଥିଲେ । ଏଥି ସହିତ

'ସମାଜ'ର ପ୍ରତିନିଧିମାନଙ୍କୁ ଭେଟି ସେମାନଙ୍କର ଭଲମନ୍ଦ ବୁଝୁଥିଲେ। ଏହାର ପ୍ରସାରଣ କିପରି ହେଉଛି ତାହା ବିତରକମାନଙ୍କ ଠାରୁ ପଚାରି ବୁଝୁଥିଲେ। ରାତିରେ ଫାଇଲ କାମ କରୁଥିଲେ। ଏସଂପର୍କରେ ଥରେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଥଟ୍ଟାରେ କହିଥିଲେ- ଏଣିକି ରାଧାନାଥ ବାବୁ ଗସ୍ତରେ ଗଲେ ତାଙ୍କ ପାଇଁ ଆଉ ଗୋଟିଏ ଜିପ୍ ବରାଦ କରିବାକୁ ପଡିବ । ରାଧାନାଥ ବାବୁଙ୍କ ସହିତ ନିବିଡ ଭାବେ ଯେଉଁମାନେ ଜଡିତ ସେମାନେ କୁହନ୍ତି ଯେ ରାଧାନାଥ ବାବୁ ରାତିରେ କେତେବେଳେ ଶୁଅନ୍ତି ତାହା କେହି ଜାଣନ୍ତି ନାହିଁ ।

ବିଧାୟକ ଭାବେ ବିଧାନସଭାରେ ବିତର୍କ କଲାବେଳେ ସବୁ ପକ୍ଷ ତାଙ୍କ ବକ୍ତବ୍ୟକୁ ଧ୍ୟାନ ସହକାରେ ଶୁଣୁଥିଲେ ଏବଂ ସରକାର ତାଙ୍କର ପ୍ରସ୍ତାବକୁ ସମ୍ମାନ ଦେଉଥିଲେ । ଏବେ ସେପରି ବିତର୍କ ହେଉନାହିଁ କିମ୍ବା ବିଧାୟକମାନେ ସେପରି ଭାବଗର୍ଭକ ବିତର୍କ ମଧ୍ୟ କରୁ ନାହାଁନ୍ତି । କେବଳ ହୋ ହଲ୍ଲା ଏବଂ ଗୃହକୁ ମୁଲତବିକରି ଟିକସଦାତାଙ୍କ ଅର୍ଥର ବରବାଦ କରାଯାଉଛି । ବିଭିନ୍ନ କ୍ଷେତ୍ରରେ ରାଧାନାଥ ବାବୁ ଯେଉଁ ସବୁ କାର୍ଯ୍ୟ କରିଯାଇଛନ୍ତି ତାହାର ସମୀକ୍ଷା ଯଦି କରାଯାଏ ତେବେ ସେ ଜଣେ ବର୍ଣ୍ଣାଢ୍ୟ ବ୍ୟକ୍ତିତ୍ୱ ଥିଲେ ବୋଲି ତାଙ୍କର ତୀବ୍ର ସମାଲୋଚକ ମଧ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେବ । ୧୯୫୩ ମସିହାର ଘଟଣା । ରାଧାନାଥ ବାବୁ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ଅର୍ଥ ଏବଂ ଶିକ୍ଷା ବିଭାଗର ମନ୍ତ୍ରୀ ଥାଆନ୍ତି । ଶିକ୍ଷା ବିଭାଗର ଖର୍ଚ୍ଚ ଦାବି ଉପରେ ଆଲୋଚନା ଚାଲିଥାଏ। ବିତର୍କରେ ସ୍ୱାଧୀନ ସଦସ୍ୟ ପଣ୍ଡିତ ଗୋଦାବରୀଶ ମିଶ୍ର ସରକାରଙ୍କ ଶିକ୍ଷା ନୀତିର ସମାଲୋଚନା କରି ନିଜର ବକ୍ତବ୍ୟ ରଖୁଥିବା ବେଳେ ପାଠ୍ୟକ୍ରମ ପ୍ରସ୍ତୁତିରେ ହୋଇଥିବା ବିଭ୍ରାଟ ସଂପର୍କରେ ସରକାରଙ୍କର କଟୁ ସମାଲୋଚନା କରୁଥାଆନ୍ତି । ସେ ନିଜର ବକ୍ତବ୍ୟ ରଖିବା ପରେ ତାହାର ଉତ୍ତର ଦେଉଥିବା ବେଳେ ରାଧାନାଥ ବାବୁ ଗୋଦାବରୀଶଙ୍କ ଦ୍ୱାରା ଲିଖିତ ଏକ କବିତାର ଗୋଟିଏ ଧାଡ଼ି ଆବୃତ୍ତି କରିଥିଲେ। ଏହା ଶୁଣି ଗୋଦାବରୀଶ ବାବୁ ଛିଗୁଲେଇ

କରି କହିଥିଲେ ଯାହା ହେଉ ମାନ୍ୟବର ଶିକ୍ଷା ମନ୍ତ୍ରୀ ଏହି ଲେଖକର କବିତା ଆବୃତ୍ତି କରିଥିବାରୁ ତାଙ୍କୁ ସେ କୃତଜ୍ଞତା ଜ୍ଞାପନ କରୁଛନ୍ତି । ରାଧାନାଥ ବାବୁ ଚଟାପଟ କହିଲେ ପାଠ୍ୟକ୍ରମରେ ମଧ୍ୟ ଏହି କବିତାଟି ସ୍ଥାନ ପାଇଛି । ଏଥିସହିତ କହିଥିଲେ ସ୍ୱାଧୀନ ସଦସ୍ୟଙ୍କ ମତାମତକୁ ସରକାର ଗୁରୁତ୍ୱର ସହ ବିଚାରକରି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । କାରଣ ସ୍ୱାଧୀନ ସଦସ୍ୟ ପଣ୍ଡିତ ଗୋଦାବରୀଶ ହେଉଛନ୍ତି ଓଡିଆ ଜାତିର ମହାନ୍ କବି ଏବଂ ଗୁରୁ । ତାଙ୍କର ପରାମର୍ଶକୁ ଏଡାଇଦେବାର ସାହସ କେବଳ ଏହି ଶିକ୍ଷା ମନ୍ତ୍ରୀ ନୁହଁନ୍ତି କୌଣସି ଶିକ୍ଷା ମନ୍ତ୍ରୀ ମଧ୍ୟ କରିପାରିବେ ନାହିଁ । ଥରେ କଥା ପ୍ରସଂଗରେ ପ୍ରଖ୍ୟାତ ସାଂବାଦିକ ଭଗବାନ ପତି ଉପରୋକ୍ତ କଥାଟି କହିଥିଲେ ।

ବହୁ ବ୍ୟକ୍ତିତ୍ୱର ସମାହାର ତାଙ୍କ ଠାରେ ଦେଖିବାକୁ ମିଳେ । ଇତିହାସରେ ତାଙ୍କ ସଂପର୍କରେ ଲେଖାଯିବା ବେଳେ ସେ ଜଣେ ସ୍ୱାଧୀନତା ସଂଗ୍ରାମୀ, ମନ୍ତ୍ରୀ, ବିଧାୟକ ଥିଲେ ବୋଲି ଲେଖାଯିବ । ଓଡିଶାର ଜନସାଧାରଣ ଏବଂ ତାଙ୍କ ସହିତ କାମ କରିଥିବା ଲୋକମାନେ ତାଙ୍କୁ ଜଣେ କର୍ମଠ ସଂପାଦକ ଏବଂ ସେବକ ଭାବେ ମନେ ରଖିବେ । ନଈବଢି, ଘରପୋଡି ସମେତ ଯେତେବେଳେ କୌଣସି ପ୍ରାକୃତିକ ବିପର୍ଯ୍ୟୟ ଓଡିଶାର ଯେ କୌଣସି ସ୍ଥାନରେ ଦେଖାଦେଇଛି ସେଠାରେ ସରକାରୀ ସାହାଯ୍ୟ ପହଞ୍ଚିବା ପୂର୍ବରୁ ରାଧାନାଥ ବାବୁ 'ସମାଜ'ର ସାହାଯ୍ୟ ନେଇ ସେମାନଙ୍କ ପାଖରେ ପହଞ୍ଚି ଯାଉଥିଲେ । ଲୋକଙ୍କ ଦୁଃଖରେ ସାମିଲ ହୋଇ ସେମାନଙ୍କ ସାହାଯ୍ୟ ବ୍ୟବସ୍ଥା କରିଛନ୍ତି । ସେମାନେ ତାଙ୍କୁ ତ୍ରାଣକର୍ତ୍ତାଭାବେ ମନେ ରଖିବେ ।

୧୯୬୬-୬୭ ମସିହାରେ କଳାହାଣ୍ଡିରେ ମରୁଡି ପରିସ୍ଥିତି ଉପୁଜିଥିବା ବେଳେ ଲୋକମାନେ ଆହାର ବିନା ପ୍ରାଣ ହରାଉଥିଲେ । ସେମାନଙ୍କୁ ବଞ୍ଚାଇବା ପାଇଁ ସରକାରୀ ସାହାଯ୍ୟ ଯଥେଷ୍ଟ ହେଉନଥିଲା ।

୧୯୬୫ ମସିହାରେ ହୋଇଥିବା ପାକିସ୍ତାନ ଯୁଦ୍ଧ ଯୋଗୁ ପିଏଲ ୪୮୦ ରାଜିନାମାରେ ଆମେରିକା ଯେତିକି ଗହମ ଭାରତକୁ ଦେବା କଥା ତାହା ଯୋଗାଉନଥାଏ । ଏହି ମରୁଡି ପ୍ରପୀଡ଼ିତ ଦୁଇ ରାଜ୍ୟକୁ ଆବଶ୍ୟକ ମୁତାବକ ଗହମ ଏବଂ ଚାଉଳ ଯୋଗାଇବା କେନ୍ଦ୍ରସରକାରଙ୍କ ପକ୍ଷରେ କଷ୍ଟକର ହୋଇପଡିଥିଲା । ଭିଏତନାମ ଯୁଦ୍ଧରେ ଭାରତ ଆମେରିକାର ନୀତିକୁ ସମାଲୋଚନା କରୁଥିବାରୁ ଆମେରିକାର ଲିଣ୍ଡନ ବି ଜନସନଙ୍କ ସରକାର ଭାରତକୁ ଗହମ ଦେବାରେ ଟାଳଟୁଳ ନୀତି ଅବଲମ୍ବନ କରୁଥାଆନ୍ତି । ଏହି ପରିସ୍ଥିତିରେ କଳାହାଣ୍ଡିର ଭୋକିଲା ଜନସାଧାରଣଙ୍କୁ ମୁଠାଏ ଭାତ ଦେବାପାଇଁ ମା ରମା ଦେବୀ ଏବଂ ରାଧାନାଥ ବାବୁଙ୍କ ଉଦ୍ୟମରେ ଏକ ରିଲିଫ କମିଟି ଗଠିତ ହେଲା । ଏହାର ସଭାପତି ରହିଲେ ରମା ଦେବୀ ଏବଂ ରାଧାନାଥ ବାବୁ ରହିଲେ କୋଷାଧ୍ୟକ୍ଷ । କଳାହାଣ୍ଡିର ଭୋକିଲା ଭାଇ- ଭଉଣୀମାନଙ୍କୁ ଆହାର ଦେବାପାଇଁ ସେ ଏବଂ ରମା ଦେବୀ 'ସମାଜ' ମାଧ୍ୟମରେ ଓଡିଶାର ଜନସାଧାରଣଙ୍କୁ ନିବେଦନ କଲେ । ଏହି ନିବେଦନକୁ ପାଠକରିବା ପରେ ପର୍ଯ୍ୟାପ୍ତ ପରିମାଣର ଚାଉଳ,ଡାଲି ଏବଂ ଅର୍ଥ ଆସି 'ସମାଜ'ରେ ପହଞ୍ଚିଲା । କେବଳ ସେତିକି ନୁହେଁ ,ବହୁ ସ୍ୱେଚ୍ଛାସେବୀ ମଧ୍ୟ କଳାହାଣ୍ଡିରେ କାମ କରିବାକୁ ଆସି ପହଞ୍ଚିଗଲେ । ସେମାନଙ୍କୁ ସାଥୀରେ ନେଇ ରାଧାନାଥ ବାବୁ କଳାହାଣ୍ଡିରେ ରିଲିଫ ପ୍ରଦାନ କଲେ । ଏହି ରିଲିଫ କାର୍ଯ୍ୟ ଏପରି ଶୃଙ୍ଖଳାର ସହ କରାଯାଇଥିଲା ଯେ ଏବେ ମଧ୍ୟ କଳାହାଣ୍ଡିର ମରୁଡ଼ି କଥା ପଡିଲେ ସେହି ସମୟର ଯେଉଁ ବ୍ୟକ୍ତିମାନେ ଅବିଭକ୍ତ କଳାହାଣ୍ଡିରେ ଏବେ ବଞ୍ଚିଛନ୍ତି ସେମାନେ ସମ୍ମାନର ସହ ରାଧାନାଥ ବାବୁଙ୍କ ନାମ ନିଅନ୍ତି । କଳାହାଣ୍ଡିର ଯେଉଁ ଦୁର୍ଗମ ଅଞ୍ଚଳକୁ ସରକାରୀ ସାହାଯ୍ୟ ଯାଇପାରୁନଥିଲା ସେଠାରେ ରାଧାନାଥ ବାବୁ ତାଙ୍କର ସ୍ୱେଚ୍ଛାସେବୀମାନଙ୍କୁ ନେଇ ପହଞ୍ଚିଯାଉଥିଲେ ଏବଂ ଭୋକିଲାଙ୍କ ମୁହଁରେ ଆହାର ଦେଉଥିଲେ । ଏପରିକି ସରକାରୀ ସାହାଯ୍ୟକାରୀ ଦଳକୁ ରିଲିଫ ବଣ୍ଟନ ସଂପର୍କରେ ଦିଗଦର୍ଶନ ଦେଉଥିଲେ । କେନ୍ଦ୍ରସରକାରଙ୍କ ଠାରୁ

ସାହାଯ୍ୟ ନଆସିବା ପର୍ଯ୍ୟନ୍ତ ପ୍ରାୟ ଦୁଇମାସ କାଳ ଏହି ସାହାଯ୍ୟ କାର୍ଯ୍ୟ ଚାଲିଥିଲା । ଏହି ସମୟରେ ରାଧାନାଥ ବାବୁ କଳାହାଣ୍ଡିର ମରୁଡି କଥା 'ସମାଜ' କାଗଜରେ ଛାପୁଥିଲେ । ରାଜ୍ୟ ଏବଂ କେନ୍ଦ୍ର ସରକାରଙ୍କୁ ସଚେତନ କରାଉଥିଲେ ଏବଂ ଏଥି ସହିତ ମରୁଡି ପରିସ୍ଥିତିର ମୁକାବିଲା କିପରି କରାଯାଇପାରିବ ତାହାର ସ୍ଥାୟୀ ସମାଧାନ ନିମନ୍ତେ ପ୍ରସ୍ତାବମାନ 'ସମାଜ' ମାଧ୍ୟମରେ ସରକାରଙ୍କୁ ଦେଉଥିଲେ । ୟୁନିସେଫରୁ ସାହାଯ୍ୟ ପାଇଁ ଏହାର ମୁଖ୍ୟଙ୍କ ନିକଟକୁ ପତ୍ର ଲେଖୁଥିଲେ ଏବଂ ସାହାଯ୍ୟ ନିମନ୍ତେ ଓଡିଶା ତଥା ଦେଶର ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଅନୁରୋଧ କରି ମଧ୍ୟ ପତ୍ର ଲେଖୁଥିଲେ । ରାଧାନାଥ ବାବୁ ଯେଉଁମାନଙ୍କ ନିକଟକୁ ପତ୍ର ଲେଖୁଥିଲେ ସେମାନେ ସାହାଯ୍ୟ ପଠାଇବା ସହିତ ଅନ୍ୟ ଅନୁଷ୍ଠାନମାନଙ୍କୁ ମଧ୍ୟ ସାହାଯ୍ୟ ପଠାଇବା ନିମନ୍ତେ ଅନୁରୋଧ କରୁଥିଲେ । ରାଧାନାଥ ବାବୁଙ୍କର ଏହି ଉଦ୍ୟମ ବେଶ ସଫଳ ହୋଇଥିଲା ।

ସଂପ୍ରତି ଓଡିଶାର ରତ୍ନଗିରି, ଲଳିତଗିରି,ଧଉଳିଗିରି ଠାରେ ବୌଦ୍ଧ କଳାକୃତିର ଯେଉଁସବୁ ଗୌରବକୁ ଆବିଷ୍କାର କରାଯାଇଛି ତାହା ପଛରେ ମଧ୍ୟ ରାଧାନାଥ ବାବୁଙ୍କର ପ୍ରଚ୍ଛନ୍ନ ଅବଦାନ ରହିଛି । ମନ୍ତ୍ରୀ ଥିବା ସମୟରେ ଏବଂ ମନ୍ତ୍ରୀ ପଦରୁ ଯିବାପରେ ମଧ୍ୟ ସେ ଓଡିଶାରେ ବୌଦ୍ଧ କଳାକୃତିର ବିକାଶ ନିମନ୍ତେ କେନ୍ଦ୍ରସରକାରଙ୍କ ଠାରେ ଓଡିଶାର ଦାବି ଉପସ୍ଥାପନ କରିଥିଲେ । ତାଙ୍କରି ଉଦ୍ୟମ ଫଳରେ ଆଜି ଏହି ସବୁ ସ୍ଥାନ ଅନ୍ତର୍ଜାତୀୟ ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଇଛି । ତାଙ୍କରି ଉଦ୍ୟମ ଫଳରେ ବ୍ରହ୍ମପୁରର ଚନ୍ଦ୍ରଗିରି ଠାରେ ତିବ୍ବତୀୟ ଶରଣାର୍ଥୀମାନଙ୍କର ଏକ ସହର ଗଢି ଉଠିଛି । ସେମାନଙ୍କର ଆର୍ଥିକ ବିକାଶ କିପରି କରାଯାଇପାରିବ ସେଥିନିମନ୍ତେ ସେ ଅନେକ ଗୁଡିଏ ଯୋଜନା ସେତେବେଳେ କାର୍ଯ୍ୟକାରୀ କରାଇଥିଲେ । ଦଲାଇଲାମାଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରି ଶରଣାର୍ଥୀମାନଙ୍କର ଆର୍ଥିକ ବିକାଶ କରାଯିବା ଉପରେ ତାଙ୍କ ସହିତ ଆଲୋଚନା କରିଥିଲେ ।

କେନ୍ଦ୍ର ଏବଂ ରାଜ୍ୟ ସରକାରଙ୍କ ସହିତ ଆଲୋଚନା କରି ତିବ୍ବତୀୟ ଶରଣାର୍ଥୀଙ୍କ ନିମନ୍ତେ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା ମଧ୍ୟ ସେ କରିଯାଇଛନ୍ତି । ଜାପାନ ସରକାରଙ୍କ ସହିତ ଆଲୋଚନା କରି ଜାପାନ ସହାୟତାରେ ଧଉଳିଗିରି ଠାରେ ଏକ ବୌଦ୍ଧ ସ୍ତୁପ ଏବଂ ବିହାର ପ୍ରତିଷ୍ଠା କରିବାରେ ରାଧାନାଥ ବାବୁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । କଟକର ବିଦ୍ୟାଧରପୁର ଠାରେ ଆଜି ଯେଉଁ ଧାନ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ହୋଇଛି ତାହାର ପ୍ରମୁଖ ବିନ୍ଧାଣି ମଧ୍ୟ ବାବୁଜୀ । ସେ ଓଡିଶାର ମନ୍ତ୍ରୀ ଥିବା ବେଳେ କୃଷି,ଜଙ୍ଗଲ ଏବଂ ପଶୁ ସଂପଦର ବିକାଶ ଉପରେ ଗୁରୁତ୍ୱ ଦେଇଥିଲେ । ତାଙ୍କରି ଉଦ୍ୟମ ଫଳରେ ଭୁବନେଶ୍ୱରରେ କୃଷି ବିଶ୍ୱ ବିଦ୍ୟାଳୟ ଏବଂ ପଶୁ ଚିକିତ୍ସା ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା ହୋଇପାରିଥିଲା । ରାଧାନାଥ ବାବୁଙ୍କ ଏକନିଷ୍ଠ ଉଦ୍ୟମ ଫଳରେ ଭୁବନେଶ୍ୱର ନିକଟସ୍ଥ ପଟିଆଠାରେ ଏକ ବିଶାଳ ପ୍ରାଣୀ ଉଦ୍ୟାନ ନିର୍ମାଣ କରାଗଲା । ସେ ଏହାର ନାମକରଣ କରି ନନ୍ଦନକାନନ ରଖିଥିଲେ ।

ଏସବୁ ଦାୟିତ୍ୱ ନିର୍ବାହ କରୁଥିବା ବେଳେ ସେ 'ସମାଜ'ଏବଂ କଟକକୁ ଭୁଲି ନଥିଲେ । ତାଙ୍କର ସବୁ କାମ ମଧ୍ୟରେ 'ସମାଜ'ର ସୁରକ୍ଷା ଏବଂ ବିକାଶ ମୁଖ୍ୟ କାର୍ଯ୍ୟଥିଲା । 'ସମାଜ' ତାଙ୍କ ପାଇଁ କେବଳ ଏକ ସଂବାଦପତ୍ର ନଥିଲା । ଏହାକୁ  ସେ ନିଜର ମା ଏବଂ ପରିଚୟ ଭାବେ ଗ୍ରହଣ କରିଥିଲେ ।  ଓଡିଶାର ଇତିହାସକୁ ବାବୁଜୀଙ୍କର ଆଉ ଏକ ପ୍ରମୁଖ ଅବଦାନ ହେଉଛି  'ଦି ୟୁନିଭର୍ସ' । ଏହାରି ଜରିଆରେ ସେ ଓଡିଶାର ସଂସ୍କୃତିକୁ ବିଶ୍ୱ ଦରବାରରେ ପହଞ୍ଚାଇବା ସହିତ  ବିଭିନ୍ନ ଦେଶର ସଂସ୍କୃତିକୁ ଓଡିଶାର ମାଟିକୁ ଟାଣି ଆଣିଥିଲେ । ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଥିଲେ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ । ଦୁଇଜଣ ଅନ୍ତର୍ଜାତୀୟ ଖ୍ୟାତିସଂପନ୍ନ ଐତିହାସିକ ଶ୍ରୀ ବାସମ୍ ଏବଂ ହରମାନ କୁଲକେଙ୍କୁ ଓଡିଶା ଆଣିବାରେ ଏବଂ ସେମାନଙ୍କ ମାଧ୍ୟମରେ ମହିମା ଧର୍ମ ଓ ଜଗନ୍ନାଥ ତତ୍ତ୍ୱକୁ ବିଶ୍ୱ ଦରବାରରେ ଉପସ୍ଥାପନ କରାଇବାରେ ରାଧାନାଥ ବାବୁଙ୍କ ଭୂମିକା ଅତ୍ୟନ୍ତ

ଗୁରୁତ୍ୱପୂର୍ଣ୍ଣ ଥିଲା। ଓଡିଶା ମାଟିରେ ବହୁବିଧ ସଂସ୍କୃତିର ସମନ୍ୱୟ ତାଙ୍କରି ଉଦ୍ୟମ ଯୋଗୁ ହୋଇପାରିଥିଲା । ପ୍ରାୟତଃ ପ୍ରତି ମାସରେ କଟକର ୟୁନିଭର୍ସିଠାରେ କୌଣସି ନା କୌଣସି ଏକ ରାଷ୍ଟ୍ରର ରାଷ୍ଟ୍ରଦୂତ, କନସଲ ଜେନେରାଲଙ୍କ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥିଲା । ତେଣୁ ପ୍ରତିମାସରେ 'ସମାଜ'ରେ ସେମାନଙ୍କ ସମ୍ମାନାର୍ଥେ ଭୋଜିର ଆୟୋଜନ ହେଉଥିଲା । କେବଳ ସେତିକି ନୁହେଁ ସେହି ଅତିଥିମାନଙ୍କୁ ପୁରୀ,କୋଣାର୍କ ବୁଲାଇବା, ଓଡିଶାର ତାରକସୀ କାର୍ଯ୍ୟ ଦେଖାଇବା ଆଦି କାର୍ଯ୍ୟ ମଧ୍ୟ କରାଯାଉଥିଲା। ବହୁ ସମୟରେ ସେମାନଙ୍କ ଗାଇଡ୍ ଭାବେ କାର୍ଯ୍ୟ କରିବାର ସୁଯୋଗ ମତେ ମିଳିଥିଲା । ତେଣୁ କେବଳ ଓଡିଶାର କଳା ଓ ସଂସ୍କୃତି ନୁହେଁ 'ସମାଜ'କୁ ମଧ୍ୟ ସେ ଆନ୍ତର୍ଜାତୀୟ ସ୍ତରକୁ ନେଇଯାଇଥିଲେ ।

ଓଡିଶୀ ନୃତ୍ୟ ଏବଂ ସଂଗୀତ ଯେତେବେଳେ ଆର୍ଥିକ ସଂକଟ ଯୋଗୁ ଜାତୀୟ ସ୍ତରରେ ହେଉଥିବା ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇନପାରି ମୃତ୍ୟୁ ସହିତ ସଂଗ୍ରାମ କରୁଥିଲା ଠିକ୍ ସେତିକି ବେଳେ ବାବୁଲାଲ ଯୋଷୀ କଟକରେ କଳାବିକାଶ କେନ୍ଦ୍ରର ପ୍ରତିଷ୍ଠା କରି ଓଡିଶୀ ସଂଗୀତ ଏବଂ ନୃତ୍ୟର ପ୍ରସାର ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ । ଏଥିପାଇଁ ସେ ରାଧାନାଥ ବାବୁଙ୍କ ସହଯୋଗ ଲୋଡିଥିଲେ। ରାଧାନାଥ ବାବୁଙ୍କ ଉଦ୍ୟମ ଫଳରେ କଳାବିକାଶ କେନ୍ଦ୍ର ନିମନ୍ତେ ଜମି ଯୋଗାଡ ହୋଇପାରିଲା ଏବଂ ଆର୍ଥିକ ସହାୟତା ମଧ୍ୟ ମିଳିଲା । ରାଧାନାଥ ବାବୁଙ୍କର କଟକ ନିମନ୍ତେ ଆଉ ଏକ ଅବଦାନ ହେଉଛି ଉର୍ଦ୍ଦୁ ପାଠାଗାର । ବକ୍ସି ବଜାରରେ 'ସମାଜ'ର ଯେଉଁ ବଳକା ଜାଗା ଖଣ୍ଡେ ଥିଲା ତାହାକୁ ସେ ଉର୍ଦ୍ଦୁ ପାଠାଗାର ନିମନ୍ତେ ଦାନ କରିଦେଇଥିଲେ । ଏବେ ଖବର ପ୍ରକାଶ ପାଇଛି ଯେ ଏହି ପାଠାଗାରଟି ପାଞ୍ଚବର୍ଷ ହେଲା ବନ୍ଦ ରହିଛି । ଆମ ରାଜ୍ୟରେ ପୁସ୍ତକ ପଠନର ଆଦର ନଥିବାରୁ ବହୁ ପାଠାଗାର ଅତି ଦୟନୀୟ ଅବସ୍ଥା ମଧ୍ୟ ଦେଇ ଗତି କରୁଛନ୍ତି । ଏଥି ସହିତ ହିନ୍ଦ ସେବକ ସମାଜର କାର୍ଯ୍ୟାଳୟ ନିମନ୍ତେ 'ସମାଜ'ରୁ ଆଉ

ଖଣ୍ଡେ ଜମି ମଧ୍ୟ ଦାନ କରିଦେଇଥିଲେ । କେବଳ ସେତିକି ନୁହେଁ ମୁସଲମାନ ଭାଇ ଭଉଣୀଙ୍କର ତାଙ୍କ ଉପରେ ଅଗାଧ ଆସ୍ଥା ଥିବା କଥା ସେହି ସଂପ୍ରଦାୟର ଲୋକମାନଙ୍କ ଠାରୁ ଏହି ଲେଖକ ଶୁଣିଛି । ବାବୁଜୀଙ୍କର ଜାତି,ଧର୍ମ,ବର୍ଣ୍ଣ ଉପରେ ଆଦୌ ବିଶ୍ୱାସ ନଥିଲା ।  ସେ କେବଳ ଗୋଟିଏ କଥା ଜାଣିଥିଲେ ମାନବ ସେବା । ରେଡକ୍ରସର ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିବା ସମୟରେ ଲୋକମାନେ କିପରି ସହଜରେ ଏବଂ ସୁବିଧାରେ ରକ୍ତ ଠିକଣା ସମୟରେ ପାଇପାରିବେ ତାହାର ବ୍ୟବସ୍ଥା ସେ କରିଥିଲେ । ତାଙ୍କ ସମୟରେ ରେଡକ୍ରସର ବୈଠକ ଠିକ୍ ସମୟରେ ବସୁଥିଲା । ଏହି ସଂଗଠନ ବିରୋଧରେ ପ୍ରାୟତଃ କୌଣସି ଅଭିଯୋଗ ବାବୁଜୀ ଥିବା ବେଳେ ଶୁଣାଯାଉନଥିଲା । ସ୍କାଉଟ ଗାଇଡର ଅଧ୍ୟକ୍ଷ ଥିବା ବେଳେ ପିଲାମାନଙ୍କୁ ସେ ସେବା ଏବଂ ସାହସିକ କାର୍ଯ୍ୟ କରିବା ଲାଗି ସବୁବେଳେ ପ୍ରୋତ୍ସାହିତ କରୁଥିଲେ । କୃଷି ଏବଂ ପଶୁ ବିଶ୍ୱ ବିଦ୍ୟାଳୟର ପ୍ରୋଚାନସେଲର ଦାୟିତ୍ୱରେ ଥିବା ବେଳେ ଏହାର ବିକାଶ ନିମନ୍ତେ ସେ ଅନେକ ଗୁଡିଏ ଐତିହାସିକ ପଦକ୍ଷେପ ଗ୍ରହଣ କରିଥିଲେ । ବିଶେଷକରି ଗବେଷଣା କାର୍ଯ୍ୟରେ ଯେପରି ବାଧା ସୃଷ୍ଟି ନହେବ ସେଥି ନିମନ୍ତେ ପର୍ଯ୍ୟାପ୍ତ ଆର୍ଥିକ ବ୍ୟବସ୍ଥା କରିବା ଲାଗି ସରକାରଙ୍କ ଠାରେ ସେ ଦାବି ଉପସ୍ଥାପନ କରୁଥିଲେ ଏବଂ ତାହାକୁ କାର୍ଯ୍ୟକାରୀ ନକରିବା ପର୍ଯ୍ୟନ୍ତ ବସୁନଥିଲେ । ଏହାବାଦ ରାଧାନାଥ ବାବୁ ପ୍ରାୟ ତିରିଶରୁ ଅଧିକ ପ୍ରତିଷ୍ଠାନର ସଭାପତି, ଅଧ୍ୟକ୍ଷ,ସଂପାଦକ ଏବଂ କୋଷାଧ୍ୟକ୍ଷ ଥିଲେ । ଭୁବନେଶ୍ୱର କିମ୍ବା କଟକରେ ଯଦି କୌଣସି ରାଜ୍ୟସ୍ତରୀୟ,ଜାତୀୟ ବା ଅନ୍ତର୍ଜାତୀୟ ସ୍ତରର ସମ୍ମିଳନୀ ଅନୁଷ୍ଠିତ ହେଉଥିଲା ତେବେ ରାଧାନାଥ ବାବୁଙ୍କୁ ତାହାର ମୁଖ୍ୟ ପୃଷ୍ଠପୋଷକ କରାଯାଉଥିଲା । ଏହିସବୁ ସଭାରେ ପ୍ରାୟତଃ ସେ ଅଧ୍ୟକ୍ଷତା କରୁଥିଲେ । ଅଧ୍ୟକ୍ଷ ଭାବେ ସେ ଯେଉଁ ଲିଖିତ ଇଂରାଜୀ ଭାଷଣ ପ୍ରସ୍ତୁତ କରି ସମ୍ମିଳନୀରେ ପାଠ କରୁଥିଲେ ତାହାର ତୁଳନା ନାହିଁ । ମୁଁ 'ସମାଜ'ରେ ଥିବା ସମୟରେ ସେଥିମଧ୍ୟରୁ କେତେକ ଭାଷଣର ଓଡିଆ ଅନୁବାଦ କରିଛି ଏବଂ ତାହା

'ସମାଜ'ରେ ପ୍ରକାଶିତ ହୋଇଛି । ବର୍ତ୍ତମାନର 'ସମାଜ' କର୍ତ୍ତୃପକ୍ଷ ଯଦି ସେହି ଭାଷଣ ଗୁଡିକୁ ଏକାଠି କରି ଛାପିବାର ବ୍ୟବସ୍ଥା କରିପାରନ୍ତେ ତେବେ ଉତ୍ତରପିଢି ତାଙ୍କ ସଂପର୍କରେ ଅନେକ କିଛି ଜାଣିବାର ସୁଯୋଗ ପାଆନ୍ତେ ।

ଏସବୁ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ସେ ପ୍ରାୟ ୧୫ରୁ ଅଧିକ ବର୍ଷ ଲୋକସେବକ ମଣ୍ଡଳର ରାଷ୍ଟ୍ରୀୟ ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିଥିଲେ । ଏଥି ସହିତ ସେ ମଧ୍ୟ ଓଡିଶା ଶାଖାର ସଭାପତି ଥିଲେ । ରାଧାନାଥ ବାବୁ ଲୋକସେବକ ମଣ୍ଡଳର ଅଧ୍ୟକ୍ଷ ଦାୟିତ୍ୱ ନେବାପରେ ଏହାର କାର୍ଯ୍ୟକ୍ରମକୁ ଅଧିକ ସକ୍ରିୟ କରିବା ସହିତ ଏହାର ସେବା କାର୍ଯ୍ୟର ପରିସରକୁ ବ୍ୟାପକ କରିଥିଲେ । ଓଡିଶା ବାହାରେ ଯେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ହେଉଥିଲା ସେଠାକୁ ସେ 'ସମାଜ' ପକ୍ଷରୁ ରିଲିଫ ଯୋଗାଇବାର ବ୍ୟବସ୍ଥା କରୁଥିଲେ । ଏଥିରେ ଉଭୟ ଲୋକସେବକ ମଣ୍ଡଳ ଏବଂ 'ସମାଜ'ର ନାମ ରହୁଥିଲା । ଲାତୁର ଠାରୁ ଆରମ୍ଭ କରି ଉତ୍ତରାଖଣ୍ଡରେ ଯେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେଇଛି ସେଠାକୁ ଓଡିଶାର ସ୍ୱେଚ୍ଛା ସେବକମାନେ ରାଧାନାଥ ବାବୁଙ୍କ ନିର୍ଦ୍ଦେଶରେ 'ସମାଜ'ର ରିଲିଫ ନେଇ ପହଞ୍ଚି ଯାଇଛନ୍ତି । ଲୋକମାନଙ୍କୁ ସାହାଯ୍ୟ କରିବାରେ ରାଧାନାଥ ବାବୁଙ୍କର ଆଗ୍ରହ ଏବଂ ନିଷ୍ଠାକୁ ତାଙ୍କର କଟୁ ସମାଲୋଚକମାନେ ମଧ୍ୟ ପ୍ରଶଂସା କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଲୋକେ ବିପଦରେ ପଡିଲେ ସରକାରଙ୍କ ଦ୍ୱାରସ୍ଥ ନହୋଇ ପ୍ରଥମେ 'ସମାଜ' ଅଫିସକୁ ଆସି ରାଧାନାଥ ବାବୁଙ୍କୁ ନିଜର ଦୁଃଖକଷ୍ଟ ଜଣାନ୍ତି ଏବଂ ସାହାଯ୍ୟ ନେଇ ଯାଆନ୍ତି ।

ରାଧାନାଥ ବାବୁଙ୍କ ବ୍ୟକ୍ତିତ୍ୱ ଏପରି ଆକର୍ଷଣୀୟ ଥିଲା ଯେ ଅନ୍ୟ ରାଜ୍ୟ ଏବଂ ବିଦେଶରୁ କେହି ବିଶିଷ୍ଟ ବ୍ୟକ୍ତି ଓଡିଶା ଆସିଲେ ତାଙ୍କର କାର୍ଯ୍ୟକ୍ରମରେ 'ସମାଜ' ସଂପାଦକ ରାଧାନାଥ ବାବୁଙ୍କୁ ସାକ୍ଷାତ କରିବାର କାର୍ଯ୍ୟଟି ନିଶ୍ଚୟ ରହୁଥିଲା । ସେମାନଙ୍କ ମନୋଭାବରୁ ଜଣାପଡୁଥିଲା ଯେ

ଓଡିଶା ଆସି ରାଧାନାଥ ବାବୁଙ୍କୁ ସାକ୍ଷାତ ନକରି ଚାଲିଗଲେ ଗସ୍ତ ସତେ ଯେପରି ଅପୂର୍ଣ୍ଣ ରହିଯିବ । ସେ ଶୃଙ୍ଗେରୀ କିମ୍ବା ଯୋଷୀ ମଠର ଶଂକରାଚାର୍ଯ୍ୟ ହୁଅନ୍ତୁ କିମ୍ବା ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ହୁଅନ୍ତୁ, ହରମାନ କୁଲକେ ହୁଅନ୍ତୁ ବା ଅନ୍ୟ ଯେକୌଣସି ରାଷ୍ଟ୍ରର ରାଷ୍ଟ୍ରଦୂତ ହୁଅନ୍ତୁ ଓଡିଶା ଆସିଲେ ନିଶ୍ଚୟ ରାଧାନାଥ ବାବୁଙ୍କୁ ସାକ୍ଷାତ କରୁଥିଲେ ଏବଂ ଶୁଭେଚ୍ଛା ଜଣାଉଥିଲେ । ସାଧୁ ସନ୍ଥ, ଶବର,ଶିଳ୍ପପତି ବା କଳାକାର ଯିଏବି ଓଡିଶା ଆସିଲେ କଟକର ବକ୍ସି ବଜାର ଆସି ରାଧାନାଥ ବାବୁଙ୍କୁ ଦେଖା କରୁଥିଲେ । ନୂଆ ମନ୍ତ୍ରୀ ଏବଂ ବିଧାୟକମାନେ ରାଧାନାଥ ବାବୁଙ୍କୁ ଆସି ସାକ୍ଷାତ କରି ତାଙ୍କର ଆଶୀର୍ବାଦ ନେବା ଏକ ସାଧାରଣ ଘଟଣା ଥିଲା । ବିଶିଷ୍ଟ ବ୍ୟକ୍ତିମାନେ 'ସମାଜ'କୁ ଆସିଲେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ମଧ୍ୟାହ୍ନ ଭୋଜନ କିମ୍ବା ରାତ୍ରି ଭୋଜନର ବ୍ୟବସ୍ଥା କରାଯାଉଥିଲା । ଯଦି କେହି ପ୍ରାତଃ ସମୟରେ ଆସୁଥିଲେ ତେବେ ତାଙ୍କ ପାଇଁ ପ୍ରାତଃ ଭୋଜନର ବ୍ୟବସ୍ଥା କରାଯାଉଥିଲା । 'ସମାଜ'ରେ ଅତିଥିମାନଙ୍କ ନିମନ୍ତେ ଚା ଭୋଜିର ଆୟୋଜନ ଏକ ସାଧାରଣ ଘଟଣା ଥିଲା । ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଉଛି ରାଧାନାଥ ବାବୁ ସ୍ୱତନ୍ତ୍ର ଅତିଥିଙ୍କୁ ଭୋଜନ ନିମନ୍ତେ ଯେଉଁ ଦିନ ନିମନ୍ତ୍ରଣ କରୁଥିଲେ ସେହି ଅତିଥି ଆସିବାକୁ ଏକ ଘଣ୍ଟା ଥିବ ସେ ନିଜେ ଆସି ପୋର୍ଟିକୋରେ ତାଙ୍କୁ ସ୍ୱାଗତ କରିବାଲାଗି ବସିଯାଇଥିବେ । ସ୍ୱତନ୍ତ୍ର ଅତିଥିଙ୍କ ସହିତ ସେ କଟକ ସହରର ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ମଧ୍ୟ ତାଙ୍କ ସହିତ ଭୋଜନ କରିବାଲାଗି ଡାକୁଥିଲେ । ଏଥିରେ କଟକରେ ଥିବା ବିଶିଷ୍ଟ ଡାକ୍ତର, ଓକିଲ, ପ୍ରଫେସର, ସରକାରୀ ଅଫିସର ଏବଂ ସମାଜସେବୀମାନେ ଯୋଗଦେଉଥିଲେ ।

ତେବେ ଏହି ଭୋଜିର ଆୟୋଜନ କେବଳ ଯେ ସ୍ୱତନ୍ତ୍ର ଅତିଥିଙ୍କର ସମ୍ମାନାର୍ଥେ କରାଯାଉଥିଲା ତାହା ନୁହେଁ । ସମାଜର ଅନ୍ୟ ଯେଉଁ ବିଭିନ୍ନ ବର୍ଗର ଅତିଥିମାନେ ଯୋଗ ଦେଉଥିଲେ ସେମାନଙ୍କ ସହିତ ସେ ରାଜ୍ୟର

ଏବଂ ଦେଶର ସାଂପ୍ରତିକ ବ୍ୟାପାର ସଂପର୍କରେ ଆଲୋଚନା କରି ସେମାନଙ୍କୁଠାରୁ ବହୁ ତଥ୍ୟ ସଂଗ୍ରହ କରିନେଉଥିଲେ । ତାହାପରେ ସେହି ତଥ୍ୟଗୁଡିକୁ ଏକାଠି କରି ସେ ସଂପାଦକୀୟ କିମ୍ବା ସଂବାଦ ଭାବେ ପ୍ରକାଶ କରୁଥିଲେ । ରାଧାନାଥ ବାବୁଙ୍କ ସଂବାଦ ସଂଗ୍ରହ ଧାରାକୁ ବୁଝିବା ସହଜ ନଥିଲା । ଅଫିସର-ମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ଚପରାସି ପର୍ଯ୍ୟନ୍ତ ସମସ୍ତଙ୍କ ସହିତ କୌଣସି ନା କୌଣସି ମାର୍ଗରେ ସେ ସଂପର୍କ ସ୍ଥାପନ କରିଦେଉଥିଲେ । କାହା ପାଖରୁ କେଉଁ ସଂବାଦ ମିଳିବ ତାହା ସେ ଭଲଭାବେ ଜାଣିଥିଲେ । ସରକାରୀ ସ୍ତରରେ କର୍ମକର୍ତ୍ତାମାନଙ୍କ ସହିତ ତାଙ୍କର ଏପରି ନିବିଡ ସଂପର୍କ ରହିଥିଲା ଯେ ବିଭାଗୀୟ ଫାଇଲ ତାଙ୍କ ପାଖକୁ ଚାଲି ଆସୁଥିଲା । ଏହା ଯିଏ ଦେଖିଛି ବା ତାଙ୍କ ନିର୍ଦ୍ଦେଶରେ କାମ କରିଛି ସେ କେବଳ ଏହା ଜାଣିପାରିବେ । ଅନ୍ୟମାନଙ୍କ ନିମନ୍ତେ ଏହା ଅସଂଭବ ମନେ ହେବ । ଏହା କେହି ବିଶ୍ୱାସ କରି ପାରିବେ ଯେ ଦେଶର ପ୍ରଧାନମନ୍ତ୍ରୀ ଓଡିଶାର ମୁଖ୍ୟମନ୍ତ୍ରୀଙ୍କ ସହିତ କଥା ହେବା ବେଳେ ରାଧାନାଥ ବାବୁ ତାହାକୁ ଶୁଣୁଥିଲେ ? ଟେଲିଫୋନ ବିଭାଗର କର୍ମକର୍ତ୍ତାମାନଙ୍କ ସହିତ ତାଙ୍କର ନିବିଡ଼ ସଂପର୍କ ଥିବାରୁ ଏହା ସଂଭବ ହୋଇପାରୁଥିଲା । ସେହି କଥାକୁ ଆଧାର କରି ରାଧାନାଥ ବାବୁ ଆଠ କଲମର 'ଝିଟିପିଟି' କୁହେ ମାଧ୍ୟମରେ 'ସମାଜ'ରେ ପ୍ରକାଶ କରୁଥିଲେ । ତାଙ୍କର ଜନସଂପର୍କ ଏପରି ବ୍ୟାପକ ଥିଲା ଯେ ଓଡିଶାର ଯେକୌଣସି ଅଞ୍ଚଳରେ ଯଦି କିଛି ଘଟଣା ଘଟୁଥିଲା ତେବେ ସରକାର ସେହି ଘଟଣା ଜାଣିବା ପୂର୍ବରୁ ସେ ତତ୍‌କ୍ଷଣାତ ସେହି ଖବର ପାଇଯାଉଥିଲେ । ଖବର ପାଇବା ମାତ୍ରେ ସେ ବାର୍ତ୍ତା ସଂପାଦକଙ୍କୁ ଡାକି ସଂବାଦ ସଂପର୍କରେ ପଚାରି ବୁଝୁଥିଲେ ଏବଂ ଯଦି 'ସମାଜ'ର ରିପୋର୍ଟର ସେହି ଘଟଣା ସଂପର୍କରେ କିଛି ଜଣାଇ ନଥାଆନ୍ତି ତେବେ ତାଙ୍କ ଉପରେ ଗାଳି ପଡୁଥିଲା ଏବଂ ତୁରନ୍ତ ସବିଶେଷ ଘଟଣା ସଂଗ୍ରହ କରି 'ସମାଜ'ରେ ଛାପିଦେବା ନିମନ୍ତେ ସେ ନିଜେ ଆଦେଶ ଦେଉଥିଲେ ।

ଏପରି ମଧ୍ୟ ଘଟିଛି ଯେ ଯଦି କୌଣସି ଏକ ଘଟଣା ସଂପର୍କରେ ଅନ୍ୟ ଗଣମାଧ୍ୟମମାନଙ୍କରେ ପ୍ରକାଶ ପାଏ ତେବେ ସରକାର ଏବଂ ଜନସାଧାରଣ ସେଥିପ୍ରତି ଧ୍ୟାନ ଦେଇନଥାଆନ୍ତି । 'ସମାଜ'ରେ କିନ୍ତୁ ଯଦି ସେହି ଘଟଣାଟି ପ୍ରକାଶ ପାଇଯାଏ ତେବେ ଲୋକେ ତାହାକୁ ସତ୍ୟ ବୋଲି ଗ୍ରହଣ କରନ୍ତି ଏବଂ ସରକାରୀ ସ୍ତରରେ ତୁରନ୍ତ ପ୍ରତିକାର କାର୍ଯ୍ୟକ୍ରମ ଆରମ୍ଭ ହୋଇଯାଏ ।  ଏବେ ରାଜ୍ୟର ସବୁ ସଂବାଦପତ୍ରରେ ଯଦି ସରକାରଙ୍କ ଅବହେଳା ପ୍ରକାଶ ପାଏ ତେବେବି ସରକାରୀ କଳର ନିଦ ଭାଙ୍ଗେ ନାହିଁ। ସ୍ପେଶାଲ ବ୍ରାଞ୍ଚ ସହିତ ରାଧାନାଥ ବାବୁଙ୍କର ସଂପର୍କ ଅତି ନିବିଡ ଥିଲା । ଏହି ବ୍ରାଞ୍ଚଠାରୁ ସେ ବହୁ ଗୁପ୍ତ ତଥା ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହ କରି ପାରୁଥିଲେ । ସ୍ପେଶାଲ ବ୍ରାଞ୍ଚର ଅଫିସର ଏବଂ କର୍ମଚାରୀଙ୍କ ନିମନ୍ତେ ରାଧାନାଥ ବାବୁଙ୍କ ପକ୍ଷରୁ ସ୍ୱତନ୍ତ୍ର ଭାବେ ଭୋଜିର ବ୍ୟବସ୍ଥା କରାଯାଉଥିଲା ।

'ସମାଜ'ରେ ତାଙ୍କ ସମୟରେ କର୍ମଚାରୀମାନେ ବୋନସ ଏବଂ ଦରମା ଫିଟମେଣ୍ଟକୁ କେନ୍ଦ୍ରକରି ଥରେ ଦୁଇଥର ଧର୍ମଘଟ କରିଛନ୍ତି । ତେବେ 'ସମାଜ' ପ୍ରକାଶନରେ ବାଧା ସୃଷ୍ଟି କରାଯାଇନାହିଁ । ଧର୍ମଘଟ କରିବା ପୂର୍ବରୁ କର୍ମଚାରୀମାନେ ଏହା ଜାଣନ୍ତି ଯେ ବାବୁଜୀ ସେମାନଙ୍କ ଦାବି ଗ୍ରହଣ କରିନେବେ । କେବଳ ଲୋକ ଦେଖାଣିଆ ଧର୍ମଘଟ ହେଉଥିଲା । କର୍ମଚାରୀମାନେ ସିନା ଧର୍ମଘଟ କରିବେ କିନ୍ତୁ ସେମାନଙ୍କ ସଭାପତି ଯାଇ ବାବୁଜୀଙ୍କ ସହିତ ଆଲୋଚନା କରି ସମାଧାନର ପନ୍ଥା ବାହାର କରିବେ । ସଭାପତି ଥିଲେ ରାଜ କିଶୋର ରାମ । ଶ୍ରୀ ରାମ ବାବୁଜୀଙ୍କର ଏକାନ୍ତ ଅନୁଗତ ଏବଂ ଘନିଷ୍ଠ ଥିଲେ । ତାଙ୍କ କଥାକୁ ସେ ଆଦୌ କାଟି ପାରୁନଥିଲେ । ତେଣୁ କର୍ମଚାରୀମାନେ ନିଜର ଦାବି ହାସଲରେ କୌଣସି ସମସ୍ୟା ନଥିଲା । ରାଧାନାଥ ବାବୁଙ୍କର ନିଜସ୍ୱ ଗୁପ୍ତଚର ଜାଲ ଅତି ବ୍ୟାପକ । ଯଦି କୌଣସି କର୍ମଚାରୀ ତାଙ୍କ ବିରୋଧରେ କୌଣସି ଠାରେ କିଛି ଆଲୋଚନା କରୁଥିଲେ ତେବେ ତତ୍‌କ୍ଷଣାତ୍ ସେ ତାହା

ଜାଣିପାରୁଥିଲେ । ତେଣୁ କର୍ମଚାରୀମାନେ ପ୍ରାୟତଃ ତାଙ୍କୁ ସମାଲୋଚନା କଲାଭଳି କୌଣସି ଆଲୋଚନା କରୁନଥିଲେ ।

ଏହି ଆଲୋଚନା କଲାବେଳେ ରାଧାନାଥ ବାବୁଙ୍କର ଆଉ ଏକ ବ୍ୟକ୍ତିତ୍ୱ ପ୍ରତି ମଧ୍ୟ ଧ୍ୟାନ ଦେବାକୁ ପଡିବ । ତାହା ହେଲା ବହୁ ସମୟରେ ସେ ପକ୍ଷପାତ କରୁଥିଲେ । ଦକ୍ଷ କର୍ମଚାରୀଙ୍କ ଠାରୁ ସେ କାମ ଆଦାୟ କରିନେଉଥିଲେ; କିନ୍ତୁ ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଆର୍ଥିକ ବ୍ୟବସ୍ଥା କରୁନଥିଲେ । ଏପରିକି ସେହି ଦକ୍ଷ ବ୍ୟକ୍ତିଙ୍କ ଚାକିରୀ ସ୍ଥାୟୀ କରିବାରେ ସେ ହେଳା କରୁଥିଲେ । ତାଙ୍କ କୋଟେରୀରେ ତିନି ଚାରି ଜଣ ଥିଲେ ଯେଉଁମାନଙ୍କ କଥାରେ ତଥା ପରାମର୍ଶରେ ସେ ପ୍ରଭାବିତ ହୋଇ ଯୋଗ୍ୟ ତଥା ଦକ୍ଷ କର୍ମଚାରୀଙ୍କ ପ୍ରତି ଅନ୍ୟାୟ କରିଛନ୍ତି । ଏସଂପର୍କରେ ଆଲୋଚନା ବେଳେ ରାଧାନାଥ ବାବୁଙ୍କର ଜନୈକ ଘନିଷ୍ଠ ସହଯୋଗୀ କହିଥିଲେ ଯେ ଯୋଗ୍ୟ ତଥା ଦକ୍ଷ କର୍ମଚାରୀଙ୍କ ସ୍ଥିରତା ଉପରେ ସେ ଭରସା କରୁନଥିଲେ । ତାଙ୍କର ଆଶଂକା ଥିଲା ଯେ ଏପରି ଧରଣର ବ୍ୟକ୍ତିମାନେ ବେଶିଦିନ ସଂସ୍ଥାରେ ରହିବେ ନାହିଁ । ଏହା ହୁଏତ ତାଙ୍କର ବ୍ୟକ୍ତିଗତ ବିଚାରଧାରା ଏବଂ ଏହାର ପରିବର୍ତ୍ତନ ସଂଭବ ନଥିଲା । କାରଣ ସତୁରୀ ବର୍ଷ ହେଲା ଯେଉଁ ବିଚାରଧାରା ଉପରେ ସେ ବିଶ୍ୱାସ କରି ଚାଲିଛନ୍ତି ତାହାକୁ ତାଙ୍କଠାରୁ ଦୂର କରିବାକୁ ଯଦି କେହି ଉଦ୍ୟମ କରେ ତେବେ ତାହାକୁ ଚରମ ନିର୍ବୋଧତା କୁହାଯିବ ।

ରାଧାନାଥ ବାବୁଙ୍କର ସବୁଠାରୁ ବଡ଼ ଉଲ୍ଲେଖନୀୟ ଗୁଣ ହେଉଛି ତାଙ୍କର ପଠନ ଅଭ୍ୟାସ । ନିଜ ଜ୍ଞାନର ଦିଗବଳୟକୁ ପ୍ରସାରିତ କରିବା ନିମନ୍ତେ ପ୍ରତିଦିନ ସେ ଖୁବ କମରେ ୯/୧୦ ଘଣ୍ଟା ନିରବଚ୍ଛିନ୍ନ ଭାବେ ଅଧ୍ୟୟନ କରୁଥିଲେ । ପୁସ୍ତକଟି ଅଧ୍ୟୟନ କଲାବେଳେ ସେଥିରେ ଥିବା ଯେଉଁ ବିଷୟକୁ ସେ ଗୁରୁତ୍ୱପୂର୍ଣ୍ଣ ଭାବୁଥିଲେ ତାହା ତଳେ ପେନସିଲ୍‌ରେ ଗାର ପକାଉଥିଲେ ଏବଂ ପୃଷ୍ଠା ମନେ ରଖୁଥିଲେ । ସଂପାଦକୀୟ କିମ୍ବା

ଭାଷଣ ପ୍ରସ୍ତୁତ କଲାବେଳେ ସେ ସେହି ସବୁ ବିଷୟକୁ ସ୍ଥାନ ଦେଉଥିଲେ। ଏପରିକି ସେ ସଂପାଦକୀୟ କିମ୍ୱା ଲିଖିତ ଭାଷଣ ଡାକୁଥିବା ବେଳେ ସେହି ସବୁ ପୃଷ୍ଠା କଥା କହିଦେଉଥିଲେ । ଭାଷଣ ଦେବା ବେଳେ ସେ ପରିସଂଖ୍ୟାନ ଏବଂ ତଥ୍ୟ ପ୍ରଦାନ କରି ଏହାକୁ ବୁଦ୍ଧିମନ୍ତ କରୁଥିଲେ। ଏହି କାରଣ ଯୋଗୁ ତାଙ୍କ ଭାଷଣ ଏବଂ ଲେଖା ଉପରେ ସରକାରଙ୍କ ଠାରୁ ଆରମ୍ଭ କରି ସାଧାରଣ ନାଗରିକ ପର୍ଯ୍ୟନ୍ତ ସମସ୍ତଙ୍କର ଗଭୀର ଆସ୍ଥା ଥିଲା। ଏପରିକି ରାଜ୍ୟ ସରକାରଙ୍କ ବଜେଟ ଉପସ୍ଥାପନ ପରେ କେଉଁ ସବୁ ଦ୍ରବ୍ୟର ଦାମ କମିଛି ବା ବୃଦ୍ଧି ପାଇଛି ତାହା ଜାଣିବାକୁ ଲୋକେ 'ସମାଜ'ର ସଂପାଦକୀୟ କିମ୍ୱା ଝିଟିପିଟି କୁହେକୁ ଅପେକ୍ଷା କରୁଥିଲେ । 'ସମାଜ'ରେ ପ୍ରକାଶ ପାଉଥିବା ଲେଖା ଗୁଡିକ ଏପରି ନିର୍ଭୁଲ ଥିଲା ଯେ ବିଦ୍ୟାଳୟରେ ଶିକ୍ଷକମାନେ ସମାଜରୁ ଶ୍ରୁତଲିଖନ ଛାତ୍ରମାନଙ୍କୁ ଡାକୁଥିଲେ । କେବଳ ସେତିକି ନୁହେଁ ସେତେବେଳେ ସମଗ୍ର 'ସମାଜ'କୁ ପାଠ କଲେ ଜଣେ ଭାବିବ ଯେ ଜଣେ ବ୍ୟକ୍ତି ଏହାକୁ ଲେଖିଛନ୍ତି । ଏପରି ଲେଖାର ସମନ୍ୱୟ ପ୍ରାୟତଃ ଅନ୍ୟ କୌଣସି ସଂବାଦପତ୍ରରେ ଦେଖିବାକୁ ମିଳିବ ନାହିଁ। ଏବେ ଅବଶ୍ୟ ତାହା ହେଉନାହିଁ । ଏପରି ହେବା ମଧ୍ୟ ସଂଭବ ନୁହେଁ । କାରଣ ସେତେବେଳେ 'ସମାଜ'ର ସଂପାଦକୀୟ ବିଭାଗରେ ଯେଉଁମାନେ କାମ କରିବାକୁ ଆସୁଥିଲେ ସେମାନେ ଶିଖିବାପାଇଁ ଆସୁଥିଲେ । 'ସମାଜ'ର ଧାରାରେ ସେମାନେ ନିଜକୁ ଉତ୍ସର୍ଗ କରିଦେଉଥିଲେ । 'ସମାଜ'ରେ ପ୍ରକାଶ ପାଉଥିବା ଲେଖାର ପ୍ରତିଶବ୍ଦ ଏବଂ ତାହାର ପ୍ରୟୋଗ ଉପରେ ରାଧାନାଥ ବାବୁ ବେଶ ସତର୍କ ଥିଲେ । ସଂପାଦକୀୟ ବିଭାଗରେ କାର୍ଯ୍ୟ କରୁଥିବା କର୍ମଚାରୀ ଯଦି ଲେଖା ପରିବେଷଣରେ ଭୁଲ କରୁଥିଲେ ବା ହିନ୍ଦି ଶବ୍ଦର ପ୍ରୟୋଗ କରୁଥିଲେ ତେବେ ତାହାକୁ ସେ କ୍ଷମା ଦେଉନଥିଲେ । ଏବେ ସଂବାଦପତ୍ରମାନଙ୍କରେ ଯେପରି ଲେଖାମାନ ପ୍ରକାଶ ପାଉଛି ସେଥିରେ ଓଡିଆ ଭାଷାର ମୌଳିକତା ରହୁନାହିଁ। ଶବ୍ଦର ବ୍ୟବହାର ସମ୍ମାନଜନକ

ଭାବେ କରାଯାଉନାହିଁ । ଆଜି ଓଡିଆ ଭାଷା ଯଦି ବିପଦର ସମ୍ମୁଖୀନ ହୋଇଛି ତେବେ ଏହି ସଂବାଦପତ୍ରମାନେ ମୁଖ୍ୟତଃ ଏଥିପାଇଁ ଦାୟୀ । ଲୋକେ କଣ ପାଠ କରିବାକୁ ଚାହୁଁଛନ୍ତି ତାହା ଉପରେ ସଂବାଦପତ୍ରମାନେ ଗୁରୁତ୍ୱ ଦେଉଛନ୍ତି । ଏହା ନକରି ସେମାନେ ଯଦି ଲୋକେ କଣ ପାଠ କରିବା ଉଚିତ ତାହା ଉପରେ ଧ୍ୟାନ ଦିଅନ୍ତେ ତେବେ ସମାଜ ଏବଂ ଭାଷା ଉଭୟର ମଙ୍ଗଳ ହୁଅନ୍ତା । ଓଡିଆ ଭାଷା ରକ୍ଷା ପାଇଯାଆନ୍ତା । ନଚେତ ଏହି ସଂବାଦ ପତ୍ରମାନଙ୍କର ଭାଷା ଉପରେ ହେଉଥିବା ବ୍ୟଭିଚାର ଯୋଗୁ ଓଡିଆ ଭାଷାର ମୃତ୍ୟୁ ହୋଇଯିବ । ସଂବାଦପତ୍ରର ମାଲିକମାନେ ଅର୍ଥ ଉପାର୍ଜନ ନିମନ୍ତେ ସେଥିପ୍ରତି ପ୍ରାଧାନ୍ୟ ଦେଉନାହାଁନ୍ତି । ପାଠକ ନିମନ୍ତେ କଣ ଉଚିତ ତାହା ଉପରେ ରାଧାନାଥ ବାବୁ ଗୁରୁତ୍ୱ ଦେଉଥିଲେ । କାରଣ ତାହା ଥିଲା ସଂପାଦକ ଏବଂ ତାଙ୍କ ସଂପାଦନାରେ ପ୍ରକାଶ ପାଉଥିବା ସଂବାଦପତ୍ରର ଦାୟିତ୍ୱ ।

ଗୋପବନ୍ଧୁ ଦାସଙ୍କ ମୃତ୍ୟୁପରେ ୧୯୨୮ ମସିହାରୁ ୧୯୯୮ ମସିହା ପର୍ଯ୍ୟନ୍ତ 'ସମାଜ'କୁ ଆଗେଇ ନେବାରେ ରାଧାନାଥ ବାବୁ ବହୁ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି । ନିଜର ଉପସ୍ଥିତ ବୁଦ୍ଧି ଏବଂ ସଦିଚ୍ଛୁମାନଙ୍କ ସାହାଯ୍ୟରେ ସେ ଏହି ସବୁ ପ୍ରତିବନ୍ଧକକୁ ଦୂରକରି 'ସମାଜ' କୁ ଏକ ଶକ୍ତିଶାଳୀ ସଂବାଦପତ୍ର ଭାବେ ଉଠେଇ ପାରିଛନ୍ତି । ପ୍ରାରମ୍ଭରେ ଗୋପବନ୍ଧୁ ଦାସଙ୍କର କିଛି ବନ୍ଧୁ 'ସମାଜ'କୁ ନିଜ ନିୟନ୍ତ୍ରଣକୁ ନେଇଯିବାକୁ ଉଦ୍ୟମ କରିଥିଲେ । ଏପରିକି ଏଥିନିମନ୍ତେ ସେମାନେ ବ୍ରିଟିଶ ସରକାରଙ୍କ ସମର୍ଥନ ମଧ୍ୟ ଲାଭ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ 'ସମାଜ' ଜନସଂପର୍କ ସ୍ଥାପନ ଏବଂ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାପାଇଁ ଜନସାଧାରଣଙ୍କୁ ପ୍ରୋତ୍ସାହିତ କରୁଥିବାରୁ ଏହାକୁ ବନ୍ଦ କରିଦେବାଲାଗି ବ୍ରିଟିଶ ସରକାର ବହୁବିଧ ଉଦ୍ୟମ କରିଛନ୍ତି । ପରାଧୀନ ଭାରତରେ 'ସମାଜ'କୁ ବଞ୍ଚାଇ ରଖିବା ନିମନ୍ତେ ରାଧାନାଥ ବାବୁ ବହୁ କଷ୍ଟ ସ୍ୱୀକାର କରିଛନ୍ତି ।

ସ୍ୱାଧୀନତାପରେ ସରକାରରେ ଯୋଗ ଦେବାକୁ ପଡିବାରୁ ସେ 'ସମାଜ' ସଂପାଦନା ତ୍ୟାଗ କରିଛନ୍ତି; କିନ୍ତୁ ସମାଜ ଉପରେ ଥିବା ନିୟନ୍ତ୍ରଣକୁ ତ୍ୟାଗ କରିନଥିଲେ । ସେ ଏବଂ ପଣ୍ଡିତ ଲିଙ୍ଗରାଜ ମିଶ୍ର ବିଭିନ୍ନ ସମୟରେ 'ସମାଜ'ର ସଂପାଦକ ଦାୟିତ୍ୱ ଏବଂ ସରକାରରେ ମନ୍ତ୍ରୀ ପଦ ସଂଭାଳିଛନ୍ତି । ଗୋଟିଏ ସମୟରେ ଲିଙ୍ଗରାଜ ବାବୁ ସଂପାଦକ ଏବଂ ରାଧାନାଥ ବାବୁ ମ୍ୟାନେଜର ଥିଲେ । ଲିଙ୍ଗରାଜ ବାବୁ ମନ୍ତ୍ରୀ ହେବାପରେ ରାଧାନାଥ ବାବୁ ସଂପାଦକ ଦାୟିତ୍ୱ ନେଲେ । ପୁଣି ଲିଙ୍ଗରାଜ ବାବୁ ସଂପାଦକ ହେବା ବେଳେ ରାଧାନାଥ ବାବୁ ମନ୍ତ୍ରୀ ହେଉଥିଲେ । ଏହାପରେ ରାଧାନାଥ ବାବୁ ମନ୍ତ୍ରୀ ଥିବା ବେଳେ କିଛି ଦିନପାଇଁ ଶ୍ରୀହର୍ଷ ମିଶ୍ର ସଂପାଦକ ହୋଇଥିଲେ । ଏହା ଖୁବ୍ କମ୍ ଦିନ ପାଇଁ ହୋଇଥିଲା । ଏହାପରେ ଷାଠିଏ ଦଶନ୍ଧିର ପ୍ରାୟତଃ ପ୍ରାରମ୍ଭରୁ ରାଧାନାଥ ବାବୁ 'ସମାଜ' ସଂପାଦକ ଦାୟିତ୍ୱ ତୁଲାଇଲେ । ସେହିଦିନଠାରୁ ୧୯୯୮ ମସିହା ଫେବୃୟାରୀ ୧୧ ତାରିଖ ପର୍ଯ୍ୟନ୍ତ ସେ 'ସମାଜ'ର ସଂପାଦକ ଥିଲେ । ଏହିଦିନ ସେ ଶରୀର ତ୍ୟାଗ କରିଥିଲେ । ଷାଠିଏ ଦଶନ୍ଧିର ପ୍ରାରମ୍ଭରେ ରାଧାନାଥ ବାବୁ ସଂପାଦକ ଥିବା ସମୟରେ ବିଜୁ ପଟ୍ଟନାୟକ ଓଡିଶାର ମୁଖ୍ୟମନ୍ତ୍ରୀ ଥିଲେ । ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସହିତ ଘନିଷ୍ଠ ବ୍ୟକ୍ତିଗତ ସଂପର୍କ ଥିବାରୁ ଓଡିଶାପାଇଁ ସେ ଅନେକ ଗୁଡିଏ ପ୍ରକଳ୍ପ ରାଜ୍ୟପାଇଁ ଆଣିବାରେ ସଫଳ ହୋଇଥିଲେ । କିନ୍ତୁ ତାଙ୍କ ସରକାରଙ୍କ ଶାସନଧାରାକୁ ରାଧାନାଥ ବାବୁ ପସନ୍ଦ କରୁନଥିଲେ । ବିକାଶ ମୂଳକ କାର୍ଯ୍ୟରେ ଯେଉଁ ଅର୍ଥ ବ୍ୟୟ ହେଉଥିଲା ତାହା ଠିକ୍ ଭାବେ ହେଉନଥିଲା । ଏପରିକି କେଉଁଠି ସବୁ ଅର୍ଥର ହେରଫେର ହୋଇଛି ତାହାକୁ ପ୍ରମାଣ ସହ ରାଧାନାଥ ବାବୁ 'ସମାଜ'ରେ ଛାପିଲେ । ସରକାର ଚଳାଇବାପାଇଁ ବିଜୁବାବୁ ଗୁଣ୍ଡାମାନଙ୍କ ସାହାଯ୍ୟ ନେଉଥିବା ଘଟଣା ସଂପର୍କରେ ମଧ୍ୟ ରାଧାନାଥ ବାବୁ 'ସମାଜ'ରେ ଲେଖିଲେ । ବିଜୁ ବାବୁ ଏଥିରେ ଉତ୍କ୍ଷିପ୍ତ ହୋଇ 'ସମାଜ'କୁ ବୁଡାଇଦେବାପାଇଁ ବିପୁଳ ଅର୍ଥବ୍ୟୟ କରି 'କଳିଙ୍ଗ' ସଂବାଦପତ୍ର ପ୍ରକାଶ କଲେ । 'ସମାଜ'ର କିଛି ଦକ୍ଷ

ସାଂବାଦିକ ଏବଂ କର୍ମଚାରୀଙ୍କୁ ଅଧିକ ଦରମା ଦେଇ ସେ 'କଳିଙ୍ଗ'କୁ ନେଇଗଲେ । ସେହି ସମୟରେ ବିଜୁବାବୁ ଯୁବ ପିଢିର ଆଦର୍ଶ ଥିବାରୁ କିଛି ଯୁବକ ତାଙ୍କର ସଂବାଦପତ୍ରରେ ସାଂବାଦିକ ଭାବେ ଯୋଗଦେଲେ । 'ସମାଜ'ର ପରିସ୍ଥିତି ଦୋହଲି ଯାଇଥିଲା । 'କଳିଙ୍ଗ'ପରେପରେ ମୁଖ୍ୟମନ୍ତ୍ରୀ ଥିବା ବେଳେ ବୀରେନ ମିତ୍ର କିଛି ବର୍ଷ ପରେ 'ଜନଶକ୍ତି' ସଂବାଦପତ୍ର ପ୍ରକାଶ କଲେ । କିନ୍ତୁ ଈର୍ଷା ଏବଂ ବ୍ୟକ୍ତିଗତ ସ୍ୱାର୍ଥରକ୍ଷାର ଭିତ୍ତିଭୂମି ଉପରେ ଏହି ସଂପାଦପତ୍ରଦ୍ୱୟର ପ୍ରତିଷ୍ଠା ହୋଇଥିବାରୁ ସମୟର ପବନରେ ମାତ୍ର କେଇଟା ବର୍ଷ ମଧ୍ୟରେ ଲୋପ ପାଇଗଲେ। ବିଜୁ-ବୀରେନଙ୍କ ସରକାର ଓଡିଶାର ଲୋକଚକ୍ଷୁରେ ଦୁର୍ନୀତି ନିମନ୍ତେ ନିନ୍ଦିତ ହୋଇଗଲେ । ଏମାନଙ୍କ ଦୁର୍ନୀତିକୁ ଲୋକଲୋଚନକୁ ଆଣିବାରେ ରାଧାନାଥ ବାବୁଙ୍କ ସଂପାଦନାରେ 'ସମାଜ' ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । କାମରାଜ ଯୋଜନା ଆରମ୍ଭ ବେଳେ ବିଜୁ ପଟ୍ଟନାୟକ ଓଡିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେହି ସମୟରେ ପାରାଦ୍ୱୀପ ବନ୍ଦରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥାଏ । ଏଥିରେ ବ୍ୟାପକ ଆର୍ଥିକ ଦୁର୍ନୀତି ଘଟୁଥିବା ସଂପର୍କରେ 'ସମାଜ'ରେ ରାଧାନାଥ ବାବୁ ପ୍ରକାଶ କରୁଥିଲେ । ନେହେରୁଙ୍କ ସହିତ ଘନିଷ୍ଠତା ଥିବାରୁ ବିଜୁବାବୁ ନିଧଡକ ହୋଇ ବସିଥିଲେ ଏବଂ ଆର୍ଥିକ ହେରଫେର ରୋକିବା ନିମନ୍ତେ ସେପରି କିଛି ପଦକ୍ଷେପ ଗ୍ରହଣ କଲେ ନାହିଁ । ଜାତୀୟ ସ୍ତରରେ ସଂବାଦପତ୍ରମାନଙ୍କରେ ବିଜୁ ବାବୁ ଏବଂ ପଞ୍ଜାବ ମୁଖ୍ୟମନ୍ତ୍ରୀ ପ୍ରକାଶ ସିଂହ କାଇରନଙ୍କ ସଂପର୍କରେ ବହୁ ଅଭିଯୋଗମାନ ପ୍ରକାଶ ପାଉଥିଲା । ଏହି ସମୟରେ ଲାଲବାହାଦୂର ଶାସ୍ତ୍ରୀ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସ୍ୱରାଷ୍ଟ୍ର ମନ୍ତ୍ରୀ ଥିଲେ । ସେ ନେହେରୁଙ୍କୁ କହିଥିଲେ ଯେ ଯଦି ବିଜୁ ପଟ୍ଟନାୟକ ଆଉ କିଛିଦିନ ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ରହିବେ ତେବେ ଓଡିଶାରେ କଂଗ୍ରେସ ଶେଷ ହୋଇଯିବ । କାମରାଜ ଯୋଜନାକୁ କାର୍ଯ୍ୟକାରୀ କରିବା ଘେନି ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ମାନସିକ ଦ୍ୱନ୍ଦ୍ୱରେ ଥିବା

ବେଳେ ବିଜୁ ପଟ୍ଟନାୟକ ବାହାଦୁରୀ ଦେଖାଇ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଦେଲେ । ତାହାକୁ ତୁରନ୍ତ ଗ୍ରହଣ କରିନେବାପାଇଁ ରାଜ୍ୟପାଳଙ୍କୁ ନେହେରୁ ପରାମର୍ଶ ଦେଇଥିଲେ । ତେବେ ବିଜୁବାବୁ ନିଜର ପ୍ରତିନିଧି ଭାବେ ବୀରେନ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ ଆସନରେ ବସାଇଥିଲେ । ରାଧାନାଥବାବୁ କିନ୍ତୁ ସେମାନଙ୍କ ଦୁର୍ନୀତି ସଂପର୍କରେ ଅନବରତ ଲେଖିଚାଲିଥିଲେ । ଯାହା ଫଳରେ ବିଜୁବାବୁଙ୍କ ସମୟରେ ହୋଇଥିବା ଦୁର୍ନୀତି ସଂପର୍କରେ ତଦନ୍ତ ନିମନ୍ତେ ଖାନ୍ନା କମିଶନ ବସିଲା । ଏହା ବାଦ ସିବିଆଇ ତଦନ୍ତ ମଧ୍ୟ ହୋଇଥିଲା । ବୀରେନ ମିତ୍ରଙ୍କ ସରକାରରେ ମଦ ଏବଂ ଗୁଣ୍ଡାମୀ ବୃଦ୍ଧି ପାଇବାରୁ 'ସମାଜ'ରେ ବରାବର ଏହି ଶାସନ ବିରୋଧରେ ଖବରମାନ ପ୍ରକାଶ ପାଇବାରେ ଲାଗିଲା । ସରକାର ବିରୋଧରେ ୧୯୬୪ ମସିହାରେ ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଗଲା । ଏହି ଆନ୍ଦୋଳନ ପଛରେ ରାଧାନାଥ ବାବୁଙ୍କର ପ୍ରଚ୍ଛନ୍ନ ହାତ ରହିଥିଲା । ଛାତ୍ର ଆନ୍ଦୋଳନକୁ ତୀବ୍ର କରାଇବାରେ 'ସମାଜ' ସେହି ସମୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଏହି ସମୟରେ ଆର୍ଥିକ ଦୃଷ୍ଟିକୋଣରୁ 'ସମାଜ' ଦୁର୍ବଳ ହୋଇଯାଇଥିଲା, କିନ୍ତୁ ଜନସାଧାରଣଙ୍କ ଆସ୍ଥା 'ସମାଜ' ଉପରେ ଅତୁଟ ଥିଲା । ରାଜ୍ୟ ସରକାର ଅସହଯୋଗ କରି 'ସମାଜ'କୁ ଦେଉଥିବା ବିଜ୍ଞାପନ ହ୍ରାସ କରିଦେଇଥିଲେ । 'ସମାଜ'ର ପରିସ୍ଥିତି ଏପରି ହୋଇଗଲା ଯେ କର୍ମଚାରୀମାନଙ୍କୁ କିପରି ଦରମା ଦିଆଯିବ ତାହା ଚିନ୍ତାର ବିଷୟ ଥିଲା । ରାଧାନାଥ ବାବୁ ଏଥିପାଇଁ ପତ୍ନୀଙ୍କ ଅଳଙ୍କାର ବନ୍ଧା ପକାଇଥିଲେ । କିଛି ମାରଓ୍ୱାଡି ବନ୍ଧୁ ମଧ୍ୟ ତାଙ୍କୁ ଆର୍ଥିକ ସହାୟତା ଦେଇଥିଲେ । ନ୍ୟୁଜପ୍ରିଣ୍ଟ ବାକି ବୃଦ୍ଧି ପାଉଥିଲା । ତେବେ ସେହି ସମୟରେ ଯିଏ 'ସମାଜ'କୁ ନ୍ୟୁଜପ୍ରିଣ୍ଟ ଦେଉଥିଲେ ସେ ଦିନେବି ରାଧାନାଥ ବାବୁଙ୍କୁ ବାକି ସଂପର୍କରେ କହିନଥିଲେ । ଏହି ସମୟରେ 'ସମାଜ' ମ୍ୟାନେଜର ଫକିର ଚରଣ ଦାସ ଭାଇ ଲକ୍ଷ୍ମଣ ଭଳି ରାଧାନାଥ ବାବୁଙ୍କ ପାଖରେ ଠିଆ ହୋଇଥିଲେ । ତାଙ୍କର ବୁଦ୍ଧି

ବଳରେ 'ସମାଜ'କୁ ଆର୍ଥିକ ସଂକଟରୁ ରକ୍ଷା କରିବାରେ ରାଧାନାଥ ବାବୁଙ୍କୁ ସେ ସାହାଯ୍ୟ କରିଥିଲେ । ରାଧାନାଥ ବାବୁ ଯାହା କହୁଥିଲେ ଫକିର ବାବୁ ତାହାକୁ ମନା ନକରି ହଁ ମାରି ତାଙ୍କ ନିକଟରୁ ଚାଲିଆସୁଥିଲେ । ତେବେ ଯାହା କରାଯିବା କଥା ତାହା ସେ କରୁଥିଲେ । ଫକିର ବାବୁ କଣ କଲେ ତାହା ଉପରେ ରାଧାନାଥ ବାବୁ କେବେବି ପ୍ରଶ୍ନ କରୁନଥିଲେ । ରାଧାନାଥ ବାବୁ ଏବଂ ଫକିରବାବୁଙ୍କ ଯୋଡି 'ସମାଜ' ନିମନ୍ତେ ମଣି-କାଞ୍ଚନର ସଂଯୋଗ ହୋଇଥିଲା । କଣ କଲେ ରାଧାନାଥ ବାବୁ କିଛି କହିବେ ନାହିଁ ତାହା କେବଳ ଫକିର ବାବୁ ଜାଣିଥିଲେ । ଅନେକ ସମୟରେ କର୍ମଚାରୀମାନେ ଦେଖନ୍ତି ଯେ ବାବୁଜୀ ତ କରିବାପାଇଁ କହିଦେଲେ, ଫକିର ବାବୁ କାହିଁକି କିଛି କରୁନାହାଁନ୍ତି । ଫକିର ବାବୁଙ୍କୁ ଏସଂପର୍କରେ କେହିବି ପଚାରିବାକୁ ସାହସ କରୁନଥିଲେ । ରାଧାନାଥ ବାବୁ ଯଦି କାହାକୁ ସମାଜରେ ନିଯୁକ୍ତି ଦେବାକୁ କହିଥିବେ ତେବେ ଫକିର ବାବୁ ତାହାକୁ ଗଡାଇ ଚାଲିଥିବେ । କାହାକୁ ବହିଷ୍କାର କରିବାକୁ ଯଦି ରାଧାନାଥ ବାବୁ କହିଥିବେ ତେବେ ଫକିର ବାବୁ ସେହି କର୍ମଚାରୀଙ୍କୁ ବାହାର କରୁନଥିବେ । ରାଧାନାଥ ବାବୁ ଯେତିକି କ୍ରୋଧୀ ଥିଲେ ଫକିର ବାବୁ ବରଫ ଭଳି ସେତିକି ଥଣ୍ଡା ଥିଲେ । ରାଧାନାଥ ବାବୁ ବିବ୍ରତ ହୋଇପଡୁଥିଲେ ଫକିର ବାବୁ ସ୍ଥିତପ୍ରଜ୍ଞ ହୋଇ ସମସ୍ୟାର ସମ୍ମୁଖୀନ ହେଉଥିଲେ ଏବଂ ତାହାର ସମାଧାନ ନିମନ୍ତେ ନିଜେ ସୂତ୍ର ବାହାର କରୁଥିଲେ କିମ୍ବା ସୂତ୍ର କେଉଁଠି ଅଛି ତାହା ବାବୁଜୀଙ୍କୁ ଦେଖାଇଦେଉଥିଲେ । ଫକିର ବାବୁଙ୍କ ଦେହାନ୍ତ ପରେ ବାବୁଜୀ ପୂରା ଭାଙ୍ଗି ପଡିଥିଲେ ।

୧୯୬୫ରୁ୧୯୮୦ ମଧ୍ୟରେ ଓଡିଶାର ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ର ବହୁ ଉତ୍ଥାନ ପତନ ମଧ୍ୟ ଦେଇ ଗତି କରିଛି । ବିଭିନ୍ନ ସମୟରେ 'ସମାଜ'ର କଠୋର ସମାଲୋଚନାରେ ସରକାରମାନେ କ୍ଷୁବ୍ଧ ହୋଇଛନ୍ତି । ବିଶେଷ କରି ଜରୁରୀ ପରିସ୍ଥିତି ପୂର୍ବରୁ ନନ୍ଦିନୀ ଶତପଥୀଙ୍କ

ସରକାର ସମୟରେ ଓଡିଶାର ରାଜନୈତିକ କ୍ଷେତ୍ରରେ ଗୁଣ୍ଡାରାଜର ଦୃଢ଼ିକରଣକୁ ରାଧାନାଥ ବାବୁ ପ୍ରବଳ ବିରୋଧ କରି ଲେଖାମାନ ପ୍ରକାଶ କରିଥିଲେ । ସେତେବେଳେ କୁହାଯାଉଥିଲା ବିଜୁ ପଟ୍ଟନାୟକ ଗୁଣ୍ଡାମାନଙ୍କ ସହାୟତାରେ ମୁଖ୍ୟମନ୍ତ୍ରୀ ହୋଇଥିଲେ ଏବଂ ନନ୍ଦିନୀ ଦେବୀ ଗୁଣ୍ଡାମାନଙ୍କର ରାଷ୍ଟ୍ରନୀତିକରଣ କଲେ । ନନ୍ଦିନୀ ଦେବୀ ସଭା ସମିତିରେ ଯୋଗଦେବାକୁ ଯିବାବେଳେ ଗୁଣ୍ଡାମାନେ ତାଙ୍କର ସୁରକ୍ଷା ଦାୟିତ୍ୱ ବହନ କରୁଥିଲେ । ଗୁଣ୍ଡା ରାଷ୍ଟ୍ରନୀତିକରଣ ସଂପର୍କରେ ଲୋକମାନେ ସଚେତନ ହେଉଥିବା ବେଳେ ହଠାତ୍ ଜରୁରୀ ପରିସ୍ଥିତି ଦେଶରେ ଜାରୀ ହୋଇଗଲା । ଯାହା ଫଳରେ ଉଭୟ ପୁଲିସ ଏବଂ ଗୁଣ୍ଡାମାନେ ରାଜ୍ୟର ରାଜନୈତିକ କ୍ଷେତ୍ରରେ ପ୍ରଭାବଶାଳୀ ହୋଇଗଲେ । ଓଡିଶାର ଯେଉଁ ରାଜନେତା ଏବଂ ସମାଜସେବୀମାନେ କଂଗ୍ରେସର ବିରୋଧ କଲେ ସେମାନଙ୍କୁ ରାତିଅଧିଆ ଗିରଫ କରାଯାଇ କାରାଗାରରେ ରଖାଗଲା । ଜରୁରୀ ପରିସ୍ଥିତି ସମୟରେ ନନ୍ଦିନୀ ଦେବୀଙ୍କ ସରକାର ଅତି ଅସହିଷ୍ଣୁ ହୋଇପଡିଥିଲା । ସାମାନ୍ୟ ବିରୋଧକୁ ସହ୍ୟ କରିବା ନନ୍ଦିନୀ ଦେବୀଙ୍କ ପକ୍ଷରେ ସଂଭବ ନଥିଲା । ରାଧାନାଥ ବାବୁଙ୍କ ବ୍ୟତୀତ ଆଉ ସବୁ ବରିଷ୍ଠ ନେତା ପ୍ରାୟତଃ ଗିରଫ ହୋଇଯାଇଥିଲେ । ରାଧାନାଥ ବାବୁଙ୍କ ନିର୍ଦ୍ଦେଶରେ 'ସମାଜ' ଜରୁରୀ ପରିସ୍ଥିତି ଉପରେ ପ୍ରାୟତଃ ନୀରବ ରହିଥିଲା । ଏଥିନିମନ୍ତେ ରାଧାନାଥ ବାବୁଙ୍କର ରାଜନୈତିକ ଏବଂ ସାଂବାଦିକତା କ୍ଷେତ୍ରରେ ଯେଉଁମାନେ ପ୍ରତିଦ୍ୱନ୍ଦ୍ୱୀ ଥିଲେ ସେମାନେ ତାଙ୍କୁ ସମାଲୋଚନାକଲେ । ରାଧାନାଥ ବାବୁ କିନ୍ତୁ ନିଜର ରାଜନୈତିକ ଆଦର୍ଶ ନିମନ୍ତେ କର୍ମଚାରୀମାନଙ୍କୁ ହଇରାଣ କରିବାକୁ ଚାହିଁନଥିଲେ । କାରଣ ସେ ଯଦି ସାମାନ୍ୟ ସକ୍ରିୟ ହୋଇଥାଆନ୍ତେ ତେବେ ସରକାର 'ସମାଜ' ବନ୍ଦ କରିଦେଇଥାଆନ୍ତା ଏବଂ ଶତାଧିକ କର୍ମଚାରୀଙ୍କ ପରିବାର ଘୋର ଆର୍ଥିକ ସଂକଟରେ ସମ୍ମୁଖୀନ ହୋଇଥାଆନ୍ତେ । ଜରୁରୀ ପରିସ୍ଥିତିର ରାଜନୈତିକ ଝଡ଼ ବେଳେ ରାଧାନାଥ ବାବୁ ଅଶ୍ୱତ୍ଥ ବୃକ୍ଷ ହୋଇଥିଲେ ମଧ୍ୟ ଦୁବ ଭଳି ଆଚରଣ କଲେ । ଏହା ତାଙ୍କର ଗଭୀର

ନୈତିକ ମୂଲ୍ୟବୋଧର ପରିଚୟ । ରାଧାନାଥ ବାବୁଙ୍କ ସଂପାଦନାରେ ପ୍ରକାଶିତ 'ସମାଜ' ଜରୁରୀ ପରିସ୍ଥିତି ବେଳେ ଏହାର ବିରୋଧ ନକରି ଅନ୍ୟାୟକୁ ବରଦାସ୍ତ କରିବାର କାରଣ ଥିଲା ଶତାଧିକ କର୍ମଚାରୀଙ୍କ ପରିବାରର ସ୍ୱାର୍ଥରକ୍ଷା । ତାଙ୍କୁ ବଦନାମ କରିବା ନିମନ୍ତେ ବିରୋଧୀମାନେ କିନ୍ତୁ ପ୍ରଚାର କଲେ ଯେ ସେ ଜେଲ ଯିବାର ଭୟଯୋଗୁ ନୀରବ ରହିଥିଲେ ।

ରାଧାନାଥ ବାବୁଙ୍କ ସଂପର୍କରେ ଆଲୋଚନା କଲାବେଳେ ଓଡିଶା ପ୍ରଦେଶ ଗଠନ ଏବଂ ଗଡଜାତ ଆନ୍ଦୋଳନରେ ତାଙ୍କର ଭୂମିକା ସଂପର୍କରେ ଆଲୋକପାତ କରାନଗଲେ ଆଲୋଚନାଟି ସଂପୂର୍ଣ୍ଣ ହୋଇପାରିବ ନାହିଁ । ରାଧାନାଥ ବାବୁ ତାଙ୍କର ଜୀବିକା ଆରମ୍ଭ କରିଥିଲେ ଚାଇଁବସାରୁ । ସେ ମାଟ୍ରିକରେ ପ୍ରଥମ ଶ୍ରେଣୀରେ ପାଶ କରିବାପରେ ଡାକ୍ତରୀ ପାଠ ପଢିବାପାଇଁ ଆବେଦନ କରିଥିଲେ । ମାତ୍ର, ସେଥିପାଇଁ ସାକ୍ଷାତ ପରୀକ୍ଷା ବେଳକୁ ତାଙ୍କୁ ମେଲେରିଆ ଜ୍ୱର ହୋଇଗଲା । ଯାହା ଫଳରେ ସେ ସାକ୍ଷାତ ପରୀକ୍ଷାରେ ଉପସ୍ଥିତ ହୋଇପାରିଲେ ନାହିଁ । ଏହା ବାଦ୍ ପରିବାରର ଆର୍ଥିକ ସ୍ଥିତି ଅତି ଦୁର୍ବଳ ଥିବାରୁ ଆଉ ଅଧିକ ଅଧ୍ୟୟନ ନକରି ସେ ଚାକିରୀ ସଂଧାନରେ ସଂବଲପୁରରେ ପହଞ୍ଚିଲେ । ସେଠାରେ ଏକ ଛାପାଖାନାରେ କିଛିମାସ କାମକଲାପରେ ତାଙ୍କୁ ବିହାର-ଓଡିଶା ସରକାରରେ ଜଙ୍ଗଲ ବିଭାଗରେ ଗୋଟିଏ ଚାକିରୀ ମିଳିଗଲା । ସେହି ସମୟରେ ଓଡିଶା ବିଖଣ୍ଡିତ ହୋଇଥାଏ । ଓଡିଶାର ଏକତ୍ରିକରଣ ନିମନ୍ତେ ମଧୁବାବୁ ଯେଉଁ ସଂଗ୍ରାମ ଆରମ୍ଭ କରିଥିଲେ ଗୋପବନ୍ଧୁ ସେତେବେଳେ ସେହି ଆନ୍ଦୋଳନର ନେତୃତ୍ୱ ନେଇଥାଆନ୍ତି । ସିଂହଭୂମିରେ ଓଡିଆ ଭାଷା ପ୍ରତି ବିପଦ ଦେଖାଦେଇଥିବାରୁ ଏହାର ସୁରକ୍ଷା ନିମନ୍ତେ ଗୋପବନ୍ଧୁଙ୍କ ଉଦ୍ୟମରେ ଏହି ଅଞ୍ଚଳରେ କିଛି ଓଡିଆ ମାଧ୍ୟମ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ଏହି ବିଦ୍ୟାଳୟରେ ଶିକ୍ଷାଦାନ ନିମନ୍ତେ ଏବଂ ପରିଚାଳନା କରିବାକୁ ଗୋପବନ୍ଧୁଙ୍କ ଡାକରାରେ କିଛି ସ୍ୱେଚ୍ଛାସେବୀ ଯୋଗଦେଇଥାଆନ୍ତି । ରାଧାନାଥ ବାବୁ କିନ୍ତୁ ଏହି ଡାକରାରେ ଆସିନଥିଲେ ।

ଚାଇଁବସାରେ ବନବିଭାଗରେ ରାଧାନାଥ ବାବୁ କାମ କରୁଥିବା ବେଳେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସିଂହଭୂମିରେ ଅବହେଳିତ ଓଡିଆଙ୍କ ଶିକ୍ଷା ଏବଂ ଓଡିଶା ସହିତ ଏହାର ମିଶ୍ରଣ ପାଇଁ ଗୋପବନ୍ଧୁ ବରାବର ଚାଇଁବସା ଆସୁଥିଲେ । ତାଙ୍କ ଲେଖାମାନ ଟାଇପ କରିବା ଓ ବିଦ୍ୟାଳୟ ପରିଚାଳନାକୁ ନେଇ ବିଭିନ୍ନ କାମରେ ତାଙ୍କୁ ରାଧାନାଥ ସାହାଯ୍ୟ କରୁଥିଲେ । ଏହି କାମ କରିବାର ଏକବର୍ଷ ମଧ୍ୟରେ ରାଧାନାଥଙ୍କ ଉପରେ  ଗୋପବନ୍ଧୁଙ୍କର ବହୁତ ଭଲ ଧାରଣା ହୋଇଗଲା । ଗୋପବନ୍ଧୁଙ୍କ ଡାଏରୀରେ ଏ ସଂପର୍କରେ ଉଲ୍ଲେଖ ଅଛି । ଏହି ସମୟରେ 'ସମାଜ' ସାପ୍ତାହିକୀ ଆରମ୍ଭ କରିବାକୁ ଗୋପବନ୍ଧୁ ସ୍ଥିର କରିଥାଆନ୍ତି । ଏହି କାମରେ ସାହାଯ୍ୟ କରିବାପାଇଁ ଚାକିରୀ ଛାଡି ସତ୍ୟବାଦୀ ଆସିବକି ବୋଲି ରାଧାନାଥଙ୍କୁ ଗୋପବନ୍ଧୁ ପଚାରିବାରୁ ସେ ହଁ ମାରିଦେଲେ । ଏଥିପାଇଁ ସେ ବାପାଙ୍କର ଅନୁମତି ନେଇନଥିଲେ କିମ୍ବା ପରିବାରର ଆର୍ଥିକ ଦୂରବସ୍ଥା ସଂପର୍କରେ ସାମାନ୍ୟ ଚିନ୍ତା ମଧ୍ୟ କରିନଥିଲେ । ସେ ଚାକିରୀ ଛାଡି ୧୯୧୮ ମସିହା ଅକ୍ଟୋବର ମାସରେ ସତ୍ୟବାଦୀ ଆସି 'ସମାଜ'ର ପ୍ରଥମ ଅଂକ ନିମନ୍ତେ କାମ ଆରମ୍ଭକଲେ । ଏହାପରେ 'ସମାଜ' ହିଁ ତାଙ୍କର ଜୀବନ ହୋଇଗଲା । ପରିବାର ଚଳାଇବା ଅପେକ୍ଷା ମାତୃଭୂମିର ସୁରକ୍ଷା ଡାକରା ତାଙ୍କୁ ପ୍ରଭାବିତ କଲା । ବାସ୍ ଏହା ପରେ ରାଧାନାଥ ବାବୁ ଆଉ ପରିବାର କଥା ଚିନ୍ତା କରିନାହାଁନ୍ତି । ସମାଜରେ କମ୍ପୋଜିଟରଠାରୁ ଆରମ୍ଭ କରି ସବୁ ବିଭାଗରେ ସେ କାମ କରିଛନ୍ତି । ଏପରିକି ଝାଡୁମାରିବା କାର୍ଯ୍ୟ ମଧ୍ୟ କରିଛନ୍ତି । କର୍ମଚାରୀମାନେ ଆସିବା ପୂର୍ବରୁ ମେଜ ଗୁଡିକୁ ପରିଷ୍କାର କରିଛନ୍ତି । ନିରଭିମାନ ଭାବେ ସବୁ କାମ ସେ କରିଛନ୍ତି । କୁହାଯାଏ 'ସମାଜ'ରେ ଏପରି କୌଣସି ବିଭାଗ ନଥିଲା ଯେଉଁଥିରେ କି ବାବୁଜୀ କାମ କରିନଥିଲେ । ତାଙ୍କର ଏହି ଦକ୍ଷତା ଏବଂ ଅଭିଜ୍ଞତା ଯୋଗୁ ପରବର୍ତ୍ତୀକାଳରେ ତାଙ୍କୁ କୌଣସି କର୍ମଚାରୀ ଠକିବା ସଂଭବ ନଥିଲା ।

## ବାବୁଜୀ ଓ 'ସମାଜ'

ଓଡିଶାର ପ୍ରଜାମଣ୍ଡଳ ଆନ୍ଦୋଳନରେ ସେ ସକ୍ରିୟ ଥିଲେ । ଏହି ଆନ୍ଦୋଳନ ସମୟରେ ସେ ନିଜର ଜନ୍ମ ମାଟି ଆଠଗଡରେ ଏକ ପ୍ରଜାତନ୍ତ୍ର ଶାସନ ପ୍ରତିଷ୍ଠା ନିମନ୍ତେ ଉଦ୍ୟମ କରି କିଛିମାତ୍ରାରେ ସଫଳ ହୋଇଥିଲେ । ତାଙ୍କର ସାନଭାଇ ବିଶ୍ୱନାଥ ରଥ ସେହି ସମୟରେ ଆଠଗଡର ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହି ଆନ୍ଦୋଳନ ବେଳେ ଆଠଗଡର ବହୁ ବିଦ୍ରୋହୀ ଆସି ରାଧାନାଥ ବାବୁଙ୍କ ପାଖରେ ରହୁଥିଲେ । ତାଳଚେର ଠାରେ ଅନୁଷ୍ଠିତ ପ୍ରଜାମେଳି ପ୍ରତି ମଧ୍ୟ ରାଧାନାଥ ବାବୁଙ୍କର ସମର୍ଥନ ଥିଲା । ସେଠାରେ ପବିତ୍ର ମୋହନ ପ୍ରଧାନ ପ୍ରଜାମେଳିର ପ୍ରମୁଖ ଭୂମିକା ଗ୍ରହଣ କରିଥିବା ବେଳେ ଦିବାକର ମିଶ୍ର ତାଙ୍କର ମୁଖ୍ୟ ସହଯୋଗୀ ଥିଲେ । ପରେ ଦିବାକର ବାବୁ 'ସମାଜ'ର ତାଳଚେର ପ୍ରତିନିଧି ଭାବେ କାର୍ଯ୍ୟ କରିଥିଲେ । ଏହାବାଦ 'ସମାଜ'କୁ ମାଧ୍ୟମ କରି ରାଧାନାଥ ବାବୁ ନିଜର ଲେଖା ଦ୍ୱାରା ଓଡିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥିବା ପ୍ରଜାଆନ୍ଦୋଳନକୁ ପ୍ରୋତ୍ସାହିତ କରୁଥିଲେ ।

୧୯୮୦ ମସିହାରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡିଶାରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହେବା ପରେ 'ସମାଜ' ଏବଂ ରାଧାନାଥ ବାବୁଙ୍କ ନିମନ୍ତେ ସଂକଟର ସମୟ ଆରମ୍ଭ ହୋଇଗଲା । ଏହି ସମୟକୁ ବାବୁଜୀଙ୍କୁ ୮୨ ବର୍ଷ ହୋଇଯାଇଥାଏ । କିନ୍ତୁ ସେ ବେଶ କର୍ମଠ ଥାଆନ୍ତି । ଜାନକୀ ବାବୁ ଓଡିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପୂର୍ବରୁ ରାଧାନାଥ ବାବୁଙ୍କୁ କିପରି ରାଜନୈତିକ କ୍ଷେତ୍ରରୁ ହଟାଇବେ ଏବଂ 'ସମାଜ'କୁ ଦୁର୍ବଳ କରିଦେବେ ସେହି ଯୋଜନା କରି ଆସିଥାଆନ୍ତି । ଜଣେ ସାଂବାଦିକ ଏବଂ ପୂର୍ବତନ ସଂପାଦକ ଭାବେ ରାଧାନାଥ ବାବୁଙ୍କ ଶକ୍ତି ସଂପର୍କରେ ସେ ବେଶ୍ ସଚେତନ ଥିଲେ । ବିଶେଷକରି ଜରୁରୀ ପରିସ୍ଥିତି ଉଠିଯିବା ପରେ ଓଡିଶାରୁ କଂଗ୍ରେସ ହଟାଇବା ନିମନ୍ତେ ଯେଉଁ ସଂଗ୍ରାମ ହୋଇଥିଲା ସେଥିରେ ରାଧାନାଥ ବାବୁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୭୭ ମସିହାରେ

ହୋଇଥିବା ରାଜ୍ୟ ବିଧାନସଭା ନିର୍ବାଚନରେ ସେ ଆଠଗଡ ଆସନରୁ ସ୍ୱାଧୀନ ପ୍ରାର୍ଥୀ ହେବାପାଇଁ ଇଚ୍ଛା କରିଥିଲେ । କାରଣ ସ୍ୱାଧୀନତା ପରଠାରୁ ରାଧାନାଥ ବାବୁ ଆଠଗଡ ଆସନରୁ ପ୍ରତିଦ୍ୱନ୍ଦିତା କରି ଆସୁଥିଲେ ଏବଂ ବିଜୟୀ ହେଉଥିଲେ । କେବଳ ୧୯୬୭ ମସିହାରେ ପବିତ୍ର ମୋହନ ପ୍ରଧାନ ଆଠଗଡରୁ ପ୍ରାର୍ଥୀ ହୋଇଥିଲେ ଏବଂ ତାହା ପୁଣି ରାଧାନାଥ ବାବୁଙ୍କ ସମର୍ଥନରେ । କାରଣ ପବିତ୍ର ବାବୁଙ୍କର ଆଶଂକା ଥିଲା ଯେ ତାଳଚେର ଆସନରେ ତାଙ୍କୁ ହରାଇଦିଆଯାଇପାରେ । ତେଣୁ ସେ ଉଭୟ ତାଳଚେର ଏବଂ ଆଠଗଡ ଆସନରୁ ଠିଆ ହୋଇଥିଲେ ଏବଂ ଉଭୟ ଆସନରୁ ବିଜୟୀ ହୋଇଥିଲେ । ପରେ ପବିତ୍ର ବାବୁ ଆଠଗଡ ଆସନରୁ ଇସ୍ତଫା ଦେବାପରେ ରାଧାନାଥ ବାବୁ ଉପନିର୍ବାଚନରେ ପ୍ରାର୍ଥୀ ହୋଇ ଜିତିଥିଲେ । ୧୯୬୭ ମସିହାରେ ଓଡିଶାରେ ସ୍ୱତନ୍ତ-ଜନକଂଗ୍ରେସ ମିଳିତ ସରକାର ଗଠିତ ହୋଇଥିଲା ଏବଂ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହୋଇଥିଲେ । ରାଧାନାଥ ବାବୁ ସ୍ୱାଧୀନ ସଦସ୍ୟ ଭାବେ ବହୁ ଗୁରୁତ୍ୱପୂର୍ଣ୍ଣ ବିତର୍କରେ ଭାଗ ନେଉଥିଲେ । ଏହି ମନ୍ତ୍ରିମଣ୍ଡଳରେ ନିଜେ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଅର୍ଥମନ୍ତ୍ରୀ ଥାଆନ୍ତି । ରାଜ୍ୟର ରାଜସ୍ୱ ବୃଦ୍ଧି ନିମନ୍ତେ ଅଧିକ ମଦ ଦୋକାନ ଖୋଲିବା ଲାଗି ବଜେଟରେ ବ୍ୟବସ୍ଥା ହୋଇଥିବାରୁ ରାଧାନାଥ ବାବୁ ଏହାର ବିରୋଧ କରି ବିଧାନସଭାରେ ବିତର୍କ ଆରମ୍ଭ କରିଥିଲେ । ମଦର ବିରୋଧ କରି ସେ ପ୍ରାୟ ଦେଢଘଣ୍ଟା କାଳ କହିଥିଲେ । ଅର୍ଥମନ୍ତ୍ରୀ ଭାବେ ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓ ଏହାର ଉତ୍ତରଦେଇ କହିଥିଲେ ଯେ ରାଜ୍ୟର ରାଜସ୍ୱ ବୃଦ୍ଧି ନିମନ୍ତେ ଏହା ନିହାତି ଆବଶ୍ୟକ । ପର୍ଯ୍ୟାପ୍ତ ରାଜସ୍ୱ ନମିଳିଲେ ରାଜ୍ୟରେ ଶିକ୍ଷା ଏବଂ ସ୍ୱାସ୍ଥ୍ୟ ସେବାର ପ୍ରସାର କାର୍ଯ୍ୟ ବାଧାପ୍ରାପ୍ତ ହେବ । ମୁଖ୍ୟମନ୍ତ୍ରୀଙ୍କର ଏହି ଉତ୍ତରରେ ସନ୍ତୁଷ୍ଟ ନହୋଇ ରାଧାନାଥ ବାବୁ ଏକ ପରିସଂଖ୍ୟାନ ଦେଇ କହିଥିଲେ ଯେ ମଦରୁ ଯେତିକି ରାଜସ୍ୱ ଆଦାୟ ହେବ ତାହାଠାରୁ ଅଧିକ ବ୍ୟୟ ମଦ ପାନ

ଜନିତ ରୋଗର ଚିକିତ୍ସା ଏବଂ ହିଂସାକାଣ୍ଡ ଯୋଗୁ ହେଉଛି । ସେତେବେଳେ ଏହା ଏକ ଉଲ୍ଲେଖନୀୟ ବିତର୍କ ଥିଲା ବୋଲି ଖୋଦ ରାଜନୀତି ବିଜ୍ଞାନର ତତ୍କାଳୀନ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ ତାଙ୍କର ଛାତ୍ରମାନଙ୍କୁ କହୁଥିଲେ ।

ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାର ୧୯୭୧ ମସିହାରେ ଭାଙ୍ଗିଗଲା ଏବଂ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଓଡିଶାରେ ହେଲା । ଏଥିରେ କୌଣସି ଦଳକୁ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ମିଳିନଥିଲା । କଂଗ୍ରେସକୁ ୫୧ଟି ଆସନ ମିଳିଥିଲେ ମଧ୍ୟ ସରକାର ଗଠନ କରିବାର ଶକ୍ତି କଂଗ୍ରେସ ପାଖରେ ନଥିଲା । ଏଥିରେ ସ୍ୱତନ୍ତ୍ର ଦଳକୁ ୩୬ ଏବଂ ଉତ୍କଳ କଂଗ୍ରେସକୁ ୩୩ଟି ଆସନ ମିଳିଥିଲା । ବିଜୁ ପଟ୍ଟନାୟକ କିନ୍ତୁ ୫ଟି ଯାକ ଆସନରୁ ହାରିଯାଇଥିଲେ । ମୁଖ୍ୟମନ୍ତ୍ରୀ କିଏ ହେବ ତାହାକୁ ନେଇ ବିବାଦ ଉପୁଜିଲା । ରାଧାନାଥ ବାବୁ ବିଧାନସଭାକୁ ନିର୍ବାଚିତ ହୋଇଥାଆନ୍ତି । ବିଜୁ ପଟ୍ଟନାୟକ ଜିତିଥିଲେ ନିଶ୍ଚୟ ମୁଖ୍ୟମନ୍ତ୍ରୀ ହୋଇଥାଆନ୍ତେ । ସ୍ୱତନ୍ତ୍ର ଦଳର ସଦସ୍ୟ ସଂଖ୍ୟା.ଅଧିକ ଥିଲେ ମଧ୍ୟ ରାଜେନ୍ଦ୍ର ନାରାୟଣଙ୍କୁ ମୁଖ୍ୟମନ୍ତ୍ରୀ କରିବା ସପକ୍ଷରେ ଉତ୍କଳ କଂଗ୍ରେସ ନଥିଲା । ତେଣୁ ଜଣେ ନିରପେକ୍ଷ ବ୍ୟକ୍ତିଙ୍କୁ ମୁଖ୍ୟମନ୍ତ୍ରୀ କରିବାକୁ ନିଜେ ସିଂହଦେଓ ପ୍ରସ୍ତାବ ଦେଲେ । ତାଙ୍କର ପ୍ରସ୍ତାବ ଥିଲା ରାଧାନାଥ ବାବୁଙ୍କୁ ମୁଖ୍ୟମନ୍ତ୍ରୀ କରିବା । ବିଜୁ ପଟ୍ଟନାୟକ କିନ୍ତୁ ଏହାର ବିରୋଧ କଲେ । ଶେଷରେ ଠିକ ହେଲା ଯେ ବୟୋଜ୍ୟେଷ୍ଠ ନେତା ବିଶ୍ୱନାଥ ଦାଶଙ୍କୁ ମୁଖ୍ୟମନ୍ତ୍ରୀ କରାଯିବ । ବିଶ୍ୱନାଥ ଦାଶଙ୍କୁ ମୁଖ୍ୟମନ୍ତ୍ରୀ କରାଇବାରେ ରାଧାନାଥ ବାବୁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହା ପରେ ଚିନ୍ତା ପଡିଲା ବିଶ୍ୱନାଥ ବାବୁ କେଉଁଠୁ ନିର୍ବାଚନ ଲଢିବେ । ଶ୍ୟାମସୁନ୍ଦର ମହାପାତ୍ର ଉଭୟ ବାଲେଶ୍ୱର ଲୋକସଭା ଆସନ ଏବଂ ରାଉରକେଲା ବିଧାନସଭା ଆସନରୁ ନିର୍ବାଚିତ ହୋଇଥିଲେ । ସେ ରାଉରକେଲା ବିଧାନସଭା ଆସନରୁ ଇସ୍ତଫା ଦେଇଥିବାରୁ ସେହି ଆସନଟି ଖାଲିଥାଏ । ତାହା କଂଗ୍ରେସର ଜିତିଥିବା ଆସନ ଏବଂ ସେତେବେଳେ ରାଉରକେଲା

ଆସନରେ ଶ୍ରମିକ ସଂଗଠନର ପର୍ଯ୍ୟାପ୍ତ ପ୍ରଭାବ ଥାଏ । ରାଧାନାଥ ବାବୁ ପ୍ରସ୍ତାବ ଦେଲେ ବିଶ୍ୱନାଥ ବାବୁ ରାଉରକେଲା ଆସନରୁ ଉପନିର୍ବାଚନ ଲଢ଼ିବେ । ତାଙ୍କୁ ବିଜୟୀ କରାଇବାର ସମସ୍ତ ଦାୟିତ୍ୱ ରାଧାନାଥ ବାବୁ ନେଲେ ଏବଂ ଜିତାଇକରି ଆଣିଲେ । ଏଥିରେ କଂଗ୍ରେସର ସଦସ୍ୟ ଶ୍ୟାମସୁନ୍ଦର ମହାପାତ୍ର ବାବୁଜୀଙ୍କୁ ସାହାଯ୍ୟ କରିଥିଲେ । ପରେ ଶ୍ୟାମ ବାବୁଙ୍କ ସହିତ ବାବୁଜୀଙ୍କର ସଂପର୍କ ଘନିଷ୍ଠ ହୋଇରହିଥିଲା । ବିଶ୍ୱନାଥ ବାବୁଙ୍କୁ ଜିତାଇବା ପାଇଁ ବାବୁଜୀ କଣ ସବୁ କରିଥିଲେ ଏବଂ କରାଇଥିଲେ ତାହା ଏବେବି ତାଙ୍କ ସହିତ କାର୍ଯ୍ୟକରିଥିବା ଲୋକମାନେ କୁହନ୍ତି । ତେବେ ବିଶ୍ୱନାଥ ଦାଶଙ୍କ ମନ୍ତ୍ରିମଣ୍ଡଳ ବେଶୀଦିନ ତିଷ୍ଠି ପାରିଲାନାହିଁ । ବିଜୁ ପଟ୍ଟନାୟକଙ୍କ ଜିଦ୍‌ଖୋର ଏବଂ ହାମବଡା ମନୋଭାବ ଯୋଗୁ ଏହି ମନ୍ତ୍ରିମଣ୍ଡଳର ପତନ ହେଲା । ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ଏବଂ ଉତ୍କଳ କଂଗ୍ରେସର ମିଳିତ ସରକାର ଗଠିତ ହେଲା । ଏହି ସରକାର ମଧ୍ୟ ବେଶୀଦିନ ରହିପାରିନଥିଲା । ବିଜୁ ପଟ୍ଟନାୟକଙ୍କ ବ୍ୟତୀତ ଆଉ ସମସ୍ତଙ୍କୁ କଂଗ୍ରେସରେ ଗ୍ରହଣ କରାଯିବ ବୋଲି ନନ୍ଦନୀ ଦେବୀ ପ୍ରସ୍ତାବ ଦେବାରୁ ତାହାକୁ ଉତ୍କଳ କଂଗ୍ରେସ ପ୍ରତ୍ୟାଖ୍ୟାନ କଲା । ତେଣୁ ସରକାରର ପତନ ହେଲା ଏବଂ ବିଧାନସଭା ନିର୍ବାଚନ ୧୯୭୩ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ହେଲା । ଏହି ବିଧାନସଭାକୁ ରାଧାନାଥ ବାବୁ ଆଠଗଡ ଆସନରୁ ଜିତିଥିଲେ । ଏହାପରେ ଦେଶର ରାଜନୈତିକ ମାନଚିତ୍ରରେ ଘୋର ପରିବର୍ତ୍ତନ ଘଟିବା ଆରମ୍ଭ ହେଲା । ୧୯୭୫ ମସିହାରେ ଜୁନ ୨୫ ତାରିଖରେ ଦେଶରେ ଜରୁରୀ ପରିସ୍ଥିତି ଜାରି ସମସ୍ତ ରାଜନୈତିକ କାର୍ଯ୍ୟକଳାପ ଉପରେ ବରଫ ପକାଇଦେଲା । ଏହାପରେ ଜରୁରୀ ପରିସ୍ଥିତି ଉଠିଯିବାପରେ ୧୯୭୭ ମସିହାରେ ଦେଶରେ ସାଧାରଣ ନିର୍ବାଚନ ହେଲା । ଜନତା ଦଳ କେନ୍ଦ୍ରରେ ସରକାର ଗଠନ କଲା । ସେହି ୧୯୭୭ରେ ଓଡିଶା ବିଧାସଭା ପାଇଁ ନିର୍ବାଚନ ହେଲା । ରାଧାନାଥ ବାବୁ

ଚାହୁଁଥିଲେ ସ୍ୱାଧୀନ ପ୍ରାର୍ଥୀ ହେବାପାଇଁ । କିନ୍ତୁ ବିଜୁ ପଟ୍ଟନାୟକଙ୍କ ବିରୋଧ ଯୋଗୁ ରାଧାନାଥ ବାବୁ ପ୍ରାର୍ଥୀ ହୋଇପାରିଲେ ନାହିଁ । ଚାହିଁଥିଲେ ସେ ସ୍ୱାଧୀନ ପ୍ରାର୍ଥୀ ଭାବେ ଲଢ଼ି ପାରିଥାଆନ୍ତେ । ତେବେ ଜନତା ଦଳର ଯେଉଁ ହାଓ୍ୱା ବୋହୁଥିଲା ତାହାର ସମ୍ମୁଖୀନ ହେବାକୁ ସେ କୁଣ୍ଠିତ ହୋଇଥିଲେ । ତିଗିରିଆର ରାଣୀ ରାସମଞ୍ଜରୀ ଦେବୀ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ଏହାପରେ ରାଧାନାଥ ବାବୁ ସକ୍ରିୟ ରାଜନୀତିରୁ ଓହରି ଯାଇଥିଲେ । କେନ୍ଦ୍ର ଏବଂ ଓଡିଶାରେ ଜନତା ସରକାର ପୂର୍ଣ୍ଣ ସମୟପାଇଁ କାର୍ଯ୍ୟ କରିପାରିଲା ନାହିଁ । ପ୍ରଥମେ ୧୯୮୦ ଜାନୁୟାରୀ ମାସରେ ଲୋକସଭା ନିର୍ବାଚନ ହେଲା । ଏଥିରେ କଂଗ୍ରେସ ପୁଣି କେନ୍ଦ୍ରରେ ଇନ୍ଦିରା ଗାନ୍ଧିଙ୍କ ନେତୃତ୍ୱରେ ସରକର ଗଠନକଲା । ଏହାପରେ ଯେଉଁ ସବୁ ରାଜ୍ୟରେ ଜନତା ଦଳର ସରକାର ଥିଲା ତାହାକୁ କେନ୍ଦ୍ରସରକାରଙ୍କ ପକ୍ଷରୁ ବରଖାସ୍ତ କରାଗଲା । ୧୯୮୦ ମସିହା ମଇମାସରେ ଓଡିଶା ବିଧାସଭାପାଇଁ ନିର୍ବାଚନ ହେଲା । ସେହିବର୍ଷ ରସାନନ୍ଦ ସାହୁ ଆଠଗଡ ଆସନରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଜାନକୀ ବାବୁ ଓଡିଶାର ମୁଖ୍ୟମନ୍ତ୍ରୀ ହୋଇ ଆସିବା ବେଳକୁ ରାଧାନାଥ ବାବୁ ଏବଂ ହରେକୃଷ୍ଣ ମହତାବ ମିଳିତ ଭାବେ କଂଗ୍ରେସ ଶାସନର ବିରୋଧରେ ନିଜନିଜ ସଂବାଦପତ୍ରରେ ଲେଖାମାନ ପ୍ରକାଶ କରୁଥାଆନ୍ତି । ଏପରିକି ଶାହା କମିଶନ ରିପୋର୍ଟକୁ 'ସମାଜ'ରେ ଲୋକମାନଙ୍କ ଅବଗତି ନିମନ୍ତେ ଛପାଯାଇଥିଲା । ଜରୁରୀ ପରିସ୍ଥିତି ସମୟରେ ଇନ୍ଦିରା ଗାନ୍ଧିଙ୍କ ସରକାର କିପରି ଏକଛତ୍ର ଶାସନ ଚଳାଇଥିଲେ ଏବଂ ନୈତିକତାର ଉଲ୍ଲଙ୍ଘନ କରାଯାଇଥିଲା ସେସଂପର୍କରେ ତଦନ୍ତ ରିପୋର୍ଟରେ ଉଲ୍ଲେଖ ଥିଲା । କଂଗ୍ରେସ ବିଜୟ ଲାଭ କରିଥିବାରୁ ସରକାର ଗଠନ ନିମନ୍ତ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ଏହି ସମୟରେ ଜାନକୀ ବାବୁ କେନ୍ଦ୍ରରେ ପର୍ଯ୍ୟଟନ ଏବଂ ବେସାମରିକ ବିମାନ ଚଳାଚଳ ବିଭାଗର କେନ୍ଦ୍ର ମନ୍ତ୍ରୀ ଥାଆନ୍ତି । ତାଙ୍କୁ ଓଡିଶାର ମୁଖ୍ୟମନ୍ତ୍ରୀ ହେବାପାଇଁ ପଠାଗଲା । ରାଜ୍ୟର ଦୁଇ ପ୍ରମୁଖ ସଂବାଦପତ୍ର କଂଗ୍ରେସର ବିରୋଧ କରୁଛନ୍ତି । ଏପରି

ସମୟରେ ସରକାରକୁ ଚଳାଇବା ସହଜ ହେବ ନାହିଁ ବୋଲି ଜାନକୀ ବାବୁ ଭଲଭାବେ ଜାଣିଥିଲେ । ତେଣୁ ଏହି ସଂବାଦପତ୍ର ମଧ୍ୟରୁ ଗୋଟିଏକୁ ଯଦି ନରମ କରାଯାଇପାରିବ ତେବେ ଶାସନ କାର୍ଯ୍ୟ ଚଳାଇବା କଷ୍ଟକର ହେବ ନାହିଁ । ମହତାବ ବାବୁଙ୍କୁ ମନାଇବା ସହଜ ହେବ ନାହିଁ ବୋଲି ଜାନକୀ ଭଲଭାବେ ଜାଣିଥିଲେ । ଏହାବାଦ ମହତାବଙ୍କୁ କଂଗ୍ରେସକୁ ଆଣିବାର ସପକ୍ଷରେ ଇନ୍ଦିରା ଗାନ୍ଧି ନଥିଲେ । କାରଣ ସେ ଜରୁରୀ ପରିସ୍ଥିତିର ଘୋର ବିରୋଧ କରି ଗିରଫ ହୋଇଥିଲେ । ଅନ୍ୟ ପକ୍ଷରେ ରାଧାନାଥ ବାବୁ ସଂଯମ ହୋଇ କାର୍ଯ୍ୟ କରିଥିଲେ । ତେଣୁ ଜାନକୀ ବାବୁ ଓଡିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବାପରେ ପ୍ରଥମେ ରାଧାନାଥ ବାବୁଙ୍କୁ ସାକ୍ଷାତକଲେ । ଏହି ସାକ୍ଷାତକାର ବେଳେ ରାଧାନାଥ ବାବୁଙ୍କୁ ଜାନକୀ ବାବୁ ଜଣାଇଲେ ଯେ ଆଠଗଡରୁ ସେ ଉପନିର୍ବାଚନ ଲଢିବେ ଏବଂ ଏଥିପାଇଁ ତାଙ୍କର ଆଶୀର୍ବାଦ ଭିକ୍ଷା କରିବା ନିମନ୍ତେ ଆସିଛନ୍ତି । ରାଧାନାଥ ବାବୁ ବିଚାରକଲେ ଯଦି ମୁଖ୍ୟମନ୍ତ୍ରୀ ଆଠଗଡର ପ୍ରତିନିଧି ହୁଅନ୍ତି ତେବେ ତାଙ୍କ ଅଞ୍ଚଳର ବହୁତ ବିକାଶ ହୋଇପାରିବ । ଆଠଗଡର ବିକାଶ ସବୁବେଳେ ରାଧାନାଥ ବାବୁଙ୍କ ହୃଦୟରେ ଥାଏ । ତେଣୁ ଉପନିର୍ବାଚନରେ ସେ ଜାନକୀ ବାବୁଙ୍କୁ ସାହାଯ୍ୟ କଲେ । ଜାନକୀ ବାବୁ ମଧ୍ୟ ବିପୁଳ ଭୋଟ ପାଇ ଆଠଗଡରୁ ନିର୍ବାଚିତ ହେଲେ । ଏହି ବିଜୟ ପରେ ଭୁବନେଶ୍ୱରରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା ଜଣାଇବା ନିମନ୍ତେ ଏକ ସଭାର ଆୟୋଜନ କରାଯାଇଥାଏ । ରାଧାନାଥ ବାବୁ ସେହି ସଭାରେ ଅଧ୍ୟକ୍ଷତା କରିଥିଲେ । ଆଠଗଡର ବିଶିଷ୍ଟ ବ୍ୟକ୍ତିମାନେ ମୁଖ୍ୟମନ୍ତ୍ରୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ସହିତ ରାଧାନାଥ ବାବୁଙ୍କର ଆଠଗଡ ପ୍ରତି ଥିବା ଅବଦାନ କଥା ମଧ୍ୟ କହିଥିଲେ । ସେହି ସଭାରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଶଂସା ଅପେକ୍ଷା ରାଧାନାଥ ବାବୁଙ୍କ ପ୍ରଶଂସା ଅଧିକ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଉପରେ ଏହାର ପ୍ରଭାବ ପଡିଲା । ସେ ସମ୍ବର୍ଦ୍ଧନାର ଉତ୍ତର ଦେବା ବେଳେ ପ୍ରାୟତଃ ରାଧାନାଥ ବାବୁଙ୍କୁ

ଏଡାଇଯାଇଥିଲେ । ରାଧାନାଥ ବାବୁ ମଧ୍ୟ ଏହାକୁ ଲକ୍ଷ୍ୟ କରିଥିଲେ । ତେଣୁ ସେ ତାଙ୍କର ଅଭିଭାଷଣରେ ଆଠଗଡର ବିକାଶ ନିମନ୍ତେ ମୁଖ୍ୟମନ୍ତ୍ରୀ ଯେଉଁ ସବୁ ପ୍ରତିଶ୍ରୁତି ଦେଇଥିଲେ ତାହାକୁ ସ୍ମରଣ କରାଇଦେଲେ ।

ସଭାପରେ ରାଧାନାଥ ବାବୁ କଟକ ଫେରୁଥିବା ବେଳେ ତାଙ୍କ ସହିତ ଯାଇଥିବା ସାଂବାଦିକଙ୍କୁ କହିଥିଲେ ଯେ ଜାନକୀ ବାବୁ ବୋଧେ ତାଙ୍କ ପ୍ରତିଶ୍ରୁତି ରକ୍ଷା କରିବେ ନାହିଁ । କାରଣ ଏହି ସଭାରେ ଆଠଗଡବାସୀ ତାଙ୍କର ନିର୍ବାଚିତ ପ୍ରତିନିଧିଙ୍କୁ ସମ୍ବର୍ଦ୍ଧନା ଜଣାଇବା ନିମନ୍ତେ ସଭାର ଆୟୋଜନ କରିଥିଲେ । ଜାନକୀ ବାବୁ କିନ୍ତୁ ତାହା ଉପରେ ପଦେବି କହିଲେ ନାହିଁ । ଏହି ସମୟରେ ସାଂବାଦିକ ଜଣକ କହିଥିଲେ ଯେ ସଭାରେ ଅନ୍ୟମାନେ ଆପଣଙ୍କୁ ସମ୍ମାନ ଏବଂ ଗୁରୁତ୍ୱ ଦେଇଥିବା ବେଳେ ଶିଷ୍ଟାଚାର ଦୃଷ୍ଟିରୁ ଜାନକୀ ବାବୁ ଆପଣଙ୍କ ପ୍ରତି ସାମାନ୍ୟ କୃତଜ୍ଞତା ମଧ୍ୟ ଜଣାଇଲେ ନାହିଁ । ତାହା ପରଦିନ ମୁଖ୍ୟମନ୍ତ୍ରୀଙ୍କ ସମ୍ବର୍ଦ୍ଧନା ସଭାର ସଂବାଦ ଲେଖି ସାଂବାଦିକ ଜଣକ ଯେତେବେଳେ ରାଧାନାଥ ବାବୁଙ୍କୁ ତାହା ଦେଖାଇବାକୁ ନେଲେ ରାଧାନାଥ ବାବୁ ସେହି ସଂବାଦକୁ ଦେଖି ଘୋର ବିରକ୍ତି ପ୍ରକାଶ କଲେ ଏବଂ ସେହି ସଂବାଦରେ ଆଉ କିଛି ଯୋଡି ଦେଇ ଛାପିବାକୁ ଦେଇଦେଲେ ।

ଏହି ସମ୍ବର୍ଦ୍ଧନା ସଭାପରେ ଉଭୟଙ୍କ ମଧ୍ୟରେ ଶୀତଳ ଯୁଦ୍ଧ ଆରମ୍ଭ ହୋଇଗଲା । ଏହି ସମୟରେ ରାଧାନାଥ ବାବୁ ରେଡକ୍ରସର ଅଧ୍ୟକ୍ଷ,କୃଷି ବିଶ୍ୱ ବିଦ୍ୟାଳୟର ପ୍ରୋ ଚାନସେଲର, ସ୍କାଉଟ-ଗାଇଡର ଓଡିଶା ଶାଖା ମୁଖ୍ୟ ଆଦି ବହୁ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଥାଆନ୍ତି । ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାରରେ ବସନ୍ତ କୁମାର ବିଶ୍ୱାଳ ପୌର ବିଭାଗର ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱରେ ଥିଲେ । ମୁଖ୍ୟମନ୍ତ୍ରୀଙ୍କର ସେ ଅତ୍ୟନ୍ତ ବିଶ୍ୱସ୍ତ ଥିବାରୁ ପ୍ରତି ବିଭାଗ ଉପରେ ତାଙ୍କର ନିୟନ୍ତ୍ରଣ ଥିଲା । ତାଙ୍କୁ ଲୋକେ ସେତେବେଳେ ଡିଫାକ୍ଟୋ ମୁଖ୍ୟମନ୍ତ୍ରୀ ବୋଲି କହୁଥିଲେ । ବସନ୍ତ ବାବୁଙ୍କ

ପ୍ରସ୍ତାବରେ ଓଡିଶାରେ ସେହି ସମୟରେ ବହୁ ନିର୍ମାଣକାର୍ଯ୍ୟ ଆରମ୍ଭ ହୋଇଥିଲା । ଜାନକୀ-ବସନ୍ତଙ୍କ ମିଳିତ ନେତୃତ୍ୱରେ ଓଡିଶାରେ ନିର୍ମାଣର ଯୁଗ ଆରମ୍ଭ ହୋଇଗଲା ବୋଲି ସରକାରଙ୍କ ପକ୍ଷରୁ ପ୍ରଚାର କରାଗଲା । ତେବେ ଏହି ନିର୍ମାଣ ଯୁଗ ସହିତ ଓଡିଶାରେ ଆଉ ଏକ ଯୁଗର ମଧ୍ୟ ଆରମ୍ଭ ହୋଇଥିଲା । ତାହାଥିଲା ବ୍ୟାପକ ଆର୍ଥିକ ଦୁର୍ନୀତିର ଯୁଗ । କେବଳ ସେତିକି ନୁହେଁ ସରକାରଙ୍କ ଦୁର୍ନୀତିର ଯିଏ ବିରୋଧ କଲା ବଳ ପ୍ରୟୋଗ କରାଯାଇ ତାଙ୍କୁ ନୀରବ କରିଦିଆଗଲା । ଯେଉଁମାନେ ବଳ ପ୍ରୟୋଗ ନିକଟରେ ମୁଣ୍ଡ ନୂଆଁଇଲେ ନାହିଁ ସେମାନଙ୍କୁ ଶେଷ କରିବା ପର୍ଯ୍ୟନ୍ତ ପଦକ୍ଷେପମାନ ଗ୍ରହଣ କରାଗଲା । ସରକାରଙ୍କଠାରୁ ସମର୍ଥନ ପାଉଥିବା ଗୁଣ୍ଡାମାନଙ୍କ ବିରୋଧରେ ସାଧାରଣ ଲୋକେତ କିଛି କହିପାରୁନଥିଲେ କିମ୍ବା କରି ପାରୁନଥିଲେ; ପୁଲିସ ମଧ୍ୟ ନୀରବ ରହିବାକୁ ବାଧ୍ୟ ହୋଇଥିଲା । ଏହା ସହ୍ୟ କରିବା ରାଧାନାଥ ବାବୁଙ୍କ ପକ୍ଷରେ ଅସହ୍ୟ ହେଲା । ସେ ସରକାରୀ ସ୍ତରରେ ଘଟୁଥିବା ଦୁର୍ନୀତି,ଅନ୍ୟାୟ ଏବଂ ଅବିଚାର ବିରୋଧରେ ଦୃଢ ଭାବେ କଲମ ଚାଳନା ଆରମ୍ଭ କରିଦେଇଥିଲେ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ନିଜେ ଜଣେ ପୋଖତ ସାଂବାଦିକ ଥିବାରୁ ରାଜ୍ୟର ବହୁ ସାଂବାଦିକଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ସେ ଏହି ପରିସ୍ଥିତିରେ ନିଜର ବ୍ୟକ୍ତିଗତ ସଂପର୍କକୁ ପ୍ରୟୋଗ କରି 'ସମାଜ'ବିରୋଧରେ ଅନ୍ୟ ସଂବାଦପତ୍ର ଏବଂ ସାଂବାଦିକମାନଙ୍କୁ ଠିଆ କରାଇଦେଲେ । ପରିସ୍ଥିତି ଏପରି ହୋଇଥିଲା ଯେ 'ସମାଜ'ର ସାଂବାଦିକମାନଙ୍କୁ ଅନ୍ୟ ସାଂବାଦିକମାନେ ଟାହିଟାପରା କଲେ । 'ସମାଜ'ସଂପାଦକଙ୍କ ମୁଣ୍ଡ ଖରାପ ହୋଇଗଲାଣି ବୋଲି ପ୍ରଚାର ମଧ୍ୟ କରାଗଲା । ବେଗୁନିଆକୁ ଏକ ସଭାରେ ଯୋଗଦେବାକୁ ରାଧାନାଥ ବାବୁ ଯାଉଥିବା ବେଳେ ତାଙ୍କ ଉପରେ କେତେକ ଗୁଣ୍ଡା ଖଣ୍ଡା, ବାଡି ଓ ବୋମା ଧରି ଆକ୍ରମଣ କରିଥିଲେ । ଗାଡି ଚାଳକ ବିପିନଙ୍କର ଉପସ୍ଥିତ ବୁଦ୍ଧି ଯୋଗୁ ରାଧାନାଥ ବାବୁ ସେଦିନ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇଯାଇଥିଲେ ।

ତାଙ୍କ ସହିତ କମ୍ୟୁନିଷ୍ଟ ନେତା ଗଂଗାଧର ପାଇକରାଏ ମଧ୍ୟ ସଭାରେ ଯୋଗଦେବାକୁ ଯାଉଥିଲେ । ଗୁଣ୍ଡାମାନଙ୍କ ବୋମାମାଡରେ ବିପିନ ଗୁରୁତର ଭାବେ ଆହତ ହୋଇଥିଲେ ଏବଂ ତାଙ୍କର ଗୋଟିଏ ଆଖି ନଷ୍ଟ ହୋଇଗଲା । ଆହତ ହୋଇ ମଧ୍ୟ ଗାଡ଼ିକୁ ବିଲ ଭିତରେ ପୂରାଇ ସେ ନେଇଆସିଥିଲେ ।

'ସମାଜ'ର କଣ୍ଠରୋଧ କରିବାପାଇଁ ବହୁବାର ବିଭିନ୍ନ ସ୍ଥାନରେ 'ସମାଜ' ନେଇ ଯାଉଥିବା ଗାଡି ଉପରେ ଗୁଣ୍ଡାମାନେ ଆକ୍ରମଣ କରିଛନ୍ତି । କାଗଜ ପୋଡିବା ସହିତ ଗାଡି ପୋଡିବାକୁ ମଧ୍ୟ ଉଦ୍ୟମ କରିଛନ୍ତି । ରାଧାନାଥ ବାବୁ ଯେଉଁ ସବୁ ମର୍ଯ୍ୟାଦାଜନକ ପଦବୀରେ ଥିଲେ ତାଙ୍କୁ ସେଥିରୁ ବହିଷ୍କାର କରାଯାଇ ବସନ୍ତ ବିଶ୍ୱାଳଙ୍କୁ ବସାଗଲା । ପ୍ରଥମେ ତାଙ୍କ ହାତରୁ ସ୍କାଉଟସ ଗାଇଡ ମୁଖ୍ୟ ପଦ କାଢିନିଆଗଲା । ଏହାପରେ ରେଡକ୍ରସ, କୃଷି ବିଶ୍ୱବିଦ୍ୟାୟର ପ୍ରୋଚାନସେଲର ପଦ ଆଦି କାଢି ନିଆଗଲା । ରାଧାନାଥ ବାବୁଙ୍କୁ ଅପମାନିତ କରିବାପାଇଁ ସମସ୍ତ ପ୍ରକାରର ପଦକ୍ଷେପ ଜାନକୀଙ୍କ ସରକାର ଗ୍ରହଣ କରିଥିଲା । କଳାହାଣ୍ଡିରେ ପିଲାବିକ୍ରି ସଂବାଦ ସମଗ୍ର ଦେଶରେ ଜାନକୀଙ୍କ ସରକାରର ଅପାରଗାତକୁ ପ୍ରକାଶ କରିଦେଲା । ନଳକୂପ ଖୋଳାନାମରେ ବିପୁଳ ଅର୍ଥ ହେରଫେର ହୋଇଥିବା ଖବର ପ୍ରମାଣ ସହ 'ସମାଜ'ରେ ଛପାଗଲା । ଜାନକୀ ସରକାରଙ୍କର ସବୁ କଳାକାରନାମା ବିଷୟରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଜଣାଇ ଦିଆଯାଉଥିଲା । ଏହି କାର୍ଯ୍ୟରେ କଂଗ୍ରେସର ଅନ୍ୟତମ ବରିଷ୍ଠ ନେତା ଶ୍ୟାମସୁନ୍ଦର ମହାପାତ୍ର ରାଧାନାଥ ବାବୁଙ୍କୁ ସାହାଯ୍ୟ କରୁଥିଲେ । ଏହି ସମୟରେ ସେ ଇନ୍ଦିରା ଗାନ୍ଧୀଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲେ । ଇନ୍ଦିରା ଗାନ୍ଧି ମଧ୍ୟ ତାଙ୍କ କଥା ଶୁଣୁଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ରାଧାନାଥ ବାବୁ ନିଜେ ଭେଟି ଜାନକୀ ସରକାରଙ୍କ ଦୁର୍ନୀତି ସଂପର୍କରେ ଏକ ପ୍ରାମାଣିତ ତଥ୍ୟଭରା ରିପୋର୍ଟ ପ୍ରଦାନ କରିଥିଲେ । ଜାନକୀ ବାବୁ ଏଥିରେ କ୍ଷୁବ୍ଧ ହୋଇ 'ସମାଜ'ର ସାଂବାଦିକମାନଙ୍କୁ ବିଭିନ୍ନ ଭାବେ ହଇରାଣ ହରକତ କରିବାପାଇଁ ପୁଲିସକୁ

ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଚାଟୁକାର ପୁଲିସମାନେ ଏହି କାର୍ଯ୍ୟ କରିବାରେ ବେଶ ଧୂରୀଣ ଥିଲେ । ନୟାଗଡ ସାଂବାଦିକ ଜଟାଧାରୀ ରଣା ଏହି ପ୍ରକ୍ରିୟାରେ ଜାନକୀ ସରକାରଙ୍କ ରୋଷର ଶିକାର ହୋଇଥିଲେ । ଜାନକୀ ବାବୁଙ୍କ ସରକାରରେ ଚାଲିଥିବା ଦୁର୍ନୀତିର ମୁଖାଖୋଲିଦେଇ ଏକ ସଂବାଦ ସେ 'ସମାଜ'ରେ ଛାପିବାକୁ ଦେଇଥିଲେ ଏବଂ ରାଧାନାଥ ବାବୁଙ୍କ ସ୍ୱୀକୃତି ପାଇବା ପରେ ସେହି ସଂବାଦଟି ପ୍ରକାଶିତ ହୋଇଥିଲା । ଏହି ସଂବାଦଟି ମୁଖ୍ୟତଃ ପୁଲିସ କର୍ମଚାରୀଙ୍କ ଦୁର୍ନୀତି ଉପରେ ଆଧାରିତ ହୋଇଥିବାରୁ ଏଥିରେ କ୍ଷୁବ୍ଧ ହୋଇ ନୟାଗଡ ଥାନା ବାବୁ ଜଟାଧାରୀ ରଣାଙ୍କୁ ଗିରଫ କରି ନେଇଥିଲେ ଏବଂ ତାଙ୍କ ଉପରେ ଅତ୍ୟାଚର କରିଥିଲେ । ତାଙ୍କୁ ରୋଳବାଡିରେ ବାଡେଇବା ସହିତ ମୁତ ପିଆଇଦେଇଥିଲେ । ଏପରିକି ଜଟାଧାରୀଙ୍କ ବାପାଙ୍କ ଦେହାନ୍ତ ହୋଇଯିବା ପରେ ତାଙ୍କୁ ବାପାଙ୍କ କୋକେଇକୁ କାନ୍ଧ ଦେବାକୁ ଅନୁମତି ଦେଇନଥିଲେ । ସେ ଜେଲ୍‌ରେ ଥିବା ବେଳେ ତାଙ୍କ ବାପାଙ୍କ ଶବଦାହ କରାଯାଇଥିଲା । ଜାନକୀବାବୁ ଏହା ଜାଣି ମଧ୍ୟ ପୁଲିସ ବାବୁଙ୍କ ବିରୋଧରେ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ । ଦେଶର ସବୁ ସଂବାଦପତ୍ର ଏବଂ ବିବିସିରେ ମଧ୍ୟ ଏହି ସଂବାଦର ପ୍ରଚାର ଏବଂ ପ୍ରସାର କରାଯାଇଥିଲା । ବିଭିନ୍ନ ଗଣମାଧ୍ୟମର ପ୍ରତିନିଧିମାନେ ଆସି ଜଟାଧାରୀଙ୍କୁ ଦେଖାକରି ତାଙ୍କ ପ୍ରତି ହୋଇଥିବା ପୁଲିସ ଅତ୍ୟାଚାର କଥା ଶୁଣିଥିଲେ ଏବଂ ପ୍ରକାଶ କରିଥିଲେ । ସାରା ଦେଶରେ ଜାନକୀଙ୍କ ସରକାର ଏହି ସମୟରେ ବଦନାମ ହୋଇଥିଲା । ରାଧାନାଥ ବାବୁ ଏହି କାର୍ଯ୍ୟରେ ନେତୃତ୍ୱ ନେଉଥିଲେ । ଜାତୀୟ ସ୍ତରର ଗଣମାଧ୍ୟମ ସଂବାଦପତ୍ରର ସଂପାଦକମାନଙ୍କ ପାଖକୁ ପତ୍ର ଲେଖି ସେ ଏହି ଲଜ୍ଜ୍ୟାକର ଘଟଣା ସଂପର୍କରେ ଜଣାଇଥିଲେ । ଓଡିଶାରେ ଏତେ କଥା ଘଟୁଥିବା ବେଳେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ କିଛି କରୁନଥିଲେ । ଓଡିଶାବାସୀ କିନ୍ତୁ ଆଶା କରୁଥିଲେ ଯେ ଜାନକୀଙ୍କ ସରକାରର ପତନ ଯେକୌଣସି ସମୟରେ ହୋଇଯିବ । କିନ୍ତୁ ଜାନକୀ ବାବୁଙ୍କ ଭାଗ୍ୟ ଭିନ୍ନ ଦିଗରେ ଯାଉଥିଲା । ବସନ୍ତ

ବାବୁ ଏବଂ ରାଧାନାଥ ବାବୁଙ୍କ ମଧ୍ୟରେ ସେ ଯୁଦ୍ଧ ଲଗାଇଦେଇ ବସିଯାଇଥିଲେ। ସବୁଦୋଷ ବସନ୍ତ ବାବୁଙ୍କ ମୁଣ୍ଡରେ ଯାଉଥିଲା । ବସନ୍ତ ବାବୁ ମଧ୍ୟ ସର୍ବସାଧାରଣ ସଭାରେ ଉଦ୍‌ବୋଧନ ଦେବା ବେଳେ ବ୍ୟକ୍ତିଗତ ସ୍ତରରେ ରାଧାନାଥବାବୁଙ୍କୁ ଆକ୍ଷେପ କରି ଅତି ନିମ୍ନ ସ୍ତରର ସମାଲୋଚନା କରୁଥିଲେ। କଳାହାଣ୍ଡି ଏବଂ କୋରାପୁଟରେ ଜଳସଂକଟ ଦୂର କରିବାପାଇଁ ଜାନକୀ ସରକାରଙ୍କ ପକ୍ଷରୁ ହଜାରହଜାର ନଳକୂପ କାଗଜପତ୍ରରେ ଖନନ କରାଯାଇଥିଲା । ଯେଉଁ ନଳକୂପମାନ ଖନନ ହୋଇଥିଲା ତାହା ଦୁଇଚାରିମାସ ଚାଲିବା ପରେ ଅଚଳ ହୋଇଗଲା । ପୋଖରୀ ଖୋଳା ନାମରେ ଲକ୍ଷଲକ୍ଷ ଟଙ୍କା ବାଟମାରଣା ହୋଇଗଲା । ଏସବୁ ସଂବାଦ 'ସମାଜ'ରେ ଛପାଯାଉଥିଲା। ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ବିରୋଧୀଦଳ ପକ୍ଷରୁ ରାଜ୍ୟର ବିଭିନ୍ନ ସ୍ଥାନରେ ବିକ୍ଷୋଭ,ଧର୍ମଘଟମାନ କରାଗଲା । କିନ୍ତୁ କେନ୍ଦ୍ରର ନେତୃତ୍ୱ ଉପରେ ଏହାର କୌଣସି ପ୍ରଭାବ ପଡୁନଥିଲା । ଜାନକୀ ସରକାରର ପତନ ଘଟୁନଥିବାରୁ ବିଭିନ୍ନ ସ୍ଥାନରେ ଜାନକୀଙ୍କ ସମର୍ଥକମାନେ ରାଧାନାଥ ବାବୁଙ୍କ ସଭାରେ ଉପହାସ କରି ମନ୍ତବ୍ୟମାନ ଦେଉଥିଲେ । ରାଧାନାଥ ବାବୁ କିନ୍ତୁ କୌଣସି ଚାପ ସମ୍ମୁଖରେ ମୁଣ୍ଡ ନୋଉଁନଥିଲେ। ନିଜର କର୍ତ୍ତବ୍ୟ ସେ କରି ଚାଲିଥିଲେ। ବିଧାନସଭା ଚାଲୁଥିବା ସମୟରେ ସରକାରର ଅପାରଗତାକୁ ଲୋକଲୋଚନକୁ ଆଣି ସଂପାଦକୀୟରେ ସେ ବହୁ ରୋଚକ ତଥ୍ୟ ପରିବେଷଣ କରୁଥିଲେ । ଯାହା ଫଳରେ ବିରୋଧୀ ଦଳ ପକ୍ଷରୁ ତାହାକୁ ଆଧାର କରି ସରକାରକୁ ଘେରାଯାଉଥିଲା। ଗାଲୁଆର ମୁହଁଟାଣ ନୀତିରେ ସରକାର ଏହି ସବୁ ଅଭିଯୋଗକୁ ଫାଙ୍କି ଦେଉଥିଲେ।

ଜାନକୀ ବାବୁ କେବଳ ରାଧାନାଥ ବାବୁଙ୍କ ପଛରେ ବସନ୍ତ ବାବୁଙ୍କୁ ଲଗାଇଦେଇ ବସିଗଲେ ନାହିଁ । 'ସମାଜ'କୁ ରାଜ୍ୟ ସରକାର ଦେଉଥିବା ବିଜ୍ଞାପନ ବନ୍ଦ କରିଦେଲେ । କେବଳ ଡି.ଏ.ଭି ବିଜ୍ଞାପନକୁ ଭରସା କରି

'ସମାଜ' ଚାଲୁଥିଲା । ଏହାବାଦ ମାଲଗୋଦାମର କିଛି ମାରୱାଡି ମଧ୍ୟ ବହୁ ସମୟରେ କର୍ମଚାରୀଙ୍କ ଦରମା ନିମନ୍ତେ ଆର୍ଥିକ ସାହାଯ୍ୟ ଯୋଗାଇଦେଇଛନ୍ତି ।  ଗୋଟିଏ ଘଟଣା ମନେ ପଡ଼େ । ଦଶହରାରେ କର୍ମଚାରୀମାନଙ୍କୁ ବୋନସ ଦେବାପାଇଁ  'ସମାଜ' ତହିବଲରେ ଆବଶ୍ୟକୀୟ ଅର୍ଥନଥିଲା । ସନ୍ଧ୍ୟାବେଳକୁ କର୍ମଚାରୀମାନେ ବୋନସ ନେବେ। ବାବୁଜୀ କଟକ ରିପୋର୍ଟର ମନମୋହନ ସାହୁଙ୍କୁ ଫୋନ କରି ଟଙ୍କା ଯୋଗାଡ କରିବାକୁ କହିଲେ । ମନମୋହନ ବାବୁ ମାତ୍ର କେଇଘଣ୍ଟା ମଧ୍ୟରେ ଲକ୍ଷାଧିକ ଟଙ୍କା ସହ ବାବୁଜୀଙ୍କ ନିକଟରେ ପହଞ୍ଚିଲେ । କର୍ମଚାରୀମାନେ ସନ୍ଧ୍ୟାରେ ବୋନସ୍ ନେଇଗଲେ ।  ଏହାପରେ 'ସମାଜ'ର ପ୍ରଭାବ ହ୍ରାସ କରିବାପାଇଁ ମୁଖ୍ୟମନ୍ତ୍ରୀ ନିଜର ଜ୍ୱାଇଁ ସୌମ୍ୟ ପଟ୍ଟନାୟକଙ୍କୁ ମାଧ୍ୟମକରି 'ସଂବାଦ' ନାମରେ ଏକ ସଂବାଦପତ୍ର ୧୯୮୪ ମସିହା ଅକ୍ଟୋବର ୪ ତାରିଖରେ ଆରମ୍ଭ କଲେ । 'ସମାଜ'ର ପ୍ରଥମ ପ୍ରକାଶନ ଏହି ତାରିଖରେ ହୋଇଥିବାରୁ ସେ ମଧ୍ୟ ସେହି ସମାନ ତାରିଖରେ 'ସଂବାଦ' ପ୍ରକାଶ କଲେ । ଇନ୍ଦିରା ଗାନ୍ଧୀଙ୍କର ନିଜ ରକ୍ଷୀ ହାତରେ ମୃତ୍ୟୁ ବରଂ ହୋଇଗଲା; କିନ୍ତୁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ହଟାଯାଇପାରିଲାନାହିଁ । ୧୯୮୫ ବିଧାନସଭା ନିର୍ବାଚନରେ ପୁଣି କଂଗ୍ରେସ ସରକାର ଗଠନ କଲା ଏବଂ ଜାନକୀ ବାବୁ  ଲାଗଲାଗ ଦ୍ୱିତୀୟ ଥର ନିମନ୍ତେ ମୁଖ୍ୟମନ୍ତ୍ରୀ ହେଲେ । ଏକ ଦୁର୍ନୀତିଗ୍ରସ୍ତ ସରକାରକୁ ଗାଦିଚ୍ୟୁତ କରାଇବାରେ ରାଧାନାଥ ବାବୁ ବିଫଳ ହୋଇଥିବାରୁ ତାଙ୍କ ମନରେ ଗଭୀର କ୍ଷୋଭ ସୃଷ୍ଟି ହେଲା। ତେବେ ଜାନକୀ ସରକାର ବିରୋଧରେ ଯେଉଁ ନୀତିଗତ ଯୁଦ୍ଧ ଆରମ୍ଭ ହୋଇଥିଲା ତାହା ଚାଲୁରହିଲା । 'ସଂବାଦ'ରେ ସରକାର ତାଙ୍କ ସଫଳତାର କାହାଣୀମାନ ଛାପିଲେ । ଏଥିରେ କେବଳ ପରିସଂଖ୍ୟାନ ଦିଆଯାଉଥିଲା, ବାସ୍ତବରେ କିନ୍ତୁ ୧୫ ପ୍ରତିଶତ କାମ ହେଉଥିଲା । ସରକାର୍ ଶହେପ୍ରତିଶତ କାମ କରିଛନ୍ତି ବୋଲି ଦାବି କରୁଥିଲେ। 'ସମାଜ'ସରକାରଙ୍କ ଅସଲ ଚେହେରାକୁ ପ୍ରକାଶ କରିବାରେ ଅବହେଳା କରିନଥିଲା ।

## ବାବୁଜୀ ଓ 'ସମାଜ'

ପ୍ରାରମ୍ଭରେ 'ସଂବାଦ' ଯେତିକି ନ୍ୟୁଜପ୍ରିଣ୍ଟ ପାଉଥିଲା ତାହା ତାହାର ଆବଶ୍ୟକତା ମେଣ୍ଟାଇ ପାରୁନଥିଲା । ତେଣୁ ନ୍ୟୁଜପ୍ରିଣ୍ଟ ନିମନ୍ତେ ସୌମ୍ୟବାବୁ ବହୁବାର ରାଧାନାଥବାବୁଙ୍କୁ ଅନୁରୋଧ କରିଛନ୍ତି ଏବଂ ବାବୁଜୀ ମଧ୍ୟ ତାଙ୍କୁ ନ୍ୟୁଜପ୍ରିଣ୍ଟ ଯୋଗାଇଦେଇଛନ୍ତି । ଏହା ହେଉଛି ରାଧାନାଥ ବାବୁଙ୍କର ଏକ ମହାନ୍ ଗୁଣ । ତାଙ୍କ ବିରୋଧରେ ଛାପିବାକୁ ସେ ଏହା ପୂର୍ବରୁ ମଧ୍ୟ ନ୍ୟୁଜପ୍ରିଣ୍ଟ ଯେଗାଇ ଦେଇଛନ୍ତି । 'ନିଆଁଖୁଣ୍ଟା' ପତ୍ରିକାର ପ୍ରତ୍ୟେକ ସଂଖ୍ୟାରେ ରାଧାନାଥ ବାବୁଙ୍କୁ ବିରୋଧ କରି ଲେଖାଟିଏ ପ୍ରକାଶ ପାଏ । ରାଧାନାଥ ବାବୁ ଏହାକୁ ପାଠକରନ୍ତି ଏବଂ ସଂପାଦକ ଗୋଦାବରୀଶ ମହାପାତ୍ରଙ୍କୁ ଫୋନରେ ଡାକି ଗାଳି ବି ଦିଅନ୍ତି । କିନ୍ତୁ ସେହି ଗୋଦାବରୀଶ ବାବୁ ପତ୍ରିକା ଛାପିବାକୁ କାଗଜ ସରିଗଲେ ରାଧାନାଥ ବାବୁଙ୍କ ପାଖରେ ପହଞ୍ଚି କାଗଜ ଦେବାକୁ ଅନୁରୋଧ କରି କୁହନ୍ତି, 'ଆପଣଙ୍କ ବିରୋଧରେ ଲେଖି କରି କାଗଜ ସାରିଦେଲି । କିଛି ନ୍ୟୁଜପ୍ରିଣ୍ଟ ଦେଲେ ଏହି ସଂଖ୍ୟା ଛପାଯିବ ।' ଏହା ଶୁଣି ରାଧାନାଥ ବାବୁ ହସିଦିଅନ୍ତି ଏବଂ ତାଙ୍କୁ ଚା ଜଳଖିଆ ଖୁଆଇବା ସହିତ ନ୍ୟୁଜ ପ୍ରିଣ୍ଟ ମାଗଣାରେ ଦେଇଦିଅନ୍ତି । ଏଥିରୁ ଜଣାଯାଏ ଯେ ବାବୁଜୀ ସମାଲୋଚନାକୁ ଭୟ କରୁନଥିଲେ । ବରଂ ସମାଲୋଚନାକୁ ସେ ସହ୍ୟ କରି ଯଦି ନିଜର କିଛି ଭୁଲ ଥାଏ ତେବେ ତାହାକୁ ସଂଶୋଧନ କରିଦେଉଥିଲେ । ଅନେକ ସମୟରେ ଏହା ମଧ୍ୟ ଘଟିଛି ଯେ 'ଧରିତ୍ରୀ', 'ପ୍ରଗତିବାଦୀ' ଏବଂ 'ପ୍ରଜାତନ୍ତ' ଆଦି ସଂବାଦପତ୍ରର ପରିଚାଳକମାନେ ରାଧାନାଥ ବାବୁଙ୍କୁ ଅନୁରୋଧ କରି ନ୍ୟୁଜପ୍ରିଣ୍ଟ ନେଇଛନ୍ତି । ସାହାଯ୍ୟ କରିବାରେ ସେ କୌଣସି ସମୟରେ କୁଣ୍ଠିତ ନଥିଲେ । ଶତ୍ରୁ ହେଲେ ମଧ୍ୟ ସେ ସାହାଯ୍ୟ କରୁଥିଲେ । ଏଥି ନିମନ୍ତେ ସେ ବହୁବାର ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ଏପରିକି ସମାଲୋଚିତ ମଧ୍ୟ ହୋଇଛନ୍ତି । ସାହାଯ୍ୟ କରିବା କିନ୍ତୁ ବନ୍ଦ କରୁ ନଥିଲେ ।

ରାଧାନାଥ ବାବୁ 'ସମାଜ'ର ସଂପାଦକ ଦାୟିତ୍ୱ ସହିତ ଲୋକସେବକ ମଣ୍ଡଳ ଓଡିଶା ଶାଖାର ସଭାପତି ଦାୟିତ୍ୱ ତୁଲାଉଥିଲେ ।

ଏହି ସମୟରେ ବିଶ୍ୱନାଥ ଦାଶ ଲୋକସେବକ ମଣ୍ଡଳର କେନ୍ଦ୍ରୀୟ ସଭାପତି ଥିଲେ । ବୟସାଧିକ୍ୟ ଯୋଗୁ ସେ ୧୯୮୧ ମସିହାରେ କେନ୍ଦ୍ରୀୟ ସଭାପତି ପଦ ତ୍ୟାଗକଲେ ଏବଂ ରାଧାନାଥ ବାବୁ ଏହାର ଦାୟିତ୍ୱ ବହନ କରିବା ସହିତ ଓଡିଶା ଶାଖାର ସଭାପତି ଦାୟିତ୍ୱ ମଧ୍ୟ ନିଜ ହାତରେ ରଖିଲେ । କାରଣ ବଞ୍ଚିଥିବା ପର୍ଯ୍ୟନ୍ତ 'ସମାଜ'ଠାରୁ ନିଜକୁ ଦୂରେଇ ନରଖିବା ନିମନ୍ତେ ସେ ନିଷ୍ପତ୍ତି ଗ୍ରହଣ କରିଥିଲେ । ବାବୁଜୀ ଲୋକସେବକ ମଣ୍ଡଳର ସଭାପତି ଦାୟିତ୍ୱ ଗ୍ରହଣ କରିବାପରେ ଏହାର ଦପ୍ତର ଲଜପତ ନଗରରୁ ଗୋପବନ୍ଧୁ ଭବନକୁ ଚାଲିଆସିଲା ପରି ଲାଗିଲା । ବାବୁଜୀ ବଞ୍ଚିଥିବା ପର୍ଯ୍ୟନ୍ତ 'ସମାଜ' କର୍ମଚାରୀଙ୍କର ସ୍ୱାର୍ଥରକ୍ଷା ଉପରେ ପ୍ରାଧାନ୍ୟ ଦେବା ସହିତ ସେମାନେ ଯେପରି ସମ୍ମାନର ସହ ଜୀବନ ନିର୍ବାହ କରିପାରିବେ ସେଥିପ୍ରତି ମଧ୍ୟ ସେ ଧ୍ୟାନ ଦେଉଥିଲେ । ତେବେ ସଂପାଦନା ବିଭାଗର କର୍ମଚାରୀମାନେ ତାଙ୍କର ଜ୍ଞାତି ଭଳିଥିଲେ । ଦଶହରାରେ ଅଷ୍ଟମୀ ଦିନ ସଂପାଦକୀୟ ବିଭାଗର କର୍ମଚାରୀମାନେ ବାବୁଜୀଙ୍କ ସହିତ ପ୍ରସାଦ ସେବନ କରୁଥିଲେ । କାରଣ ସେହିଦିନ ତାଙ୍କ ଘରେ ଦୁର୍ଗାପୂଜା ହୋଇଥାଏ । ତାଙ୍କ ଘର ମାନେ 'ସମାଜ'ର ସଂପାଦକୀୟ ବିଭାଗର ଉପର ମହଲାରେ ଥିବା ଗୃହଟି । ରାଧାନାଥ ବାବୁଙ୍କ ଘରେ ଯଦି ଅନ୍ୟ ସମୟରେ କିଛି ପିଠାପଣା ହେଉଥିଲା ତେବେ ତାହା ସେ ତଳକୁ ସଂପାଦକୀୟ ବିଭାଗକୁ ପଠାଇଦେଉଥିଲେ । ମକରଚାଉଳ ଠାରୁ ଆରମ୍ଭ କରି ପଣା ସଂକ୍ରାନ୍ତିର ପଣା ମଧ୍ୟ ସଂପାଦକୀୟ ବିଭାଗରେ କାମ କରୁଥିବା ସାଂବାଦିକମାନଙ୍କ ପାଖକୁ ଅସୁଥିଲା । ବାବୁଜୀ ମାଲିକ ନଥିଲେ, ସେ ଥିଲେ ସମସ୍ତଙ୍କର ବାପପରିୟ

ପ୍ରାୟ ୧୧ ବର୍ଷ କାଳ ୧୯୫୨ରୁ ୧୯୬୧ ପର୍ଯ୍ୟନ୍ତ ସେ ରାଜ୍ୟର ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀଥିଲେ । କେବଳ ୧୯୬୨ରୁ ୧୯୬୭ ପର୍ଯ୍ୟନ୍ତ ସେ ବିଧାୟକ ନଥିଲେ । ନଚେତ ୧୯୪୬ରୁ ୧୯୭୬ ପର୍ଯ୍ୟନ୍ତ

ସେ ଓଡିଶା ବିଧାନସଭାରେ ସଦସ୍ୟ ଥିଲେ । ଏତେ  ବର୍ଷ ମନ୍ତ୍ରୀ ଏବଂ ବିଧାୟକ ଥାଇ ମଧ୍ୟ ବାବୁଜୀ ନିଜ ପାଇଁ ଖଣ୍ଡେ ଜମି  ଭୁବନେଶ୍ୱର କିମ୍ବା କଟକରେ ରଖିପାରିନଥିଲେ। ତାଙ୍କର ନିଜର ଖଣ୍ଡେ ଘର ନଥିଲା । ବହୁ ବର୍ଷ ପୂର୍ବରୁ ସେ ଆଠଗଡରେ ଥିବା ନିଜର ପୈତୃକ ଗୃହକୁ ତ୍ୟାଗ କରିଥିଲେ। ସେହି ଜମିରେ ଥିବା ନିଜ ଅଂଶ ନିମନ୍ତେ କୌଣସି ଦିନ ସେ ଦାବି କରିନଥିଲେ । ବନ୍ୟାରେ କିମ୍ବା ଘରପୋଡିରେ ବାସହୀନ ହୋଇ ପଡିଥିବା ଶହଶହ ଲୋକଙ୍କ ନିମନ୍ତେ ଯିଏ ବାସଗୃହ ନିର୍ମାଣ କରିଦେବାରେ ସହାୟତା ଦେଇଛନ୍ତି ତାଙ୍କର ନିଜର ଖଣ୍ଡେ ଘର ନଥିଲା । ଏହା ହୁଏତ ଏହି ସମୟରେ କେହି ବିଶ୍ୱାସ କରିବେ ନାହିଁ। ଥରେ ବିଧାୟକ ହୋଇଗଲେ ସାଇକେଲ ଚଢୁଥିବା ବ୍ୟକ୍ତି ମାତ୍ର ମାସ କେଇଟାରେ ବୋଲେରୋ ଗାଡି ଧରି ନିର୍ବାଚନ ମଣ୍ଡଳୀକୁ ଆସୁଛନ୍ତି । ଦୁଇବର୍ଷରେ ଭୁବନେଶ୍ୱରେ ଉଆସ ନିର୍ମାଣ କରିରହୁଛନ୍ତି । ମନ୍ତ୍ରୀ ହୋଇଗଲେ ତ କଥା ସରିଲା । ସାତ ପୁରୁଷପାଇଁ ସମ୍ପତ୍ତି ସଂଚୟ କରିଦେଉଛନ୍ତି ।  ତେଣୁ ଆଜିର ସମୟରେ ଯଦି କେହି କୁହେ ଯେ ଦଶ ବର୍ଷ ମନ୍ତ୍ରୀ ଏବଂ ୨୪ ବର୍ଷ ବିଧାୟକ ହେବାପରେ ରାଧାନାଥ ବାବୁଙ୍କର ଜମି ବା ଘର ନଥିଲା ତେବେ ତାହାକୁ କଣ ବିଶ୍ୱାସ କରାଯାଇପାରିବ ? ରାଧାନାଥ ବାବୁ ଯେଉଁ ସମୟରେ ମନ୍ତ୍ରୀ ବା ବିଧାୟକ ଥିଲେ ସେହି ସମୟରେ ଅର୍ଥ ହଡପ ଅପେକ୍ଷା ନୈତିକ ମୂଲ୍ୟବୋଧର ଅଧିକ ପ୍ରାଧାନ୍ୟ ଥିଲା ।  କେବଳ ସେତିକି ନୁହେଁ ସଂପ୍ରତି ଲୋକସେବକ ମଣ୍ଡଳର ସଦସ୍ୟ ବା  ଅନ୍ୟ କୌଣସି ପଦବୀରେ ରହିବାପରେ ବ୍ୟକ୍ତିମାନେ ଯେପରି ଧନାଢ୍ୟ ହୋଇଯାଉଛନ୍ତି ତାହା ଦେଖିଲେ ମନେ ହେବ ଯଦି ରାଧାନାଥ ବାବୁ ନିଜପାଇଁ କିଛି କରିପାରିନଥିଲେ ତେବେ ତାହା ନିଶ୍ଚୟ ତାଙ୍କର ଅପାରଗ ପଣିଆ ଥିଲା । ଯଦି ଲୋକସେବକ ମଣ୍ଡଳ ତାଙ୍କୁ ନବେ ଦଶକ ପ୍ରାରମ୍ଭରେ ସଦସ୍ୟ ଏବଂ ସଭାପତି ପଦରୁ ବାହାର କରିଦେଇଥାଆନ୍ତା ତେବେ ବୃଦ୍ଧ ବୟସରେ ମୁଣ୍ଡ ଗୁଞ୍ଜିବାପାଇଁ ତାଙ୍କ ପାଖରେ ଚାଳଟିଏ ନଥିଲା।  ବଡ ପୁଅ ନୀଳକଣ୍ଠ ରଥ ସୁଦୂର ପୁଣେରେ ଚାକିରୀ

ଜୀବନକାଳରେ ସରକାରୀ ବାସଭବନରେ ରହୁଥିଲେ । ଚାକିରୀରୁ ଅବସର ନେବାପରେ ସେ ପୁଣେରେ ଗୋଟିଏ ଛୋଟିଆ ଘର ନିର୍ମାଣ କରି ଏବେ ସେଠାରେ ବାସ କରୁଛନ୍ତି । ସାନପୁଅଙ୍କର ଭୁବନେଶ୍ୱରରେ ଘରଟିଏ ଥିଲା । ପରେ ସେ ତାହାକୁ ବିକ୍ରି କରିଦେଲେ । ତେଣୁ କଟକ କିମ୍ବା ଭୁବନେଶ୍ୱରରେ ରାଧାନାଥ ବାବୁଙ୍କର ବାସଭବନ ନଥିଲା । ଲୋକସେବକ ମଣ୍ଡଳ ତାଙ୍କୁ 'ସମାଜ' ଅଫିସରୁ ବାହାର କରିଦେଇଥିଲେ ତାଙ୍କ ପରି ସ୍ୱାଭିମାନୀ ବ୍ୟକ୍ତିଙ୍କର କଣ ଯେ ହୋଇଥାଆନ୍ତା ତାହା ଭାବିହେଉନାହିଁ ।

ଏପରି ଭାବେ ସଚ୍ଚୋଟତାକୁ ନିଜ ଜୀବନର ବ୍ରତ ଭାବେ ଯେଉଁ ବ୍ୟକ୍ତି ଗ୍ରହଣ କରିଥିଲେ ସେ କଣ କଦାପି ଏକ ଦୁର୍ନୀତିଗ୍ରସ୍ତ, ଅପାରଗ ଏବଂ ଅପଯଶ ଅର୍ଜନ କରୁଥିବା ସରକାରକୁ ଲଗାମଛଡା ଛାଡିଦେଇପାରିବେ ? ତେଣୁ ୧୯୮୫ରେ ପୁଣି ଜିତି ସରକାର ଗଠନ କରିଥିବା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାରକୁ ଗାଦିଚ୍ୟୁତ କରିବା ଉଦ୍ୟମରେ ରାଧାନାଥ ବାବୁ ଲାଗି ରହିଲେ । ତାଙ୍କୁ ଏହି ପ୍ରକ୍ରିୟାରେ ସାହାଯ୍ୟ କରିବାପାଇଁ ବିଜୁ ଜନତାଦଳର କିଛି ଯୁବନେତା ସାହାଯ୍ୟ କଲେ । ଜାନକୀ ବାବୁଙ୍କ ସରକାରର ସମସ୍ତ ତ୍ରୁଟି ବିଚ୍ୟୁତିକୁ ଲୋକଲୋଚନକୁ ଆଣିବାରେ ତାଙ୍କ ନେତୃତ୍ୱରେ ପରିଚାଳିତ 'ସମାଜ' ଉଦ୍ୟମ ଜାରି ରଖିଲା । ଏହି ସମୟରେ ଯେଉଁମାନେ ରାଜ୍ୟପାଳ ଭାବେ ଆସିଥିଲେ ସେମାନଙ୍କ ସହିତ ରାଧାନାଥ ବାବୁଙ୍କର ସଂପର୍କ ଅତି ଘନିଷ୍ଠ ରହୁଥିଲା । କାରଣ ଏମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱାଧୀନତା ସଂଗ୍ରାମ ସୈନିକ ଥିଲେ । ତେଣୁ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବେ ସେମାନଙ୍କୁ ରାଧାନାଥ ବାବୁ ଜାଣିଥିଲେ । ଏହା ଆଲୋଚନା କଲାବେଳେ ରାଧାନାଥ ବାବୁଙ୍କର ଗାନ୍ଧିଜୀଙ୍କ ସହିତ ହୋଇଥିବା ଏକ ସାକ୍ଷାତକାର କଥା ମନେପଡିଯାଏ । ରାଧାନାଥ ବାବୁ ନିଜେ ଏହା କହିଥିଲେ । ୧୯୨୫ ମସିହାର ଘଟଣା । ଓଡିଶାରେ କଂଗ୍ରେସର କାର୍ଯ୍ୟକ୍ରମ ଏବଂ ରାଜନୈତିକ ପରିସ୍ଥିତି ସଂପର୍କରେ ବର୍ଣ୍ଣନା କରି ଗୋପବନ୍ଧୁ

ଏକ ପତ୍ର ଗାନ୍ଧିଜୀଙ୍କ ପାଖକୁ ଲେଖିଥିଲେ । ଏହି ପତ୍ରଟି ଗାନ୍ଧିଜୀଙ୍କୁ ଦେବାପାଇଁ ନିଜେ ରାଧାନାଥ ବାବୁ ଓ୍ୱାର୍ଦ୍ଧା ଆଶ୍ରମକୁ ଯାଇଥିଲେ । ଦିନ ବାରଟା ବାଜିବାକୁ ପାଞ୍ଚ ମିନିଟ ଥାଏ । ଏହି ସମୟରେ ରାଧାନାଥ ବାବୁ ଯାଇ ଆଶ୍ରମରେ ପହଞ୍ଚିଲେ ଏବଂ ସଂଗେସଂଗେ ଗାନ୍ଧିଜୀଙ୍କୁ ସାକ୍ଷାତକରି ପତ୍ର ଦେଲେ । ଗାନ୍ଧିଜୀ ତାଙ୍କ ଠାରୁ ପତ୍ରଟି ନେଲେ ଏବଂ କହିଲେ ଯେ ଦିନ ୧୨ ଟା ବାଜିଯିବ। ଦିନ ବାରଟାରୁ ସାଢେ ବାରଟା ଯାଏ ଥିବା ସମୟକୁ ସେ ଗୁରୁଦେବଙ୍କୁ ଦେଇଛନ୍ତି। ଏହି ସମୟରେ ଶୋଇବେ । ଏହା କହିଲେ ଏବଂ ବସିଥିବା ଖଟିଆ ଉପରେ ସଂଗେସଂଗେ ନିଘୋଡ ନିଦରେ ଶୋଇଗଲେ । ରାଧାନାଥ ବାବୁ ଖଟିଆ ପାଖରେ ତଳେ ଗାନ୍ଧିଜୀ ଉଠିବା ପର୍ଯ୍ୟନ୍ତ ଅପେକ୍ଷା କରି ବସିପଡିଲେ । ଏହି ସମୟରେ ଠିକ ଅଧଘଣ୍ଟା ପରେ ଗାନ୍ଧିଜୀ ଉଠିପଡିଲେ ଏବଂ ରାଧାନାଥ ବାବୁ ସେଠାରେ ବସିଥିବା ଦେଖି ପ୍ରଶ୍ନ କଲେ ଯେ ସେ ସ୍ନାନ ଏବଂ ଖାଦ୍ୟ ଖାଇଲେଣି କି ନାହିଁ? ରାଧାନାଥ ବାବୁଙ୍କ ମନରେ ତ ପ୍ରଶ୍ନଟିଏ ଥାଏ ଯେ ଗାନ୍ଧିଜୀ କହିଲେ ଅଧଘଣ୍ଟା ସେ ଗୁରୁଦେବଙ୍କ ଦେଇଛନ୍ତି । ଗୁରୁଦେବଙ୍କୁ ସାକ୍ଷାତ କଲେ ନାହିଁ। ଗୁରୁଦେବ କାହାଁନ୍ତି ବୋଲି ତାଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଥାଏ। ଗାନ୍ଧିଜୀ ନିଦରୁ ଉଠିବା ପରେ ତାଙ୍କୁ ସେ ଏ ସଂପର୍କରେ ପ୍ରଶ୍ନ କରିବାରୁ ଗାନ୍ଧିଜୀ କହିଥିଲେ ଯେ ଦିନରେ ସେ ଶୁଅନ୍ତି ନାହିଁ । କିନ୍ତୁ ଦିନେ ଶାନ୍ତିନିକେତନରେ ମଧ୍ୟାହ୍ନ ଭୋଜନ ସାରିବାପରେ ଦିନ ୧୨ରୁ ୧୨ଟା ୩୦ ମିନିଟ ଯାଏ ଥିବା ସମୟ ତାଙ୍କୁ ଦେବା ଲାଗି ଗୁରୁଦେବ କହିଲେ। ଗାନ୍ଧିଜୀ ହଁ ମାରିଦେଲେ । ଏହା ପରେ ଗୁରୁଦେବ କହିଥିଲେ ଏହି ଅଧଘଣ୍ଟା ସେ କିଛି ନକରି ଶୋଇବେ । ତେଣୁ ଏହି ସମୟ ସେ ଗୁରୁଦେବଙ୍କୁ ଦେଇଥିବାରୁ ଅନ୍ୟ କୌଣସି କାର୍ଯ୍ୟ ଏହି ଅଧଘଣ୍ଟା ମଧ୍ୟରେ କରନ୍ତି ନାହିଁ। ସେହିଦିନଠାରୁ ଗାନ୍ଧଜୀ ଦିନ ୧୨ଟାରୁ ୧୨ଟା ୩୦ ମିନିଟ ଯାଏ ସବୁଦିନ ନିଶ୍ଚୟ ଶୟନ କରୁଥିଲେ ।

## ବାବୁଜୀ ଓ 'ସମାଜ'

ଜନତା ଦଳର ଯୁବ ବାହିନୀ ସହାୟତାରେ ଜାନକୀବାବୁଙ୍କ ଦୁର୍ନୀତିଗ୍ରସ୍ତ ସରକାର ବିରୋଧରେ ସଂଗ୍ରାମ ଆରମ୍ଭ ହେଲା । 'ସମାଜ' ନିଜ ପ୍ରତିନିଧି ଏବଂ ସ୍ୱତନ୍ତ୍ର ପ୍ରତିନିଧିମାନଙ୍କ ସହାୟତରେ ରାଜ୍ୟରେ ଯେଉଁଠିସବୁ ଅର୍ଥର ହେରଫେର, ବିକାଶ ମୂଳକ କାମ କାଗଜପତ୍ରରେ ହେଉଥିବା ଦୁର୍ନୀତି ଆଦି ଘଟଣା ଘଟୁଥିଲା ତାହାର ରିପୋର୍ଟ ସଂଗ୍ରହ କରି ଜନ ସଚେତନା ସୃଷ୍ଟି ନିମନ୍ତେ ଛାପୁଥିଲା । ଜନତାଦଳର ଯୁବ ନେତାମାନେ ଦୁର୍ନୀତି ଘଟୁଥିବା ଅଞ୍ଚଳମାନଙ୍କୁ ଯାଇ ଜନସମାବେଶ ଏବଂ ଧର୍ମଘଟ ଆଦି କରୁଥିଲେ । ଏହି ସଂଗ୍ରାମ ପ୍ରାୟ ଚାରିବର୍ଷ ଚାଲିବାପରେ ଜାନକୀ ବାବୁଙ୍କ ସରକାର ଏପରି ବଦନାମ ହୋଇଗଲା ଯେ ଜାନକୀବାବୁ ୧୯୮୯ ମସିହା ଡିସେମ୍ବର ୭ ତାରିଖରେ ନିଜ ପଦବୀରୁ ଇସ୍ତଫା ଦେବାକୁ ବାଧ୍ୟହେଲେ । ଜାନକୀ ବାବୁଙ୍କ ଦୁର୍ନୀତି ଗ୍ରସ୍ତ ସରକାର ବିରୋଧରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ସମୟରେ ରାଧାନାଥ ବାବୁଙ୍କ ନିକଟକୁ ବିଜୁ ବାବୁ ନିଜେ ଆସି ତାଙ୍କର ସାହାଯ୍ୟ ଲୋଡିଥିଲେ । ବାବୁଜୀ ମଧ୍ୟ ଅତୀତରେ ବିଜୁବାବୁ ତାଙ୍କ ପ୍ରତି କରିଥିବା ସମସ୍ତ କଟୂକ୍ତି ଏବଂ 'ସମାଜ'କୁ କରିଥିବା ହଇରାଣ ହରକତ ଆଦି ସବୁକିଛିକୁ ଭୁଲିଯାଇ ଜନତାଦଳକୁ ଅକୁଣ୍ଠିତ ଭାବେ ସରକାର ବିରୋଧୀ ଆନ୍ଦୋଳନ ତେଜାଇବାରେ ସାହାଯ୍ୟ କରିଥିଲେ । ଏହି ସମୟରେ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ପ୍ରତିଷ୍ଠା ବିରୋଧରେ ଆରମ୍ଭ ହୋଇଥିବା ଆନ୍ଦୋଳନକୁ ମଧ୍ୟ ରାଧାନାଥ ବାବୁ ସାହାଯ୍ୟ କରି ଲୋକମାନଙ୍କ ଅସୁବିଧାମାନ 'ସମାଜ'ରେ ପ୍ରକାଶ କରି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ସେ କ୍ଷେପଣାସ୍ତ୍ର ଘାଟୀର ବିରୋଧ କରୁନଥିଲେ । ତାଙ୍କର ବିରୋଧ ଥିଲା ଲୋକମାନେ ଯେପରି ହଇରାଣ ନହୁଅନ୍ତି । ଯେତେବେଳେ ଯେଉଁଠି ଦୁର୍ନୀତି ହୋଇଛି ରାଧାନାଥ ବାବୁ ସେଠାରେ ପହଞ୍ଚି ଲୋକମାନଙ୍କୁ ସଜାଗ କରିବାକୁ ଉଦ୍ୟମ କରିଛନ୍ତି । ସେମାନଙ୍କର କଣ ଆବଶ୍ୟକ, ସରକାର

କିପରି ସେମାନଙ୍କୁ ସେମାନଙ୍କର ମୌଳିକ ଅଧିକାରରୁ ବଞ୍ଚିତ କରୁଛି ତାହା ସେ ଲୋକମାନଙ୍କୁ 'ସମାଜ'ରେ ଲେଖା ଲେଖି ଦେଖାଇଦେବା ସହିତ ବୁଝାଇଦେଉଥିଲେ । ଏହା କରିବା ପଛରେ ତାଙ୍କ ନିଜର କିଛି ବ୍ୟକ୍ତିଗତ ସ୍ୱାର୍ଥ ନଥିଲା । ତାଙ୍କର ଏକମାତ୍ର କାର୍ଯ୍ୟ ଥିଲା ଅନ୍ୟାୟ ଏବଂ ଦୁର୍ନୀତିର ବିରୋଧ କରିବା । ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାର ବିରୋଧରେ 'ସମାଜ' ନୀତିଗତ ସଂଗ୍ରାମ ଚଳାଇଥିବା ବେଳେ ଜନତାଦଳର ଜନୈକ ବରିଷ୍ଠ ନେତା ରାଧାନାଥ ବାବୁଙ୍କୁ ସାକ୍ଷାତ କରି କହିଥିଲେ ଯେ ତାଙ୍କ ନିର୍ବାଚନ ମଣ୍ଡଳୀରେ କଂଗ୍ରେସର ମନ୍ତ୍ରୀ ଦୁର୍ନୀତି କରୁଥିବା ଘଟଣା ସଂପର୍କରେ ସଂବାଦ ଦେଲେ ମଧ୍ୟ କାଗଜରେ ପ୍ରକାଶ କରାଯାଉନାହିଁ । ଏହାର କାରଣ ସେ କହିଥିଲେ ଯେ ତାଙ୍କ ନିର୍ବାଚନ ମଣ୍ଡଳୀର ସଂପାଦନା ବିଭାଗରେ କାମ କରୁଥିବା ଜନୈକ ସାଂବାଦିକଙ୍କର ମନ୍ତ୍ରୀଙ୍କ ସହିତ ବ୍ୟକ୍ତିଗତ ସଂପର୍କ ଥିବାରୁ ସେ ଦେଉଥିବା ସରକାରୀ ବିରୋଧୀ ସଂବାଦକୁ ଉକ୍ତ ସାଂବାଦିକ ଚାପି ଦେଉଛନ୍ତି । ରାଧାନାଥ ବାବୁ ଏହା ଶୁଣି ଅଗ୍ନିଶର୍ମା ହୋଇଗଲେ ଏବଂ ତୁରନ୍ତ ସେହି ସାଂବାଦିକଙ୍କୁ ଡାକିବାପାଇଁ କାଶୀକୁ କହିଲେ । ବାବୁଜୀଙ୍କ ଠାରୁ ହଠାତ୍ ଡାକରାପାଇ ସାଂବାଦିକ ଜଣକ ହଡବଡେଇ ଗଲେ ଏବଂ କାଶୀକୁ ପଚାରିବାରୁ ସେ ସବୁ କଥା କହିଦେଲେ । କାଶୀ ଠାରୁ ସବୁ ଶୁଣିବାପରେ ଏହାର ଉତ୍ତର କଣ ଦିଆଯିବ ତାହା ସାଂବାଦିକ ଜଣକ ସ୍ଥିର କରିଦେଲେ । ବାବୁଜୀ ତାଙ୍କୁ ପ୍ରଶ୍ନ କଲେ ଯେ ଉକ୍ତ ନେତାଙ୍କ ସଂବାଦକୁ ସେ କାହିଁକି ଚାପିଦେଉଛନ୍ତି ? ସାଂବାଦିକ କହିଲେ ଯେ ସଂପାଦକ ମହୋଦୟ ଯଦି ଚାହୁଁଛନ୍ତି ତେବେ ବାର୍ତ୍ତା ସଂପାଦକଙ୍କୁ ଡାକି ଏହାର ତଦନ୍ତ କରାନ୍ତୁ । ସେ ଏହା କରିନାହାଁନ୍ତି । ଯଦି ବାର୍ତ୍ତା ସଂପାଦକ କୁହନ୍ତି ଯେ ସେ ନେତାଙ୍କ ସଂବାଦକୁ ଚାପି ଦେଉଛନ୍ତି ତେବେ ଇସ୍ତଫା ଦେଇ ଚାଲିଯିବେ ବୋଲି ସାଂବାଦିକବାବୁ ଦୃଢତାର ସହ କହିଥିଲେ ଏବଂ ଏହା କହିଦେଇ ଚାଲିଆସୁଥିବା ବେଳେ ରାଧାାନଥ ବାବୁ

କହିଲେ ସେ ଏହାର ତଦନ୍ତ କରିବା ପରେ ଯଦି ଘଟଣା ସତ୍ୟ ହୋଇଥାଏ ତେବେ ତାଙ୍କୁ 'ସମାଜ'ରୁ ତଣ୍ଟିଆ ଦେଇ ବାହାର କରିଦେବେ। ରାଧାନାଥ ବାବୁ ଏହା କହିବାରୁ ସାଂବାଦିକ ଜଣକ ବୁଲି ପଡି କହିଲେ ଓ.କେ। ଏଥିପାଇଁ ମୁଁ ଆପଣଙ୍କୁ ଚ୍ୟାଲେଞ୍ଜ କରୁଛି । ସାଂବାଦିକଜଣକ ଇଂରାଜୀରେ ପାଲଟା ଉତ୍ତର ଦେବା ରାଧାନାଥ ବାବୁଙ୍କୁ ବହୁତ ବାଧିଲା । କାରଣ ଏହି ସାଂବାଦିକଜଣକ ପ୍ରତିଦିନ ଜାତୀୟ ସ୍ତରରେ ଘଟୁଥିବା ରାଜନୈତିକ ଏବଂ ଅର୍ଥନୈତିକ ସଂକ୍ରାନ୍ତ ଗୁରୁତ୍ୱପୂର୍ଣ୍ଣ ସଂବାଦମାନ କରନ୍ତି ଏବଂ ଜାନକୀ ବାବୁଙ୍କ ବିରୋଧରେ ପ୍ରାୟତଃ ପ୍ରତିଦିନ କିଛି ନା କିଛି ଲେଖନ୍ତି। ତେଣୁ ତାଙ୍କ ମନରେ ପ୍ରବଳ ସ୍ୱାଭିମାନ ବା ଅହଂକାର ମଧ୍ୟ ଥାଏ । ରାଧାନାଥ ବାବୁ ସଂଗେସଂଗେ ବାର୍ତ୍ତା ସଂପାଦକଙ୍କୁ ଡକାଇ ତାଙ୍କ ସହିତ ଆଲୋଚନା କଲେ । ବାର୍ତ୍ତା ସଂପାଦକ ବାବୁଜୀଙ୍କୁ କହିଦେଲେ ଯେ ସେହି ସାଂବାଦିକ ନିଜ ଗ୍ରାମର କୌଣସି ସଂବାଦ ଲେଖନ୍ତି ନାହିଁ । ତେଣୁ ରାଜନେତାଙ୍କ ସଂବାଦ ସେ ଚାପିଦେବାର ପ୍ରଶ୍ନ ଉଠୁନାହିଁ। ଉକ୍ତ ରାଜନେତା ଚାଲିଯିବା ପରେ ପୁଣି ଥରେ ବାବୁଜୀଙ୍କଠାରୁ ଡାକରାପାଇ ସାଂବାଦିକ ଜଣକ ଗଲେ। ବାବୁଜୀ ତାଙ୍କ ସହିତ ଜାତୀୟ ରାଜନୀତିରେ ଘଟୁଥିବା ଘଟଣା ଉପରେ ଆଲୋଚନା କଲେ ଏବଂ ଜାନକୀ ବାବୁଙ୍କ ଉପରେ ଆଉ କଣ ସେ ଲେଖୁଛନ୍ତି ବୋଲି ପଚାରିଥିଲେ। ଏହା ପରେ ଲକ୍ଷ୍ମଣଙ୍କୁ ଡାକି ମିଠା ଆଣି ଦେବାକୁ କହିଲେ । ଏହା ହେଉଛି ବାବୁଜୀଙ୍କ ହୃଦୟ । ସେ ହଠାତ୍ ରାଗି ଉଠିବେ। ଯଦି ବୁଝିଯିବେ ଯେ ତାଙ୍କର ରାଗିବା ଠିକ ହୋଇନାହିଁ ତେବେ ଏପରି ଆଚରଣ କରିବେ ସତେ ଯେପରି କିଛି ଘଟିନାହିଁ । ତାଙ୍କର ଏହି ଆଚରଣ ଦେଖି ଯାହା ଉପରେ ସେ ରାଗିଥିବେ ସେହି ବ୍ୟକ୍ତି ନିଜ ପାଖରେ ନିଜେ ସତେ ଯେପରି ଛୋଟ ହୋଇଯାଏ ।

ବାବୁଜୀ ଚାହିଁଥିଲେ ସଂବଲପୁର,ବ୍ରହ୍ମପୁର ଏବଂ କୋରାପୁଟରେ 'ସମାଜ'ର ଆଉ ତିନିଟି ସଂସ୍କରଣ କରିପାରିଥାଆନ୍ତେ । ତାଙ୍କରି ସମୟରେ

'ପ୍ରଜାତନ୍ତ୍ର' ସଂବଲପୁରରେ ତାହାର 'ହିରାଖଣ୍ଡ' ସଂସ୍କରଣ ବାହାର କରିପାରିଲା । 'ସମାଜ'ର ତିନିଟି ସଂସ୍କରଣ ଏକ ସମୟରେ ବାହାର କରିବା ନିମନ୍ତେ ଆର୍ଥିକ ଶକ୍ତି ଥିଲା । ବାବୁଜୀ କିନ୍ତୁ ତାହା କରିନଥିଲେ । ଥରେ ଗିରିଜା ଭୂଷଣ ପଟ୍ଟନାୟକ ତାଙ୍କୁ ଏ ସଂପର୍କରେ ପ୍ରଶ୍ନ କରିବାରୁ ତାଙ୍କର ଉତ୍ତର ଥିଲା ଯେ ସେ ଫୋର୍ଡଙ୍କ ପରି ଗୋଟିଏ ମଡେଲରେ ବିଶ୍ୱାସ କରନ୍ତି । ତାଙ୍କର ଏହି ଉତ୍ତରରେ ଗିରିଜା ବାବୁ ଏବଂ ଅନ୍ୟମାନେ ତାଙ୍କ ମୁହଁକୁ ଚାହିଁବାରୁ ସେ କହିଲେ ଯେ ଥରେ ସାଂବାଦିକମାନେ ଫୋର୍ଡଙ୍କୁ ପ୍ରଶ୍ନ କରିଥିଲେ ଯେ ସେ କାହିଁକି ଗୋଟିଏ ମଡେଲର ଗାଡି ବାହାର କରୁଛନ୍ତି ଅନ୍ୟ କିଛି ମଡେଲ କରୁନାହାଁନ୍ତି ? ଏହାର ଉତ୍ତରରେ ଫୋର୍ଡ କହିଥିଲେ ଯେ ସେ ଗୋଟିଏ ମଡେଲରେ ବିଶ୍ୱାସ କରନ୍ତି । ତାଙ୍କର ଯୁକ୍ତି ଥିଲା 'ସମାଜ'ର ଗୋଟିଏ ସଂସ୍କରଣ ବାହାରିଲେ ସେଥିରେ ପ୍ରକାଶ ପାଉଥିବା ସଂବାଦକୁ ସାରା ରାଜ୍ୟର ଲୋକେ ପାଇପାରିବେ । ଯଦି ଅନ୍ୟସ୍ଥାନରେ ସଂସ୍କରଣ କରାଯାଏ ତେବେ ଲୋକେ ସମଗ୍ର ସଂବାଦ ପାଇବାରୁ ବଞ୍ଚିତ ହେବେ । ସଂବଲପୁରର ବହୁଲୋକ କଟକ,ଭୁବନେଶ୍ୱର ସମେତ ରାଜ୍ୟ ଏବଂ ଦେଶର ବହୁ ସହରରେ କାମ କରନ୍ତି । ଯଦି ସଂବଲପୁର ସଂସ୍କରଣ ପ୍ରକାଶ ପାଏ ତେବେ ସଂବଲପୁରର ବାହାରେ ଥିବା ଲୋକେ କିପରି ତାଙ୍କ ଅଞ୍ଚଳରେ କଣ ଘଟୁଛି ତାହାର ଖବର ପାଇବେ ? ସେତେବେଳେ ଅନ୍ୟାନ୍ୟ ଗଣମାଧ୍ୟମର ଏପରି ବହୁଳ ପ୍ରସାର ହୋଇନଥିଲା । ତେଣୁ ସେହି ସମୟରେ ବାବୁଜୀଙ୍କର ଏହି ମନୋଭାବ ଠିକ୍ ଥିଲା ବୋଲି ମନେହୁଏ ।

ରାଜନୀତିରେ କେହି କାହାର ଶତ୍ରୁ ବା ମିତ୍ର ନୁହଁନ୍ତି । ୧୯୯୦ରେ କଂଗ୍ରେସର ପରାଜୟ ସହିତ ଜନତାଦଳର ବିଜୟ ହେଲା ଏବଂ ବିଜୁବାବୁଙ୍କ ନେତୃତ୍ୱରେ ସରକାର ଗଠିତ ହେଲା । ପ୍ରଥମ ଦୁଇବର୍ଷ ଶାସନ ଆାପାତତଃ ଠିକଠାକ ଚାଲିଲା । ସରକାରଙ୍କ ପକ୍ଷରୁ ବହୁ ଜନ ହିତକାରୀ କାର୍ଯ୍ୟକ୍ରମ

ହାତକୁ ନିଆଗଲା । ଲୋକଙ୍କୁ ପ୍ରତିଶ୍ରୁତି ଦିଆଗଲା । 'ସମାଜ' ମଧ୍ୟ ସରକାରଙ୍କର ଜନହିତକାରୀ କାର୍ଯ୍ୟକ୍ରମକୁ ବଧାଇ ଜଣାଇ ସଂବାଦ ଏବଂ ସଂପାଦକୀୟ ପ୍ରକାଶ କଲା । ତିନି ବର୍ଷ ପରେ 'ସମାଜ'ଏବଂ ସରକାର ମଧ୍ୟରେ ଚାଲିଥିବା ମଧୁଚନ୍ଦ୍ରିକା ସରିଗଲା । ବିଦ୍ୟୁତ ଖୁଣ୍ଟ ପୋତିବା, ରୋଗୀଙ୍କପାଇଁ ବରାଦ ହୋଇଥିବା ଅର୍ଥକୁ ନେଇ ଦଳୀୟ କାମରେ ଲଗାଇବା, ଜଳସେଚନର ପ୍ରସାର ନିମନ୍ତେ ଦିଆଯାଇଥିବା ପ୍ରତିଶ୍ରୁତି ପୂରଣରେ ସରକାର ସ୍ଥାଣୁ ହୋଇବସିଯିବା ଏବଂ ଶେଷରେ ମଦମୃତ୍ୟୁ ଘଟଣା 'ସମାଜ'କୁ ସରକାର ବିରୋଧରେ ସ୍ୱରଉତ୍ତୋଳନ କରିବାକୁ ବାଧ୍ୟକଲା । ନିତ୍ୟାନନ୍ଦ ସାମନ୍ତରାଏଙ୍କ ମଧ୍ୟସ୍ଥତାରେ ଜାନକୀ ବାବୁ ଏବଂ ବସନ୍ତ ବିଶ୍ୱାଳଙ୍କ ସହିତ ବାବୁଜୀଙ୍କର ବୁଝାମଣା ହୋଇପାରିଲା । ତେବେ ବାବୁଜୀଙ୍କର ଘନିଷ୍ଠ ବିଶ୍ୱସ୍ତ ଏବଂ ସହଯୋଗୀ ଦେବ ପ୍ରସାଦ ମିଶ୍ର ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଯେଉଁ ବସନ୍ତ ବାବୁ ତାଙ୍କର ଆଦ୍ୟ ରାଜନୈତିକ ଜୀବନରେ ରାଧାନାଥ ବାବୁଙ୍କୁ ବିରୋଧ କରିଥିଲେ ସେ ଆସି ରାଧାନାଥ ବାବୁଙ୍କ ସହିତ ଗୋଟିଏ ଆସନରେ ବସି ଭୋଜନ କଲେ । ଏହି ସମୟକୁ ବାବୁଜୀ ବୟସର ଭାର ଯୋଗୁ ବିଶେଷ ସକ୍ରିୟ ହୋଇପାରୁନଥିଲେ । ତେଣୁ ସରକାର କିମ୍ବା ବିରୋଧୀଦଳ ମଧ୍ୟରେ ସେ ସମ ଦୂରତ୍ୱ ବଜାୟ ରଖୁଥିଲେ । ସେତେବେଳେ ରାଜ୍ୟର ରାଜନୈତିକ ସ୍ଥିତି ଏପରି ହୋଇଥାଏ ଯେ କୌଣସି ଦଳକୁ ଆଖିବୁଜି ଭଲ କହିବା ସଂଭବ ନଥିଲା । ଉଭୟ ବିଜୁବାବୁ ଏବଂ ଜାନକୀ ବାବୁଙ୍କ ସହିତ ବାବୁଜୀଙ୍କ ସଂପର୍କ ଯଥାବିଧି ଥିଲା । ତେବେ ମତଭେଦ ତାହାର ସ୍ଥାନ ପରିବର୍ତ୍ତନ କରିନଥିଲା । ଉଭୟଙ୍କର ରାଜନୈତିକ କାର୍ଯ୍ୟକଳାପକୁ ବାବୁଜୀ ପସନ୍ଦ କରୁନଥିଲେ । ତେଣୁ 'ସମାଜ' ଏହି ପରିସ୍ଥିତିରେ ଲୋକଙ୍କର ମୁଖପାତ୍ର ହୋଇ କାମକରୁଥିଲା । ସରକାରୀ କଳର ସ୍ଥାଣୁତା ସଂପର୍କରେ ସରକାରକୁ ଚେତାଇଦେବା ସହିତ ବିରୋଧୀଦଳକୁ ତାହାର ଦାୟିତ୍ୱ ସଂପର୍କରେ 'ସମାଜ' ନିଜର ସଂପାଦକୀୟ, ଝିଟିପିଟି କୁହେ ଏବଂ ପ୍ରବନ୍ଧ ମାଧ୍ୟମରେ

ଚେତାଇଦେଉଥିଲା । ସରକାର ଯଦି ଭୁଲ କଲେ ତେବେ ସରକାରଙ୍କୁ ସମାଲୋଚନା କରୁଥିଲା ଏବଂ ବିରୋଧୀ ଦଳ ନିଷ୍କ୍ରିୟ ରହୁଥିଲେ ତାହାର ସମାଲୋଚନା କରୁଥିଲା । ଲୋକଙ୍କର ଅଭାବ ଅସୁବିଧାକୁ ବିସ୍ତାରିତ ଭାବେ 'ସମାଜ'ରେ ପ୍ରକାଶ କରାଯାଉଥିଲା । ରାଧାନାଥ ବାବୁଙ୍କ ନିର୍ଦ୍ଦେଶରେ ୧୯୯୫ରେ ହେବାକୁ ଥିବା ବିଧାନସଭା ନିର୍ବାଚନ ପୂର୍ବରୁ ଉଭୟ ଜାନକୀ ବାବୁ ଏବଂ ବିଜୁ ବାବୁଙ୍କର ଦୁଇଟି ସାକ୍ଷାତକାର 'ସମାଜ'ରେ ପ୍ରକାଶ ପାଇଥିଲା । ପ୍ରଥମ ସାକ୍ଷାତକାରଟି ବିରୋଧୀଦଳର ନେତା ଜାନକୀ ବାବୁଙ୍କର ଥିଲା । ଏଥିରେ ସେ ସରକାରଙ୍କ ବିଭିନ୍ନ ଅପାରଗତା ଏବଂ ଦାୟିତ୍ୱହୀନତା ସଂପର୍କରେ ପ୍ରଶ୍ନ କରିଥିଲେ । ଦ୍ୱିତୀୟ ସାକ୍ଷାତକାରଟି ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ଥିଲା । ଏଥିରେ ସେ ନିଜ ସରକାରର ସଫଳତା ସଂପର୍କରେ ସୂଚନା ଦେବା ସହିତ ସମାଲୋଚନାର ଉତ୍ତର ଦେଇଥିଲେ । ବିଧାନସଭା ନିର୍ବାଚନରେ ଜାନକୀ ବାବୁଙ୍କ ନେତୃତ୍ୱରେ କଂଗ୍ରେସର ବିପୁଳ ବିଜୟ ହେଲା ଏବଂ ପୁଣି ଜାନକୀ ବାବୁଙ୍କ ସରକାର ଫେରିଲା ।

ତୃତୀୟ ଥରପାଇଁ ଜାନକୀଙ୍କ ସରକାର ଗାଦିସୀନ ହେବା ବେଳକୁ ରାଧାନାଥ ବାବୁଙ୍କୁ ୯୯ ବର୍ଷ ହୋଇଥିଲା । ଶାରୀରିକ ସ୍ତରରେ ସେ ଦୁର୍ବଳ ହୋଇପଡୁଥିଲେ ମଧ୍ୟ ମାନସିକ ସ୍ତରରେ ବେଶ ପ୍ରଖର ଥିଲେ । ନୂଆ ମନ୍ତ୍ରୀ ଏବଂ ବିଧାୟକମାନେ ତାଙ୍କୁ ସାକ୍ଷାତ କରିବାକୁ ଆସୁଥିଲେ । ସେମାନଙ୍କ ସହିତ ରାଜ୍ୟର ସୁବିଧା ଅସୁବିଧା ସଂପର୍କରେ ସେ ଆଲୋଚନା କରୁଥିଲେ ଏବଂ ଯେଉଁସବୁ କାର୍ଯ୍ୟକୁ ପ୍ରାଧାନ୍ୟ ଦେଇ କରିବା କଥା ତାହା ଉପରେ ପରାମର୍ଶ ଦେଉଥିଲେ । ୧୯୯୬ ମସିହାର ଶେଷାର୍ଦ୍ଧ ବେଳକୁ ସେ ଆଉ 'ସମାଜ' କଥା ବୁଝିପାରିଲେ ନାହିଁ । ମନୋରମା ଦେବୀଙ୍କ ଉପରେ 'ସମାଜ' ପରିଚାଳନାର ନୈତିକ ଦାୟିତ୍ୱ ପଡିଲା । ତାଙ୍କୁ କିନ୍ତୁ ଠିକ୍ ଭାବେ କାମ କରିବାକୁ ଦିଆଗଲା ନାହିଁ । ସେ ଯଦି କିଛି କରିବାକୁ ଯାଉଥିଲେ ସେଥିରେ ଘୋର ପ୍ରତିବନ୍ଧକ ସୃଷ୍ଟି କରାଯାଉଥିଲା । ପ୍ରତ୍ୟେକ

ଭୁଲ ପାଇଁ ତାଙ୍କ ଉପରେ ଦୋଷ ଲଦି ଦିଆଯାଉଥିଲା । ଲୋକସେବକ ମଣ୍ଡଳ ବାବୁଜୀଙ୍କ ଖାଦ୍ୟ ଏବଂ ଚିକିତ୍ସା ଆଦି ଚଳାଇବାପାଇଁ ଯେଉଁ ଆର୍ଥିକ ସାହାଯ୍ୟ ଦେଉଥିଲେ ତାହାକୁ ବାଟମାରଣା କରାଯାଉଥିଲା । ଏପରିକି ବାବୁଜୀଙ୍କ ନାମରେ ମିଥ୍ୟା ମେଡିକାଲ ବିଲ୍ କରି ତାଙ୍କର ଅତିବିଶ୍ୱସ୍ତ ଲୋକମାନେ ଅର୍ଥ ଆତ୍ମସାତ କଲେ । 'ସମାଜ'ର ସମ୍ମାନ ରକ୍ଷା ନିମନ୍ତେ ଯେଉଁ ବ୍ୟକ୍ତି ନିଜର ସବୁ କିଛି ତ୍ୟାଗ କରିଥିଲେ ତାଙ୍କ ନାମରେ ଅର୍ଥ ଆତ୍ମସାତର ଅଭିଯୋଗ ହେଲା । ତାଙ୍କ ନାମରେ କିଛି ଲୋକ 'ସମାଜ'କୁ ଲୁଟ କରିଥିଲେ । ଏହା ହେଉଛି ବାବୁଜୀଙ୍କ ଅତି ବିଶ୍ୱାସର ପରିଣାମ । ସେ ନିଜେ ନିର୍ମଳ ଏବଂ ସ୍ଫଟିକ ପରି ସ୍ୱଚ୍ଛ, କିନ୍ତୁ ନିଜର କାନକୁହାଙ୍କ ନିମନ୍ତେ ସେ ଜୀବନର ସନ୍ଧ୍ୟାରେ ଅଭିଯୋଗର ସମ୍ମୁଖୀନ ହେଲେ । ଅବଶ୍ୟ ଏହା ହେବା ବେଳକୁ ସେ କିଛି ଜାଣିପାରୁନଥିଲେ ।

ଦୀର୍ଘ ୮୦ ବର୍ଷ ପର୍ଯ୍ୟନ୍ତ ଓଡିଶାର ରାଜନୈତିକ, ସାହିତ୍ୟ, ସାଂବାଦିକତା ଏବଂ ମାନବିକତାର ଦିଗବଳୟରେ ଯେଉଁ ସୂର୍ଯ୍ୟ ଉଦିତ ହୋଇ କିରଣ ପ୍ରଦାନ କରିଚାଲିଥିଲେ ସେ ଏବେ ଅସ୍ତାଚଳଗାମୀ ହେବାକୁ ଆରମ୍ଭ କରିଥିଲେ । ସମାଜ ସବୁବେଳେ ଉଦୟଭାନୁର ଆରାଧନା କରିଥାଏ ଏବଂ ଅସ୍ତାଚଳମୁଖୀ ସୂର୍ଯ୍ୟର ପୂଜା କ୍ୱଚିତ କ୍ଷେତ୍ରରେ କରାଯାଇଥାଏ । ରାଧାନାଥ ବାବୁ କିନ୍ତୁ ଏପରି ଏକ ମାର୍ତ୍ତଣ୍ଡ ଥିଲେ ଯାହାକୁ ଏଡାଇଦେଇ ସମାଜ ଏବଂ 'ସମାଜ' ଆଗେଇଯିବା ସଂଭବ ନଥିଲା । ଏହା କିନ୍ତୁ ସତ୍ୟ ଯେ ନିଜର ଧିଶକ୍ତି ନିମନ୍ତେ ଯିଏ ବିସ୍ମୟ ଥିଲେ, ସେ ଏବେ ସବୁ କଥାକୁ ଭୁଲିଯାଉଥିଲେ । ତେବେ ଗୋଟିଏ କଥାକୁ ସେ ଭୁଲି ନଥିଲେ । ତାହା ହେଉଛି ଯାହାକୁ ଦେଖୁଥିଲେ ପ୍ରଶ୍ନ କରୁଥିଲେ ଖାଇଛ ? ସମସ୍ତଙ୍କୁ ପାଖକୁ ଡାକୁଥିଲେ । 'ସମାଜ'ର ପୋର୍ଟିକୋରେ ବସି କର୍ମଚାରୀମାନେ ଯିବା ବେଳେ ସେମାନଙ୍କୁ ଦେଖୁଥିଲେ । କାହାକୁ କାହାକୁ ଡାକୁଥିଲେ । ତାଙ୍କ ଡାକରାକୁ ଏଡାଇଦେଇ ଚାଲିଯିବାର ସାହସ କାହାରି ନଥିଲା । କାରଣ

ବାସ୍ତବରେ ସେ ଥିଲେ ତାଙ୍କର କର୍ମଚାରୀଙ୍କର ଅନ୍ନଦାତା । ରାଧାନାଥ ବାବୁ ରାଗିଗଲେ ଗାଳି ଦେଉଥିଲେ । ଅତି କଠୋର ଭାଷା ପ୍ରୟୋଗ କରୁଥିଲେ । ଏପରିକି ଅନେକଙ୍କୁ ଗଳାଧକ୍କା ମଧ୍ୟ ଦେଇଛନ୍ତି । କିନ୍ତୁ କାହାରି ପେଟକୁ ନାତ ମାରିନଥିଲେ । ବରଂ ବାବୁଜୀ ରାଗିଲେ କାମ ହୋଇଯାଉଥିଲା । ଚଳତଶକ୍ତି ଥିବା ପର୍ଯ୍ୟନ୍ତ ସେ କାହାରିକୁ ନିଜ ଶରୀରର ଦୁର୍ବଳତା ସଂପର୍କରେ ସୂଚନା ମଧ୍ୟ ଦେଉନଥିଲେ । ତାଙ୍କର ମନୋବଳ ଅତି ପ୍ରଚଣ୍ଡ ଥିଲା । ତାଙ୍କର ଈଶ୍ୱର ହେଉଛି କର୍ମ । ସେ ଥିଲେ ଓଡିଶାର ଜୀବନ୍ତ ଇତିହାସ । ସେ ଥିଲେ କର୍ମଚାରୀଙ୍କ ନିମନ୍ତେ ପିତା । ଓଡିଶାର ମୁରବୀ । ୧୯୯୮ ମସିହା ଫେବୃୟାରୀ ୧୧ ତାରିଖ ଦିନ ଏହି ଉଦିତ ସୂର୍ଯ୍ୟ ସମୟର ବେଳାଭୂମିରେ ଅସ୍ତ ହୋଇଗଲେ ।

## ନିଜର ଅନୁଭୂତି

୧୯୭୮ ମସିହା ଅକ୍ଟୋବର ୧୮ ତାରିଖରେ ମୁଁ 'ସମାଜ'ରେ ଜଣେ ଅସ୍ଥାୟୀ କର୍ମଚାରୀ ଭାବେ ଯୋଗଦେଲି । ମୋର ଓଡିଆ ଭାଷା ଉପରେ ବିଶେଷ ଜ୍ଞାନ ନଥିଲା । ବନାନ ଭୁଲ୍ ପ୍ରବଳ ହେଉଥିଲା । ତେଣୁ ପ୍ରୁଫ ବିଭାଗରେ କାମ କରି ମୁଁ ବନାନ ଶୁଦ୍ଧି ଶିଖିବାର ସୁଯୋଗ ପାଇଲି । ତେବେ ୧୯୮୦ ମସିହା ଅଗଷ୍ଟ ମାସରେ ସଂପାଦକୀୟ ବିଭାଗରେ କାମ କରିବା ନିମନ୍ତେ ଆଉ ଏକ ସୁଯୋଗ ମତେ ମିଳିଲା । ସେହି ସମୟରେ ସଂପାଦକୀୟ ବିଭାଗର କିଛି ବରିଷ୍ଠ କର୍ମଚାରୀ ଛୁଟିରେ ଯାଇଥିବାରୁ ସେମାନଙ୍କ ସ୍ଥାନରେ କାମ କରିବାପାଇଁ ବାର୍ତ୍ତା ସଂପାଦକ ପାଣି ବାବୁଙ୍କୁ କହି ବାବୁଜୀ ମତେ ଡକାଇଲେ । ଦେଶ ବିଦେଶ ସଂପର୍କରେ ମୋର ଜ୍ଞାନ ଥିବାର କଥା ମୁଁ ୟୁନିଭର୍ସରେ ତାଙ୍କ ସହିତ କାମ କଲାବେଳେ ସେ ଜାଣିଥିଲେ । କାରଣ ସେ ୟୁନିଭର୍ସର ଅଧ୍ୟକ୍ଷ ଥିବା ବେଳେ ମୁଁ ସହ ସଂପାଦକଭାବେ କାମ କରୁଥିଲି । ୟୁନିଭର୍ସ କାମରେ ଗିରିଜାବାବୁ ମତେ ସବୁ କଥାରେ ଗୁରୁତ୍ୱ ଦେଉଥିବା ସେ ଦେଖୁଥିଲେ ଏବଂ ବୋଧେ ମୋ

ବିଷୟରେ ସେ ଗିରିଜା ବାବୁଙ୍କ ସହିତ ଆଲୋଚନା ମଧ୍ୟ କରିଥିଲେ । ତାହା ହୋଇନଥିଲେ କେବଳ ସ୍ୱାମୀ ରଂଗନାଥଙ୍କ ଚିଠି ପାଇ ମତେ ସେ 'ସମାଜ'ରେ ରଖିନଥିବେ। ସଂପାଦକୀୟ ବିଭାଗରେ ଦୁଇ ଚାରିଦିନ କାମ କରିବାପରେ ଦିନେ ଅଫିସରେ ବସିଛି । ଏହି ସମୟରେ ଦୂତିଆ ପଣ୍ଡା (ପିଅନ) ଆସି ମତେ କହିଲେ 'ବାବୁଜୀ ଡାକୁଛନ୍ତି । ଉପରକୁ ଆସନ୍ତୁ ।' ମୁଁ ତାଙ୍କ ପାଖରେ ପହଞ୍ଚିବାପରେ ଦେଖିଲି ଫତେଇ ଏବଂ ଗାମୁଛା ପିନ୍ଧି ବାବୁଜୀ ବସିଛନ୍ତି । ମତେ ଦେଖିବାମାତ୍ରେ କହିଲେ ଲେଖ । ମୁଁ କାଗଜ ନେଇନଥିବା କଥା କହିବାରୁ ସେ ସାମନ୍ୟ ବିରକ୍ତ ହୋଇ କହିଲେ କାଗଜ ନନେଇ କାହିଁକି ଚାଲିଆସିଲ । ତଳକୁ ଆସି କାଗଜ ନେଇକରି ଗଲି ଏବଂ ସେ ଏକ ସଂବାଦ ଡାକିଲେ । ପ୍ରାୟ ଗୋଟିଏ ଫର୍ଦ୍ଦ ଡାକିବାପରେ ସେ କହିଲେ କଣ ଲେଖିଛ ଦେଖାଅ । ମୋ ଅକ୍ଷର ଦେଖି ସେ ରାଗି ଅଗ୍ନିଶର୍ମା ହୋଇଗଲେ। କହିଲେ ତୁମର ଅକ୍ଷର ଏତେ ଖରାପ ଜାଣିଥିଲେ ତୁମକୁ କଦାପି ରଖି ନଥାଆନ୍ତି। ମୁଁ ଉତ୍ତର ଦେଲି ଅକ୍ଷର ଖରାପ ସହିତ ଜ୍ଞାନର କୌଣସି ସଂପର୍କ ନାହିଁ । ଆଇନଷ୍ଟାଇନ ଏବଂ ଚର୍ଚ୍ଚିଲଙ୍କ ଅକ୍ଷର ବହୁତ ଖରାପ ଥିଲା ବୋଲି ପଢିଛି। ସେମାନେ କଣ ମୁର୍ଖ ଥିଲେ ? ମୋ ଠାରୁ ଏହା ଶୁଣିବାପରେ ସେ କହିଲେ ହଉ ଯାଅ । ତୁମର ସଂବାଦ ଲେଖା ସରିଗଲା । ମୁଁ ମଧ୍ୟ ରାଗିକରି ତଳକୁ ଚାଲି ଆସିଲି। ସବୁଠାରୁ ମଜାର କଥା ହେଉଛି ଯେ ସେ ଯାହା ସବୁ ଡାକିଥିଲେ ମୁଁ ସେସବୁରୁ କିଛି ଲେଖି ଆଉ ସବୁ ନିଜ ମନରୁ ଲେଖିପକାଇଥିଲି । ତେଣୁ ସେ ମତେ ଫେରାଇଦେବାରେ ମୁଁ ଭିତରେ ଭିତରେ ଖୁସୀ ଥିଲି । ମତେ ଅପମାନ କରି କହିବାରୁ ମୁଁ ରାଗିଯାଇଥିଲି । ପାଣିବାବୁ ମୋ ମୁହଁ ଦେଖି ଜାଣିଗଲେ କିଛି ଅପ୍ରୀତିକର ଘଟଣା ଘଟିଗଲା ଏବଂ ମୋର ଚାକିରୀ ବୋଧେ ସରିଗଲା । ତାହା ପରେ ମତେ ସେ ଅନ୍ୟ ସଂବାଦ ଦେଲେ ଲେଖିବାକୁ, ମୁଁ ମଧ୍ୟ ଲେଖିଲି। ମୋର ଚାକିରୀ ଗଲା ନାହିଁ । ଏହାର କିଛିଦିନ ପରେ ଡି.କେ.ଯୋଷୀଙ୍କର ଏକ ଇଂରାଜୀ ଲେଖାକୁ ଅନୁବାଦ

କରିବାକୁ ମୋର ନାମ ଲେଖି ବାବୁଜୀ ପଠାଇଦେଲେ । ପାଣି ବାବୁ ମତେ ଲେଖାଟି ଧରାଇଦେଲେ ଏବଂ କହିଲେ ମନ ଦେଇ କରିବୁ । ଲେଖାଟିକୁ ଅନୁବାଦ କରିବାପାଇଁ ପ୍ରାୟ ଏକଘଣ୍ଟା ଲାଗିଗଲା । ପାଣିବାବୁ ତାହାକୁ ନପଢି କମ୍ପୋଜ ନିମନ୍ତେ ପଠାଇଦେଲେ । କମ୍ପୋଜ ହୋଇ ଆସିବାପରେ ଲେଖାଟିକୁ ସିଧା ବାବୁଜୀଙ୍କ ପାଖକୁ ପଠାଇଦେଲେ । କିଛି ସମୟପରେ ବାବୁଜୀଙ୍କୁ ଦେଖାକରିବାକୁ ଡାକରା ଆସିଗଲା । ପାଣିବାବୁ କହିଲେ ବାବୁଜୀ ଗାଳିଦେବାକୁ ଡାକିଛନ୍ତି । ମୁହଁ ଉପରେ ଉତ୍ତରଦେବୁ ନାହିଁ । ମୁଁ ଅବଶ୍ୟ ଡରିଡରି ଯାଇ ତାଙ୍କ ସମ୍ମୁଖରେ ଠିଆ ହେଲି । ସେ ବସିବାକୁ କହିଲେ ଏବଂ ତାଙ୍କ ଥାଳିଆରୁ ବିସ୍କୁଟ ଏବଂ କଦଳି ନେଇ ଖାଇବାକୁ କହିଲେ । କିଛି ସମୟ ପରେ କହିଲେ ହଜାର ପାୱାର ବଲବକୁ ଯଦି ଘୂରାଯାଏ ତେବେ ସେଥିରୁ ବାହାରୁ ଥିବା ଆଲୋକରେ ପଢି ହୁଏ ନାହିଁ । କିନ୍ତୁ ୨୫ ପାୱାର ବଲବ ଯଦି ସ୍ଥିର ରହେ ତେବେ ସେଥିରୁ ବାହାରୁ ଥିବା ଆଲୁଅରେ ପଢିହୁଏ । ତେଣୁ ତୁମେ ହଜାର ପାୱାର ବଲବ ନହୋଇ ୨୫ ପାୱାର ବଲବ ହୋଇ ଆଲୋକ ଦିଅ । ସେଥିରେ ତୁମର ଭଲ ହେବ । ଏହା କହିଲେ ଏବଂ ଲେଖାଟି ଛାପିବାପାଇଁ ଅନୁମତି ଦେଇ ମୋ ହାତରେ ପଠାଇଦେଲେ । ମୁଁ ତଳକୁ ଆସିବା ପୂର୍ବରୁ ପାଣିବାବୁ ଉପରେ କଣ ସବୁ ହେଉଛି ତାହା ଦୁତିଆ ପଣ୍ଡାଙ୍କୁ ପଚାରି ବୁଝିନେଇଥିଲେ । ତେଣୁ ମୁଁ ଆସିବା ମାତ୍ରେ ସେ ଖୁସୀ ହୋଇ କହିଲେ କଣ ସବୁ ଠିକ ହେଲା ତ ? ମୁଁ ପଚାରିଲି ଆପଣ ଲେଖାଟି ନିଜେ ନପଢି ବାବୁଜୀଙ୍କ ପାଖକୁ କିପରି ପଠାଇଦେଇଥିଲେ ? ପାଣି ବାବୁ କହିଲେ ଆରେ ମୁଁ ପ୍ରୁଫ ବିଭାଗରେ ତୋ ଲେଖା ପଢି ଯାହା କିଛି କରାଯିବା କଥା କରିଦେଇଥିଲି । ଆଉ ତୋ ଆଗରେ ପଢିଥିଲେ କଣଟା ହୋଇଥାଆନ୍ତା । ମୁଁ କିନ୍ତୁ ଖୁସୀ ହେଲି ଯେ ମୋ ଅକ୍ଷର ଖରାପ ମତେ ବାବୁଜୀଙ୍କ ପାଖରୁ ଗାଳି ଖାଇବାରୁ ରକ୍ଷା କରିଦେଲା ଏବଂ ନିଜେ କିଛି କରିପାରିବାର ସୁଯୋଗ ମିଳିଲା । ଏହାପରେ ୧୯୮୦ରୁ ଯୋଷୀ ବାବୁ ଯେତେ ଲେଖା ପଠାଇଲେ ସେସବୁକୁ ମୁଁ ଅନୁବାଦ କଲି

ଏବଂ ଏପରି ମଧ୍ୟ ହେଲା ଯେ ଅନେକ ସମୟରେ ଯଦି ହଠାତ୍ କିଛି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଘଟଣା ଦେଶରେ କିମ୍ବା ରାଜ୍ୟକୁ କେନ୍ଦ୍ରକରି ଘଟୁଥିଲା ତେବେ ମୁଁ ନିଜେ ଲେଖି ତାଙ୍କ ନାମରେ ସେହି ଲେଖାକୁ ଛାପିଦେଉଥିଲି । ଅବଶ୍ୟ ଏସଂପର୍କରେ ଲେଖା କମ୍ପୋଜପାଇଁ ପଠାଇବା ପୂର୍ବରୁ ତାଙ୍କର ଅନୁମତି ନେଉଥିଲି । ମୁଁ ଯୋଷୀଙ୍କ ଲେଖା ଅନୁବାଦ କରିବା ପୂର୍ବରୁ ଭାଇ ବିଶିବାବୁ ତାହା କରୁଥିଲେ । ଦ୍ୱିତୀୟ ଦିନ ମୁଁ ଯେତେବେଳେ ଯୋଷୀ ବାବୁଙ୍କ ଲେଖା ଅନୁବାଦ କରିବାକୁ ବସିଲି ସେ ପାଣି ବାବୁଙ୍କୁ କହିଲେ ସେ ପିଲା କଣ ଯୋଷୀଙ୍କ ଲେଖାକୁ ଠିକ୍ ଭାବେ ବୁଝି ଅନୁବାଦ କରିପାରିବ ? କାରଣ ଯୋଷୀବାବୁ ଯେଉଁ ଲେଖା ପଠାଉଥିଲେ ସେଥିରେ ଜାତୀୟ ଏବଂ ରାଜ୍ୟର ରାଜନୈତିକ ବ୍ୟାପାରର ବିଶ୍ଳେଷଣମାନ ରହୁଥିଲା । ପାଣି ବାବୁ କହିଲେ ସେ କରିବା ପରେ ଆପଣଙ୍କୁ ଦେଖାଇବି । ମୋର ଅନୁବାଦ ପାଠ କରି ବିଶିବାବୁ ମଧ୍ୟ ଖୁସୀ ହୋଇଗଲେ ଏବଂ କହିଲେ ଯାହା ହେଉ ଗୋଟାଏ ଦାୟିତ୍ୱ ଗଲା । କାରଣ ଯୋଷୀ ବାବୁ ଯେଉଁ ପାଠ ପଠାଉଥିଲେ ତାହାକୁ ସେ ଅନୁବାଦ କରୁଥିଲେ । ବେଳେବେଳେ ଭଗବାନ ବାବୁ କରୁଥିଲେ ।

ବାବୁଜୀଙ୍କର ମୋ ଉପରେ ବିଶ୍ୱାସ ହେବାର ମୁଖ୍ୟ କାରଣ ହେଉଛି ୟୁନିଭର୍ସରେ ତାଙ୍କ ଉପସ୍ଥିତିରେ ଗିରିଜା ବାବୁ, ଚିଉଭାଇ ଏବଂ ଅନ୍ୟମାନେ ଯେତେବେଳେ ଦେଶ ବା ରାଜ୍ୟର ବିଷୟରେ ଆଲୋଚନା କରୁଥିଲେ ସେଥିରେ ମୁଁ ସକ୍ରିୟ ଭୂମିକା ଗ୍ରହଣ କରୁଥିଲି । ସାହିତ୍ୟ, ରାଜନୀତି ଏବଂ ଭୌଗୋଳିକ ପରିସ୍ଥିତି ଉପରେ ଆଲୋଚନା ବେଳେ ମୁଁ ମୋର ମତକୁ ଦୃଢତାର ସହ ଉପସ୍ଥାପିତ କରୁଥିଲି । ବାବୁଜୀ ସବୁ ଶୁଣୁଥିବେ; କିନ୍ତୁ କିଛି ମତାମତ ଦେଉନଥିବେ । ଆଉ ଏକ ଘଟଣା ହେଉଛି ସୋଭିଏତ ରୁଷିଆର ବହୁ ଲେଖା ସେତେବେଳେ 'ସମାଜ'ରେ ଛପା ଯାଉଥିଲା । ଗିରିଜା ବାବୁଙ୍କ ନିର୍ଦ୍ଦେଶରେ ସେଥିରୁ ଅଧିକାଂଶ ମୁଁ ଅନୁବାଦ କରୁଥିଲି । ଏକଥା

ବାବୁଜୀ ଜାଣିଥିଲେ । ଓଡିଆ ଭାଷାର ସଠିକ ବ୍ୟବହାର ଉପରେ ସେ ସବୁବେଳେ ଗୁରୁତ୍ୱ ଦେଉଥିଲେ । 'ସମାଜ'କୁ ପାଠ କଲାବେଳେ ପାଠକ ଯେପରି ନିଛକ ଓଡିଆ ଭାଷାକୁ ପାଠ କରିବ ସେଥିପ୍ରତି ସେ ଧ୍ୟାନ ଦେଉଥିଲେ । ମୋର ମନେ ଅଛି ସେ ରାଜ୍ୟ ସରକାରଙ୍କ ଦୁର୍ନୀତି ସଂପର୍କରେ ଗୋଟିଏ ସଂବାଦ ପ୍ରସ୍ତୁତ କରିବାପାଇଁ ଇଂରାଜୀ ଭାଷାରେ ଲେଖାଯାଇଥିବା କେତେକ ତଥ୍ୟ ଦେଇଥିଲେ । ସେସବୁକୁ ଏକାଠି କରି ମୁଁ ସଂବାଦଟିଏ ପ୍ରସ୍ତୁତ କରି କଂପୋଜ କରିବାପରେ ତାହାକୁ ନେଇ ବାବୁଜୀଙ୍କୁ ଦେଲି । ସେ ପଢିଲେ ଏବଂ ସେଥିରେ ମୁଁ ମେ ଏବଂ ଏପ୍ରିଲ ମାସ ଲେଖିଥିଲି । ସେ ତାହାକୁ କାଟି ମଇ ଏବଂ ଅପ୍ରେଲ ମାସ କରିବାରୁ ମୁଁ କହିଲି ମୁଁ ତ ଠିକ୍ ଲେଖିଥିଲି । ଆପଣ ତାହାକୁ କାଟି ଅପ୍ରେଲ ମଇ କାହିଁକି କଲେ । ବାବୁଜୀଙ୍କ ଉତ୍ତର ଥିଲା ମେ ଏବଂ ଏପ୍ରିଲ ହେଉଛି ଇଂରାଜୀ ଶବ୍ଦ । ଓଡିଶାର ଗାଁ ଗଣ୍ଡାରେ ଲୋକେ ମଇ ଏବଂ ଅପ୍ରେଲ ମାସ କୁହନ୍ତି । ଗୋପବନ୍ଧୁ ଦାସ ଅପ୍ରେଲ ଏବଂ ମଇ ମାସ ଲେଖୁଥିଲେ । ଏହା ହେଉଛି ସମାଜର ଭାଷା । ଏହା ପରଠାରୁ ମୋର ଲେଖାରେ ମୁଁ ଇଂରାଜୀ ଶବ୍ଦର ବ୍ୟବହାର ଯେପରି ନହେବ ତାହା ଉପରେ ଦୃଷ୍ଟି ରଖିଲି । କେତେଦୂର ସଫଳ ହୋଇଛି ତାହା ପାଠକମାନେ ଜାଣନ୍ତି । ବର୍ତ୍ତମାନ ଆମ ରାଜ୍ୟର କୌଣସି ସଂବାଦପତ୍ରରେ ଆଉ ନିଛକ ଓଡିଆ ଶବ୍ଦ ପାଇବା ସଂଭବ ହେଉନାହିଁ । ଏବେ ଯାହା ପ୍ରକାଶ ପାଉଛି ତାହାକୁ ଇଂରାଜୀର ଓଡିଆ ସଂସ୍କରଣ କହିବା ବୋଧେ ଯଥାର୍ଥ ହେବ । ପ୍ରତି ଶବ୍ଦର ବ୍ୟବହାର ଉପରେ ବାବୁଜୀ ମଧ୍ୟ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ମୁଁ ମୁଖ୍ୟତଃ ରାଜନୈତିକ ଲେଖାମାନ ଲେଖୁଥିବାରୁ ଅନେକ ସମୟରେ ଦ୍ୱନ୍ଦ୍ୱାତ୍ମକ ଲେଖା ବି ଲେଖୁଥିଲି । ତେଣୁ ପାଣି ବାବୁ ତାହାକୁ କଂପୋଜ କରାଇବା ପରେ ଛାପିବାପାଇଁ ଦେବା ପୂର୍ବରୁ ବାବୁଜୀଙ୍କ ପାଖକୁ ସ୍ୱୀକୃତି ନିମନ୍ତେ ପଠାଇଦେଉଥିଲେ । କାରଣ ଅନେକ ସମୟରେ ସେ ମୋର କିଛି ଜଟିଳ ଲେଖାକୁ କେନ୍ଦ୍ରକରି ପାଣିବାବୁଙ୍କୁ ନିଜର ଅସନ୍ତୋଷ ଜଣାଇଛନ୍ତି ଏବଂ ମତେ ମଧ୍ୟ ଗାଳି ଦେଇଛନ୍ତି । ତେଣୁ କିଛି ଦ୍ୱନ୍ଦ୍ୱର ଗନ୍ଧ

ଥିଲେ ପାଣି ବାବୁ ମତେ ନଜଣାଇ ଲେଖାଟିକୁ ବାବୁଜୀଙ୍କ ନିକଟକୁ ପଠାଇଦେଉଥିଲେ । ଯଦି ଲେଖାରେ କିଛି ଯୋଡିବାକୁ ଥାଏ ଏବଂ ବାଦ୍ ଦେବାକୁ ଥାଏ ତେବେ ବାବୁଜୀ ମତେ ଡାକି ସଂଶୋଧନ କରାନ୍ତି କିମ୍ବା ନିଜେ ସଂଶୋଧନ କରି ପଠାଇଦିଅନ୍ତି । କିଛିଦିନ ପରେ ଆଉ ଏହା ହେଲା ନାହିଁ । ବୋଧେ ମୋ ଉପରେ ତାଙ୍କର ବିଶ୍ୱାସ ଆସିଯାଇଥିଲା । ଏପରି ମଧ୍ୟ ହୋଇଛି ଯେ ମୋ ଠାରୁ ବରିଷ୍ଠ ସାଂବାଦିକ ଯଦି କିଛି ସରକାରୀ ବିରୋଧୀ ସଂବାଦ ଲେଖୁଥିଲେ ତେବେ ତାହା ବାବୁଜୀଙ୍କ ପାଖକୁ ପଠାଇବା ପୂର୍ବରୁ ପାଣି ବାବୁ ସେହି ଲେଖାକୁ ଦେଖି ଉପଯୁକ୍ତ ସଂଶୋଧନ କରିବାକୁ ମତେ କହୁଥିଲେ ।

୧୯୮୩ ମସିହାର କଥା । ଜାନକୀ ବାବୁଙ୍କ ମନ୍ତ୍ରିମଣ୍ଡଳରେ ସଦସ୍ୟ ଥିବା ନିରଜଂନ ପଟ୍ଟନାୟକ ଏବଂ ସୁପର ମୁଖ୍ୟମନ୍ତ୍ରୀ ବୋଲାଉଥିବା ବସନ୍ତବାବୁଙ୍କ ମଧ୍ୟରେ ପ୍ରଭାବ ବିସ୍ତାରକୁ କେନ୍ଦ୍ରକରି ପ୍ରତିଯୋଗିତା ଚାଲିଥାଏ । ତାହାକୁ କେନ୍ଦ୍ରକରି ମୁଁ ସଂବାଦଟିଏ ପ୍ରସ୍ତୁତ କରିଥିଲି । ପାଣି ବାବୁ ତାହାକୁ ବାବୁଜୀଙ୍କ ସ୍ୱୀକୃତି ନିମନ୍ତେ ପଠାଇଦେଲେ । ବାବୁଜୀ କିଛି ସମୟପରେ ମତେ ଡାକିଲେ ଏବଂ କହିଲେ ପ୍ରଭାବ ବିସ୍ତାର ନିମନ୍ତେ ଦୁଇ ମନ୍ତ୍ରୀଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଉଛି ନା ପ୍ରତିଯୋଗିତା ହେଉଛି ? ମୁଁ କହିଲି ପ୍ରତିଯୋଗିତା ଯାହା ପ୍ରତିଦ୍ୱନ୍ଦ୍ୱିତା ବି ତାହା, ତେଣୁ ଭୁଲ କଣହେଲା ? ସେ କହିଲେ ସେମାନେ କ୍ଷମତା ବିସ୍ତାର ନିମନ୍ତେ ପରସ୍ପର ସହିତ ଦ୍ୱନ୍ଦ୍ୱ କରୁଛନ୍ତି । ତେଣୁ ପ୍ରତିଯୋଗିତା ନୁହେଁ ପ୍ରତିଦ୍ୱନ୍ଦ୍ୱିତା ଶବ୍ଦର ବ୍ୟବହାର ଯଥାର୍ଥ ହେବ । ଯେଉଁଠି ଦ୍ୱନ୍ଦ୍ୱ ନଥାଏ ସେଠାରେ ପ୍ରତିଯୋଗିତା ଶବ୍ଦର ବ୍ୟବହାର କରାଯାଏ । ବାସ୍ ତାହା ପରେ ଏହି ଦୁଇ ଶବ୍ଦର ଅପବ୍ୟବହାର ବୋଧେ ମୁଁ ଆଉ କେବେ କରିନାହିଁ ବୋଲି ଭାବୁଛି । ଏବେ ଖେଳ ସଂବାଦ ପରିବେଷଣରେ ସଂବାଦ ଲେଖିବାବେଳେ ଆମ ସାଂବାଦିକମାନେ ହାରିଯାଇଥିବା ପକ୍ଷକୁ ମାଟି କାମୁଡିଲା, ଚିତ୍‌ପଟାଙ୍ଗ ଆଦି କିକି ଶବ୍ଦ ସବୁର

ଯେ ବ୍ୟବହାର କରୁଛନ୍ତି ତାହା ଭାବିବା ବେଳକୁ ଲଜ୍ଜ୍ୟା ଲାଗୁଛି । ଖେଳ ସଂବାଦରେ ପ୍ରତିଦ୍ୱନ୍ଦ୍ୱିତା ବଦଳରେ ପ୍ରତିଯୋଗିତା ଲେଖାଯିବା ଯଥାର୍ଥ । କାରଣ ଖେଳରେ ଦ୍ୱନ୍ଦ୍ୱର ସ୍ଥାନ ନଥାଏ । ଖେଳରେ ଜିତିବା ଏବଂ ହାରିବାପାଇଁ ଖେଳାଯାଏ । ଖେଳରେ ଜିତିବା ଏବଂ ହାରିବା ଉଭୟରେ ମର୍ଯ୍ୟାଦା ରହିଛି । ଏବର ସାଂବାଦିକ ବାବୁମାନେ ଏହା କିନ୍ତୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । ସେମାନଙ୍କ ଭାଷାରେ ସଂବାଦକୁ ଜବରଦସ୍ତ କରିବାକୁ ପଡିବ । ସେମାନଙ୍କର ଏହି କଥା ଶୁଣି ହସ ଏବଂ ଦୁଃଖ ଲାଗେ । ଏସବୁ ପାଠକଲାବେଳେ ଲାଗୁଛି ନବ୍ୟ ସାଂବାଦିକମାନେ ଭାଷାକୁ ସତେ ଯେପରି ଧର୍ଷଣ କରୁଛନ୍ତି । ସେମାନେ ଭାବୁ ନାହାଁନ୍ତି ଯେ ଗୋଟିଏ ଶବ୍ଦ ସୃଷ୍ଟି ହେବାଲାଗି କେତେ ଦଶନ୍ଧି ବା ଶତାବ୍ଦୀ ଲାଗିଯାଇଥିବ । ସେମାନେ ଏହାର ଅପପ୍ରୟୋଗ କରି ଶବ୍ଦଟିକୁ ହତ୍ୟା କରୁ ନାହାଁନ୍ତି କି ? ଯଦି ବାବୁଜୀ ଥାଆନ୍ତେ ତେବେ ତାଙ୍କ 'ସମାଜ'ରେ ବାବୁମାନେ ଯେପରି ଶବ୍ଦର ବ୍ୟବହାର ଅନେକ ସମୟରେ କରୁଛନ୍ତି ତାହାକୁ ସହ୍ୟ କରୁଥାଆନ୍ତେକି ? 'ସମାଜ'ର ଲେଖାରେ ଆଉ ଶବ୍ଦର ଯଥାର୍ଥ ପ୍ରୟୋଗ କରାଯାଉନାହିଁ । ପାଠକର ଧ୍ୟାନ ଆକର୍ଷଣ କରିବାପାଇଁ ଶବ୍ଦର ଘୋର ଅପପ୍ରୟୋଗ ହେଉଥିବା ଦେଖାଯାଉଛି । ବାବୁଜୀଙ୍କର କଡା ନିର୍ଦ୍ଦେଶ ଥିଲା ଯେ 'ସମାଜ'ର ପ୍ରଥମ ପୃଷ୍ଠାରେ ହତ୍ୟାକାଣ୍ଡ,ଧର୍ଷଣ ଭଳି ନକାରାତ୍ମକ ସଂବାଦ କଦାପି ବସିବ ନାହିଁ । ଏବେ ସେହି ସବୁ ସଂବାଦକୁ ଅଗ୍ରାଧିକାର ଦେଇ ପ୍ରଥମ ପୃଷ୍ଠାରେ ବସା ଯାଉଛି । ବାବୁଜୀଙ୍କ ମତରେ ସଂବାଦପତ୍ର ହେଉଛି ପରିବାରର ଏକ ନିତ୍ୟପାଠ୍ୟ ପୁସ୍ତକ । ପରିବାରର ସମସ୍ତ ସଦସ୍ୟ ଏହାକୁ ପାଠ କରନ୍ତି । ତେଣୁ ଦୈନନ୍ଦିନ ଘଟଣା ସଂପର୍କରେ ଏଥିରେ ସୂଚନା ଦେବା ବେଳେ ଭାଷାରେ ସଂଜମ ରହିବା ନିହାତି ଆବଶ୍ୟକ । ଏବେ କେବଳ ତପନ ମିଶ୍ରଙ୍କ ବ୍ୟତୀତ 'ସମାଜ'ର ସଂପାଦକୀୟ ବିଭାଗରେ ବୋଧେ ବାବୁଜୀଙ୍କ ସମୟର ଆଉ କେହି ସାଂବାଦିକ ନାହାଁନ୍ତି । ବାବୁଜୀ

ସଂପାଦକୀୟ ହେଉ ବା ସଂବାଦ ହେଉ ଯାହା ଲେଖୁଥିଲେ କେବେ କାହାରି ବିରୋଧରେ ଲେଖୁନଥିଲେ । ଘଟଣାଟି ପାଠକ ସମ୍ମୁଖରେ ରଖୁଥିଲେ। ତେଣୁ ଏଥିରେ ବିରୋଧ କିମ୍ବା ସମର୍ଥନର ପ୍ରଶ୍ନ ଉଠୁନାହିଁ । ଏବର ସାଂବାଦିକମାନେ ସଂବାଦ ଲେଖିବା ବେଳେ କହୁଛନ୍ତି 'ଦେଇଛି ନାଛି' ଅର୍ଥାତ ନିଜର କ୍ରୋଧକୁ ସେହି ସାଂବାଦିକ ନିଜ ଲେଖାମାଧ୍ୟମରେ ପ୍ରକାଶ କରିଛନ୍ତି। ଏହା କଦାପି ସଂବାଦ ପଦବାଚ୍ୟ ହେବ ନାହିଁ । ଏହାକୁ ଗାଳି କୁହାଯିବ । ଏବେ ସଂବାଦପତ୍ରମାନଙ୍କରେ ଗାଳି ବେଶୀ ପ୍ରକାଶ ପାଉଛି । ସଂବାଦପତ୍ରମାନେ ଘଟଣା ଜଣାଇବା ପରିବର୍ତ୍ତେ ନିଜର ମତକୁ ପାଠକ ଉପରେ ଲଦି ଦେବାକୁ ଉଦ୍ୟମ କରୁଛନ୍ତି ।

ବାବୁଜୀଙ୍କର ଆଉ ଏକ ଗୁଣ ଥିଲା ସେ କ୍ଷଣକୋପୀ । ଯଦି ଆମ ଭିତରୁ କେହିବି ଏପରି କିଛି ସଂବାଦ ଦେଇଥାଆନ୍ତି ଏବଂ ତାହା 'ସମାଜ'ର ସମ୍ମାନ ହାନି କରିବା ଭଳି ହୋଇଛି ବୋଲି ସେ ଉପଲବ୍ଧି କରୁଥିଲେ ତେବେ ସେହି ସାଂବାଦିକଙ୍କ ଭାଗ୍ୟରେ ଶନି ସିଧାଯାଇ ବସିଯାଉଥିଲେ । ଏପରି କ୍ଷେତ୍ରରେ ସେ ସଂପୃକ୍ତ ବ୍ୟକ୍ତିଙ୍କୁ ଡାକୁଥିଲେ ଏବଂ ତାଙ୍କର ପ୍ରଥମ ପ୍ରଶ୍ନ ହେଉଥିଲା 'ସମାଜ'ର ସଂପାଦକ କିଏ ? ତୁମେ ନା ମୁଁ ।'ଏହାପରେ ଅନ୍ୟଯାହା ସବୁ ଗାଳି ପଡୁଥିଲା । ମୋ ଉପରେ ସେପରି ଏକ ଗାଳି ଥରେ ପଡିଥିଲା । ଅବଶ୍ୟ ମୋର ସଂବାଦଟି ଛପା ହୋଇନଥିଲା । ଲେଖାଯିବାପରେ ବାବୁଜୀଙ୍କ ସ୍ୱୀକୃତି ନିମନ୍ତେ ଯାଇଥିଲା । ବାବୁଜୀ ତାହା ପାଠ କରି ମତେ ଡକାଇଲେ ଏବଂ ମନ ଇଚ୍ଛା ଗାଳି ଦେଇ କହିଲେ 'ସମାଜ'ର ସଂପାଦକ କିଏ ? ମୁଁ ନୀରବ ହୋଇ ଠିଆ ହୋଇଥାଏ । କାରଣ ମୁଁ ତ ସେପରି କିଛି ଭୁଲ ଲେଖିନାହିଁ । ଗାଳି କାହିଁକି ହେଉଛି । ମୁଁ ଏହା ଭାବୁଥିବା ବେଳେ ବାବୁଜୀ ମୁଁ ଲେଖିଥିବା ସଂବାଦଟି ପଢିଲେ । ସେଥିରେ ଲେଖାଥିଲା ସଭାପରେ ପ୍ରଭାବଶାଳୀମନ୍ତ୍ରୀ ( ସଂବାଦରେ ମୁଁ ମନ୍ତ୍ରୀଙ୍କ ନାମ ଏବଂ ସାଂସଦଙ୍କ ନାମ ଲେଖିଥିଲି) ଏବଂ ଜଣୈକା ସାଂସଦ ଗୋଟିଏ ଗାଡିରେ ଫେରିବା ପ୍ରମାଣ

ଦିଏ ଯେ ସେମାନଙ୍କ ମଧ୍ୟରେ ନିବିଡ ସଂପର୍କ ରହିଛି । ବାବୁଜୀ ପଚାରିଲେ ଏହି ନିବିଡ ସଂପର୍କ କଥା କିଏ କହିଲା ? ମୁଁ କହିଲି , ଏହା ତ ସତ୍ୟ। ସମସ୍ତେ ଏହା ଜାଣନ୍ତି । ବାବୁଜୀ କହିଲେ ଏହି ସଂବାଦ ପ୍ରକାଶ ପାଇଲେ କାଲିସକାଳେ ସେମାନେ 'ସମାଜ' ନାମରେ ମାନହାନି ମକଦ୍ଦମା ଲଦିଦେବେ । ସମାଜକୁ ବନ୍ଦ କରିବାକୁ ଏମାନେ ଉଦ୍ୟମ କରୁଥିବା ବେଳେ ତୁମର ଏହି ଲେଖା ସେମାନଙ୍କୁ ସୁବର୍ଣ୍ଣ ସୁଯୋଗ ଦେବ । ତୁମ ଉପରେ ମୋର ଘୋର ଅବିଶ୍ୱାସ ଆସିଗଲାଣି । ମୁଁ ସବୁ ଶୁଣି ସେହିପରି ଠିଆ ହୋଇଥାଏ । ଏହା କହିବାର କିଛି ସମୟପରେ ତାଙ୍କର କ୍ରୋଧ ଶାନ୍ତ ହେଲା ଏବଂ ସେ କହିଲେ ଠିଆ ହୋଇଛ କାହିଁକି ? ବସ ଏବଂ ଲେଖ । ବାବୁଜୀ ଡାକିଦେଲେ ସେମାନେ ଫେରିବା ବେଳେ ଲୋକମାନେ ଟୁପୁରଟାପର ହେଉଥିବା ଦେଖାଯାଇଥିଲା ।' ମୁଁ ଏହା ଲେଖିବା ପରେ ବୁଝିଗଲି ଯେ ବାସ୍ତବରେ ଏପରି ସଂବାଦ ପରିବେଷଣର ଏହା ହେଉଛି ସଠିକ ଧାରା ଏହା ଫଳରେ ସାପ ମରିବ; କିନ୍ତୁ ବାଡି ଭାଙ୍ଗିବ ନାହିଁ । ଏହି ସଂବାଦ ପରିବେଷଣରେ ମାନହାନିର ପ୍ରଶ୍ନ ଉଠୁନାହିଁ । ତଥାପି ଯଦି କେହି ମାନହାନି ମକଦ୍ଦମା କରେ ତେବେ ତାହାକୁ ପ୍ରମାଣିତ କରାଯାଇପାରିବ ନାହିଁ । କାରଣ ଲୋକମାନେ ଟୁପୁରୁ ଟାପର ହେଉଥିଲେ । ଏହାପରେ ଏପରି ଅନେକ ସଂବାଦ ମତେ ଲେଖିବାକୁ ପଡିଛି,କିନ୍ତୁ ବାବୁଜୀ ଶିଖାଇଥିବା ସୂତ୍ର ପ୍ରୟୋଗ କରିବା ଫଳରେ ମୁଁ ଅସୁବିଧାରେ ପଡିନାହିଁ ।

ମୋ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ସେହିଦିନ ଯେଉଁଦିନକି ମୁଁ 'ସମାଜ' ନିମନ୍ତେ ସଂପାଦକୀୟ ଲେଖିଥିଲି । ୧୯୮୨ ମସିହାରେ ମହାନଦୀରେ ଆସିଥିବା ପ୍ରବଳ ବନ୍ୟାଯୋଗୁ କଟକ ସହର ପ୍ରତି ଘୋର ବିପଦ ସୃଷ୍ଟି ହୋଇଥାଏ । ମହାନଦୀ ଏବଂ କାଠଯୋଡି ବନ୍ଧ ଭାଙ୍ଗିଯିବାର ଆଶଂକା ସୃଷ୍ଟି ହୋଇଥାଏ । ସଂପାଦକୀୟ ଲେଖିବାର ଦାୟିତ୍ୱ ଥାଏ ଭାଇ ବିଶିବାବୁଙ୍କ ଉପରେ । କୌଣସି ଅସୁବିଧା ଯୋଗୁ ଯଦି ସେ ନଲେଖିଥାଆନ୍ତି

ତେବେ ଭଗବାନ ପତି ସଂପାଦକୀୟ ଲେଖନ୍ତି । ଯଦି ଭଗବାନ ପତି ଆସିନଥାଆନ୍ତି ତେବେ ବାବୁଜୀଙ୍କ ପାଖକୁ ଖବର ଯାଏ ଏବଂ ସେ ସଂପାଦକୀୟ ଡାକନ୍ତି । ସେଦିନ ଏପରି ହୋଇଥାଏ ଯେ ବିଶ୍ୱନାଥ ବାବୁ ଆସିନଥିଲେ, ଭଗବାନ ବାବୁ ଛୁଟୀରେ ଥିଲେ ଏବଂ ବାବୁଜୀ ଭୁବନେଶ୍ୱର ଚାଲିଯାଇଥିଲେ । ପାଣି ବାବୁ ମତେ ଡାକି ସଂପାଦକୀୟ ଲେଖିବାକୁ କହିଲେ । ମୁଁ କହିଲି ନାହିଁରେ ବାବା । ମତେ କାହିଁକି ହାଣ ମୁହଁକୁ ପଠାଉଛନ୍ତି । ଦେଖୁଛନ୍ତି ତ ମୋର ଭାଗ୍ୟ ଖରାପ ଯୋଗୁ ବରିଷ୍ଠ କର୍ମଚାରୀଙ୍କ କାମ କରି ମଧ୍ୟ ଚାକିରୀ ସ୍ଥାୟୀ ହୋଇପାରୁନାହିଁ । ଯଦି ସଂପାଦକୀୟରେ ଭୁଲ ହୋଇଯାଏ ଏବଂ ବାବୁଜୀ ଜାଣନ୍ତି ତେବେ ମତେ ସିଧା ବାହାର କରିଦେବେ । ଏଥିସହିତ ଆପଣଙ୍କ ଉପରେ ଗାଳି ପଡିବ । ଏହା ପରେ ପାଣି ବାବୁ ମତେ ଏପରି ଭାବେ ଟେକାଟେକି କରି କହିଲେ ଯେ ମନ ମୋର କୁଣ୍ଢେମୋଟ ହୋଇଗଲା ଏବଂ ମୁଁ ସଂପାଦକୀୟ ଲେଖାରେ ବସିଗଲି । ସଂପାଦକୀୟ ବାହାରି ଗଲା । ତାହାପରଦିନ ସକାଳ ସାଢେ ଆଠଟାବେଳେ ଅଫିସରେ ପହଞ୍ଚିବା ମାତ୍ରେ ପାଣି ବାବୁ କହିଲେ ଉପରକୁ ଯାଅ । ବାବୁଜୀ ଅପେକ୍ଷା କରିଛନ୍ତି । ମୁଁ କହିଲି ତାହାଲେ ବିଦାହେବାର ବେଳ ଆସିଗଲା । ପାଣି ବାବୁ କହିଲେ, ଯିବୁ, ବାବୁଜୀ ଯାହା କହିବେ ସବୁ ଶୁଣିବୁ ଏବଂ ଭାବିବୁ ଯେ ତୋ ବାପା ତତେ ଗାଳି ଦେଉଛନ୍ତି । ତେବେ ତୁ ଲେଖିଥିବା ସଂପାଦକୀୟ ଖୁବ ଭଲ ହୋଇଛି । ସେଥିପାଇଁ ଡରିବୁ ନାହିଁ । ମୁଁ ବାବୁଜୀଙ୍କ ପାଖରେ ପହଞ୍ଚିବା ମାତ୍ରେ ସେ ଖିଙ୍କାରି ହୋଇ ଉଠି ମତେ ପଚାରିଲେ ସଂପାଦକୀୟରେ ବନ୍ୟା ସଂପର୍କରେ ଯେଉଁ ତଥ୍ୟ ଦେଇଛ ତାହା ସବୁ କଣ ମନଗଢା କଥା ? ତୁମକୁ କିଏ ଅନୁମତି ଦେଲା ସଂପାଦକୀୟ ଲେଖିବାକୁ । ତୁମେ ଲେଖିଥିବା ମିଛ ନିମନ୍ତେ ମୁଁ ମୁହଁ ଦେଖାଇପାରିବି ନାହିଁ । କାରଣ ସେ ଭାବିଲେ ଯେ ମୁଁ ଯେଉଁସବୁ ତଥ୍ୟ ଦେଇଛି ତାହା ମନରୁ ଲେଖିଦେଇଛି । ମୁଁ ଏତେ ଭିତିରିଆ ତଥ୍ୟ କିପରି ପାଇବି । ତେଣୁ ମୋ ଲେଖା ଉପରେ ତାଙ୍କର ପ୍ରବଳ ସନ୍ଦେହ ହୋଇଥିଲା । ବିଶେଷକରି ବନ୍ୟା ଉପରେ ସେ

ସବୁବେଳେ ସଂପାଦକୀୟ ଲେଖୁଥିଲେ । ବିଶିବାବୁ ମଧ୍ୟ ବନ୍ୟା ଉପରେ ସଂପାଦକୀୟ ଲେଖିବାକୁ ସାହସ କରୁନଥିଲେ । ତେଣୁ ମୁଁ ବୁଝିଗଲି ଯେ ମୋର ବନ୍ୟା ଉପରେ ସଂପାଦକୀୟ ଲେଖିବା ଠିକ୍ ହୋଇନାହିଁ। ସବୁ ଶୁଣିବାପରେ ମୁଁ କହିଲି, ବାବୁଜୀ, ଏହି ସବୁ ତଥ୍ୟ ମତେ ନିଜେ ମୁନସିପାଲିଟି କାର୍ଯ୍ୟନିର୍ବାହୀ ଅଧିକାରୀ ପତିତପାବନ ମହାପାତ୍ର ଦେଇଛନ୍ତି । ଗୋପୀନାଥ ଦାଶଙ୍କର ଏକ ଲେଖା ମହାନଦୀ ବନ୍ୟା ଉପରେ ପ୍ରକାଶିତ ହୋଇଥିଲା । ତାହା ମୁଁ ପଢିଥିଲି । ଏହାବାଦ ଗିରିଜା ବାବୁଙ୍କ ସହିତ ଆଲୋଚନା କରିବା ପରେ ଲେଖିଛି । ଏହା ଶୁଣିବାପରେ ସେ କିଛି ସମୟ ମୋ ମୁହଁକୁ ଚାହିଁଲେ ଏବଂ ଯିବାପାଇଁ କହିଲେ । ଏହାପରଠାରୁ  ମୋର ଲେଖା ଉପରେ ସେ କୌଣସି ଦିନ ପ୍ରଶ୍ନ କରି ନାହାଁନ୍ତି । ସେ ମତେ ଅନେକ ଗୁପ୍ତ ତଥ୍ୟ ଦେଇଛନ୍ତି ଅନୁବାଦ କରିବାପାଇଁ। ସେସବୁକୁ ମୁଁ ଘରକୁ ନେଇଯାଏ । ଏହାଫଳରେ ଅଫିସରୁ ମୁଁ ବହୁ ସମୟରେ ସହଳ ଚାଲିଯାଏ । ଏହାକୁ କେନ୍ଦ୍ରକରି ମୋର କିଛି ସହକର୍ମୀ(ସଂପାଦକୀୟ ବିଭାଗର ନୁହେଁ) ମୋ ପ୍ରତି ଈର୍ଷା କରିଛନ୍ତି। କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ମୁଁ ଯାଇ ଘରେ ଅଫିସ କାମ କରେ । ରାଧାନାଥ ବାବୁଙ୍କର ଏକ ଗୁଣ ଥିଲା ସେ କେତେବେଳେ ପ୍ରଶଂସା ଏବଂ କେତେବେଳେ ଗାଳିଦେବେ ତାହା କହିହେବ ନାହିଁ । ତେଣୁ ଅନେକ ତାଙ୍କୁ କ୍ଷଣେ ରୁଷ୍ଟ କ୍ଷଣେ ତୁଷ୍ଟ ରୁଷ୍ଟ ତୁଷ୍ଟ କ୍ଷଣେ କ୍ଷଣେ ବୋଲି କହିଥାଆନ୍ତି । ତେବେ ଯଦି କେହି ସାଂବାଦିକ ଭଲ ଲେଖିଥାଆନ୍ତି ତେବେ ପ୍ରଥମେ ସେ ଗାଳି ଦିଅନ୍ତି, ପରେ ବଢିଆ କରି ଖାଇବାକୁ ଦିଅନ୍ତି । ମୋ କ୍ଷେତ୍ରରେ ଏହା ବହୁବାର ଘଟିଛି। ଯୋଷୀଙ୍କ ରାଜନୈତିକ ସମୀକ୍ଷା ପଢି ସେ ମତେ ବହୁବାର ପ୍ରଶଂସା ମଧ୍ୟ କରିଛନ୍ତି।

ଏହାବାଦ କୁଲଦୀପ ନାୟାର ଏବଂ ଖୁସୱନ୍ତ ସିଂହ ଏବଂ ଇଣ୍ଡିଆ ଇଣ୍ଟର ନ୍ୟାସନାଲର ବହୁ ଇଂରାଜୀ ଲେଖାର ଅନୁବାଦ ମୁଁ କରିଛି । ଥରେ କୁଲଦୀପ ନାୟାର ବାବୁଜୀଙ୍କୁ ଦେଖା କରିବାକୁ ଆସିଥାଆନ୍ତି । ସେତେବେଳେ

ପ୍ରାୟତଃ ପ୍ରତି ପନ୍ଦରଦିନରେ ତାଙ୍କର ଗୋଟିଏ ଲେଖା 'ସମାଜ'ରେ ପ୍ରକାଶ ପାଉଥିଲା । ଏଥିପାଇଁ ତାଙ୍କୁ ରବି ରାୟ ଏବଂ ଦିଲ୍ଲୀରେ ଥିବା ଓଡିଶାର ବହୁ ସାଂସଦ ଏବଂ ଅନ୍ୟମାନେ ବଧାଇ ଜଣାଉଥିଲେ । ତେଣୁ ବାବୁଜୀଙ୍କ ପାଖରେ ବସି ସେ ପଚାରିଲେ ଯେ ତାଙ୍କର ଲେଖାକୁ ଯିଏ ଅନୁବାଦ କରୁଛନ୍ତି ତାଙ୍କୁ ସେ ଦେଖାକରିବାକୁ ଚାହାଁନ୍ତି । ମୁଁ ଅଫିସରେ ଥାଏ । କୃଷ୍ଣ ଭାଇ (ପିଅନ)ଆସି ମତେ ବାବୁଜୀ ଡାକୁଛନ୍ତି କହିବାରୁ ମୁଁ ଉପରକୁ ଗଲି । ଉଭୟଙ୍କୁ ନମସ୍କାର କଲି । ବାବୁଜୀ କହିଲେ ଏହି ବାବୁ ଆପଣଙ୍କ ଲେଖାର ଅନୁବାଦ କରୁଛନ୍ତି । କୁଲଦୀପ ନାୟାର ମୋ ସହିତ କଥା ହେଲେ । ସେଥିରେ ସାଂପ୍ରତିକ ରାଜନୈତିକ ବ୍ୟବସ୍ଥା ଆଦି ପ୍ରସଂଗ ଥିଲା। ବାବୁଜୀ ସବୁ ଶୁଣୁଥିଲେ । ପରେ ଶ୍ରୀ ନାୟାରଙ୍କୁ ମୋର ପ୍ରଶଂସା କରି ବହୁତ କହିଲେ । ସେମାନଙ୍କ ସହିତ ଖାଇବାକୁ ମିଳିଲା। କିଛି ସମୟପରେ ତଳକୁ ଆସିଲି ।

ଏତେ ସବୁ କରି ମଧ୍ୟ ବାବୁଜୀ ମୋ ପ୍ରତି ଠିକ୍ ବିଚାର କରିନଥିଲେ । ମୋର ଚାକିରୀ ସ୍ଥାୟୀ କରାଇବାରେ ବହୁତ ବିଳମ୍ବ କରିଦେଇଥିଲେ । ଜଣେ କାନକୁହାଙ୍କ କଥାରେ ପଡି ସେ ଏହା କରିଥିଲେ । ତେବେ ସେହି ସମୟରେ ବନ୍ଧୁ କାନନ ଦାଶ, ଦେବ ପ୍ରସାଦ ମିଶ୍ର, ସତ୍ୟ ରାଏ ଏବଂ ଶ୍ୟାମାକାନ୍ତ ପଟ୍ଟନାୟକ ମତେ ବହୁତ ସାହସ ଏବଂ ସାହାଯ୍ୟ କରିଛନ୍ତି । ବିଶେଷକରି ଆନନ୍ଦଚନ୍ଦ୍ର ପାଣିଙ୍କ ସାହାଯ୍ୟ ଭୁଲିବାର ନୁହେଁ । ତାଙ୍କୁ ଏବଂ ପ୍ରଫୁଲ୍ଲ ବାବୁଙ୍କୁ ମୁଁ ମୋର ସାଂବାଦିକ ଜୀବନର ଜ୍ଞାନଦାତା ଭାବେ ସମ୍ମାନ ଦିଏ । ଏହା ବୋଧେ ମୋର ଭାଗ୍ୟରେ ଥିଲା ବୋଲି 'ସମାଜ'ରୁ ୨୦୦୮ ମସିହା ଜୁଲାଇ ୮ ତାରିଖରେ ଇସ୍ତଫା ଦେଇ ଆସିବା ବେଳେ ଭାବିଲି । ତେବେ ସେହି ବାବୁଜୀଙ୍କ ଆଶୀର୍ବାଦ ବଳରେ ମୁଁ 'ସମାଜ' ନିମନ୍ତେ ଶହଶହ ସଂପାଦକୀୟ ଲେଖିଛି । ଦିଲ୍ଲୀରେ ଅନୁଷ୍ଠିତ ହେଉଥିବା ସଂପାଦକୀୟ ସମ୍ମିଳନୀରେ 'ସମାଜ'ର ପ୍ରତିନିଧିତ୍ୱ କରିଛି ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ୧୯୮୩ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କୁ

ତାଙ୍କର ବାସଭବନରେ ଭେଟିବାର ସୁଯୋଗ ପାଇଛି । ଶ୍ୟାମ ସୁନ୍ଦର ମହାପାତ୍ରଙ୍କ ସହିତ ଯାଇ ତାଙ୍କୁ ଭେଟିଥିଲି । ଓଡିଶାର ଅନ୍ୟକୌଣସି ସାଂବାଦିକଙ୍କ ଭାଗ୍ୟରେ ବୋଧେ ଏପରି ସୁଯୋଗ ମିଳିନଥିବ ବୋଲି ମୁଁ ଭାବୁଛି ।

'ସମାଜ'ରେ ବାବୁଜୀଙ୍କ ନିୟନ୍ତ୍ରଣ ଦୁର୍ବଳ ହୋଇଯିବାପରେ ଏହାର ସୁରକ୍ଷା ନିମନ୍ତେ ସୁରକ୍ଷା କର୍ମୀଙ୍କୁ ନିଯୁକ୍ତ କରାଗଲା । ଏହାକୁ ଦେଖି ସେତେବେଳେ ମୁଁ ଭାବିଥିଲି ଯେ ପ୍ରବଳ ପ୍ରତାପୀ ଜାନକୀ ବାବୁଙ୍କ ସରକାର ବିରୋଧରେ ଅଶୀବର୍ଷର ଜଣେ ବୃଦ୍ଧ ସାହସ କରି ଲଢୁଥିବା ବେଳେ ଟିଣ ଗେଟ ପାଖରେ ଜଣେ ବୁଢା ନେପାଳି ଦରଓ୍ୱାନ ଜଗିକରି ବସୁଥିଲେ । ତାଙ୍କ ପାଖରେ ଗୋଟିଏ ଖାତା ଥିଲା । ସେହି ଖାତାରେ ଯିଏ ଆସୁଥିଲେ ସେମାନେ ନାମ ଲେଖି ଆସୁଥିଲେ । ବାସ୍ ସୁରକ୍ଷା ବୋଇଲେ ଏତିକି । ନଚେତ ସମସ୍ତଙ୍କ ନିମନ୍ତେ 'ସମାଜ'ର ଦ୍ୱାର ସାହାଣ ମେଲା । ବିଶ୍ୱାସ ଏବଂ ଆସ୍ଥାକୁ ନେଇ ସେତେବେଳେ 'ସମାଜ' ଚାଲିଥିଲା । ତେଣୁ 'ସମାଜ'ରେ ଯେଉଁମାନେ କାମ କରୁଥିଲେ, ଏହାର ପାଠକ, ବିଜ୍ଞାପନଦାତା ଏବଂ ଯିଏବି 'ସମାଜ'କୁ ଆସିଲେ ସେ ଭାବୁଥିଲେ ସେମାନେ ସମସ୍ତେ ହେଉଛନ୍ତି ଏହି ପରିବାରର ସଦସ୍ୟ ଏବଂ ବାବୁଜୀ ଏହାର ମୁଖିଆ । ସେତେବେଳେ 'ସମାଜ'ହତାରେ ପଶିଗଲେ ସବୁକିଛି ନିଜରନିଜର ପରି ଲାଗୁଥିଲା । ଗୋଟିଏ ସଭାରେ ବାବୁଜୀ ଉଦ୍‌ବୋଧନ ଦେବା ବେଳେ କହିଥିଲେ ସଂବାଦପତ୍ରରେ କିଏ ବଡ ବା ସାନ ନୁହେଁ । ସମସ୍ତେ ସମାନ । ବଡ ସାନ ବିଚାରକଲେ ସଂବାଦପତ୍ର ଚାଲିପାରିବ ନାହିଁ । ଏବେ ତାହା ଅଛି ? କେଜାଣି ! କାରଣ ସଂବାଦପତ୍ର ଏବେ କର୍ପୋରେଟ ଢାଞ୍ଚାରେ ଚାଲୁଛି । ଲୋକେ କଣ ଚାହୁଁଛନ୍ତି ତାହାକୁ ସଂବାଦପତ୍ରମାନେ ଛାପୁଛନ୍ତି । ମାଲିକ ଚାହୁଁଛି କାଗଜ କିପରି ଅଧିକ ବିକ୍ରିହେବ । ଲୋକଙ୍କ ପାଇଁ କଣ ଭଲ ତାହାର ବିଚାର କରାଯାଉନାହିଁ । ଲାଭ କ୍ଷତିର ବିଚାର କରାଯାଉଛି ।

ଏହା ଏବେ ପେଶା ହୋଇଗଲା । ପୂର୍ବେ ଏହା ନିଶା ଏବଂ ଆଦର୍ଶ ଥିଲା । ସଂବାଦପତ୍ରର ସ୍ୱାଧୀନତା ପ୍ରସଂଗ ଉଠିଲେ ପ୍ରଶ୍ନ ହେଉଛି କାହାର ସ୍ୱାଧୀନତା, ମାଲିକର ନା ସାଂବାଦିକର ? ମାଲିକ ଏବେ ସଂବାଦପତ୍ରର ସ୍ୱାଧୀନତାକୁ ଉପଭୋଗ କରୁଛନ୍ତି । ଏହାକୁ ଦେଖିଲେ ମନେ ହେଉଛି ସଂବାଦପତ୍ରମାନେ ଏବେ ଜନକଲ୍ୟାଣମୁଖୀ ପ୍ରତିଷ୍ଠାନ ହେବା ପରିବର୍ତ୍ତେ  କର୍ପୋରେଟ ପ୍ରକଳ୍ପରେ ପରିଣତ ହୋଇଛନ୍ତି ।  ଲାଭର ବିଚାର କରି ନିଷ୍ପତ୍ତି ନିଆଯାଉଛି । ପାଠକକୁ ଆକର୍ଷଣ କରିବାପାଇଁ ଅନେକ ସଂବାଦ ପତ୍ରରେ ଲଙ୍ଗୁଳି ନାରୀଙ୍କ ଛବି ଛପାଯାଉଛି । କାମ ଉଦ୍ଦୀପକ ଔଷଧର ବିଜ୍ଞାପନ କରାଯାଉଛି । ଏହା ଲେଖିଲା ବେଳେ ମୋର ମନେପଡୁଛି 'ସମାଜ'ରେ ଚଳଚିତ୍ରର ବିଜ୍ଞାପନ ପ୍ରକାଶ ପାଉଥିଲା । ସେଥିରେ ଅନେକ ସମୟରେ ଛାପିବାପାଇଁ କିଛି ଅସଜ୍ଞତ ଚିତ୍ର ଆସୁଥିଲା ( ଅବଶ୍ୟ ବର୍ତ୍ତମାନ ଯେପରି ଅସଜ୍ଞତ ଚିତ୍ରମାନ ଆସୁଛି ତାହା ତୁଳନାରେ ସେସବୁ କିଛି ନଥିଲା) । ବାବୁଜୀ ଥରେ ଏହା ଦେଖିବା ପରେ କହିଦେଲେ ବିନା ଛବିରେ ଯଦି ସେମାନେ ଚଳଚିତ୍ର ବିଜ୍ଞାପନ ଦେବେ ତେବେ ଛାପ ନଚେତ ଚଳଚିତ୍ର ବିଜ୍ଞାପନ ଛାପ ନାହିଁ । ଚଳଚିତ୍ର ବାଲା କିନ୍ତୁ ଏହା ମାନିବାକୁ ମନାକରିଦେଲେ । ଏହା ଫଳରେ ଅନେକ ବର୍ଷ ପର୍ଯ୍ୟନ୍ତ ଚଳଚିତ୍ର ବିଜ୍ଞାପନ ପ୍ରକାଶିତ ହେଲା ନାହିଁ । କାମ ଉଦ୍ଦୀପକ ଔଷଧର ବିଜ୍ଞାପନ ଛାପିବାର ପ୍ରଶ୍ନ ନଥିଲା । ଏବେ ସଂବାଦପତ୍ରମାନେ ସେହି ବିଜ୍ଞାପନ ଛାପି ଲକ୍ଷଲକ୍ଷ ଟଙ୍କା ବିଜ୍ଞାପନ ଜରିଆରେ ଲାଭ କରୁଛନ୍ତି ।

ରାଜ୍ୟ  ସରକାରଙ୍କ ଦୁର୍ନୀତି ଏବଂ ଅପାରଗତାକୁ ଲୋକଲୋଚନକୁ ବାରମ୍ବାର ଆଣିବାଫଳରେ ରାଜ୍ୟ ସରକାର ବିଜ୍ଞାପନ ବନ୍ଦ କରିଦେଲେ ଏବଂ ଡିଏଭିପି ବିଜ୍ଞାପନ କମାଇବା ନିମନ୍ତେ ପ୍ରଭାବ ପକାଇ ସଫଳ ହୋଇଥିଲେ । ଜାନକୀବାବୁଙ୍କ ସରକାର ଭାବିଥିଲା ଯେ ଏହା ଫଳରେ ରାଧାନାଥ ବାବୁ ଦବି ଯାଇ ସରକାରଙ୍କ ସହିତ ବିଜ୍ଞାପନ ନିମନ୍ତେ ସାଲିସ

କରିବେ । ବାବୁଜୀ ତାହା କରିନଥିଲେ, ବରଂ ସରକାରର ସମସ୍ତ ଦୁର୍ବଳତାକୁ ଅତି କଠୋର ଭାବେ ପ୍ରକାଶ କରିବା ନିମନ୍ତେ ସେ ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଥରେ ମୁଁ ଜାନକୀବାବୁଙ୍କ ସରକାରକୁ ସମାଲୋଚନାକରି ଅତି କଠୋର ଭାଷାରେ ଲେଖିଚାଲିଥାଏ । ଏହି ସମୟରେ ଶ୍ରୀମତୀ ମନୋରମା ମହାପାତ୍ର ମୋ ପଛରେ ଠିଆ ହୋଇ ତାହାକୁ ପଢୁଥିଲେ । ମୁଁ କିନ୍ତୁ ଜାଣିପାରିନଥଲି । ମୁଁ ଗୋଟିଏ ପରିଚ୍ଛେଦ ଲେଖିବାପରେ ମୁଣ୍ଡ ଟେକିବାରେ ଜାଣିଲି ସେ ମୋ ପଛରେ ଠିଆ ହୋଇଛନ୍ତି । ମୁଁ ଠିଆ ହୋଇପଡି ତାଙ୍କୁ ନମସ୍କାର କରିବାପରେ ସେ କହିଲେ କିଶୋର ବାବୁ ଏତେ କଠୋର ଭାଷାରେ ଲେଖିବା କଣ ଠିକ ହେଉଛି ? ମୁଁ କହିଲି ବାବୁଜୀ କହିଛନ୍ତି । ବାସ୍ ସେତିକିରେ କଥା ଶେଷ । ସେ ଚାଲିଗଲେ । ସେତେବେଳେ ସେ ଅଧ୍ୟାପିକା ଚାକିରିରୁ ଇସ୍ତଫାଦେଇ ନୂଆ କରି 'ସମାଜ'ରେ ଯୋଗଦେଇଥାଆନ୍ତି ।

ବାବୁଜୀଙ୍କ ଉପରେ ଓଡିଶାର ଲୋକ ଏବଂ ପ୍ରତିଷ୍ଠାନମାନଙ୍କର କିପରି ଗଭୀର ଆସ୍ଥା ଥିଲା ତାହା ଏହି ଘଟଣାରୁ ଜଣାପଡେ । ଏବେ (୧୮।୭।୧୭) ବଂଶଧାରା ନଦୀରେ ବନ୍ୟା କଥା ସଂବାଦପତ୍ରରେ ପଢିବା ବେଳେ ମନେପଡିଗଲା । ଅଶୀ ମସିହାର ଶେଷାର୍ଦ୍ଧ ବେଳର କଥା । ଏହି ଜୁଲାଇମାସରେ ବଂଶଧାରାରେ ପ୍ରବଳ ବନ୍ୟା ହୋଇଥାଏ । ସେହି ସମୟରେ ଲୋକସେବକ ମଣ୍ଡଳର ଏକ ଜରୁରୀ ବୈଠକରେ ଯୋଗଦେବାପାଇଁ ବାବୁଜୀ ଦିଲ୍ଲୀ ଯାଇଥାଆନ୍ତି । ହଠାତ୍ ଏକ ସକାଳେ ଆମେ ସବୁ ଅଫିସରେ ବସିଛୁ ଖବର ପାଇଲୁ ଯେ ବାବୁଜୀ ବଂଶଧାରାର ବନ୍ୟାବିପନ୍ନଙ୍କୁ ସାହାଯ୍ୟ କରିବାପାଇଁ କୋରାପୁଟରେ ପହଞ୍ଚି ଯାଇଛନ୍ତି । ବୋଧେ ବେତାରରେ ଏହି ସଂବାଦଟି ପ୍ରସାରିତ ହୋଇଥାଏ ଏବଂ କେତେକ ସଂବାଦପତ୍ରରେ ମଧ୍ୟ ବାହାରିଥାଏ । ପାଣିବାବୁଙ୍କ ସମେତ ଆମେ କେତେକ ସକାଳେ ଅଫିସ ଯାଉ, ଉପସ୍ଥିତ ଥାଉ । ହଠାତ୍ ଦେବବାବୁଙ୍କୁ ଫୋନ କଲୁ ଯେ ବାବୁଜୀ

କଣ ବଂଶଧାରାର ବନ୍ୟା ବିପନ୍ନଙ୍କୁ ସାହାଯ୍ୟ କରିବାକୁ କୋରାପୁଟ ଯାଇଛନ୍ତି । ଦେବ ମଧ୍ୟ ଠିକ୍ କରି କହି ପାରିଲେ ନାହିଁ । ବାବୁଜୀଙ୍କ ସାହସକୁ ନେଇ ଆମେ ସବୁ କଥା ହେଉଥାଉ । କିଏ କହୁଥାଏ ସେ ବୋଧେ ବିଶାଖାପାଟଣା ବିମାନ ବନ୍ଦରରୁ ସିଧା କୋରାପୁଟ ଯାଇ ସେଠାରୁ ବଂଶଧାରା ଯାଇଛନ୍ତି । ଏପରି ଅନେକ ମନଗଢ଼ା କାହାଣି ମାନ ଶୁଣିବାକୁ ମିଳୁଥାଏ । ୮୭ ବର୍ଷ ବୟସରେ ସେ ଏକାକୀ ଯାଇ କୋରାପୁଟରେ ପହଞ୍ଚି କଣ କରୁଥିବେ । ମୁଁ ଗିରିଜା ବାବୁଙ୍କୁ ଫୋନ କଲି । ସେ ବେଶ ଗୁରୁତ୍ୱ ଦେଇ କହିଲେ ବାବୁଜୀ କୋରାପୁଟରେ ପହଞ୍ଚି ମାରଓ୍ୱାଡି ମାନଙ୍କ ସାହାଯ୍ୟରେ ରିଲିଫ ସାମଗ୍ରୀ ଯୋଗାଡକରି ବନ୍ୟା ବିପନ୍ନଙ୍କୁ ବାଣ୍ଟୁଛନ୍ତି । ତାଙ୍କ କଥାକୁ ସତ ମଣିଲୁ । ଏହି ସମୟରେ ଗୋଖେଇ ଭାଇ ଡ୍ରାଇଭର ଆସି ପହଞ୍ଚିଗଲେ । ତାଙ୍କୁ ପଚାରିବାରୁ ସେ କହିଲେ ବାବୁଜୀଙ୍କୁ ଆଣିବାକୁ ସେ ବିମାନ ବନ୍ଦରକୁ ଯାଉଛନ୍ତି । ତାଙ୍କ ଠାରୁ ଏହା ଶୁଣିବାପରେ ଜାଣିଲୁ ଯେ ଯାହା ସବୁ ଆମେ ଶୁଣିଛୁ ତାହା ଠିକ୍ ନୁହେଁ ।

ବାବୁଜୀ ବଂଶଧାରାର ବନ୍ୟା ବିପନ୍ନଙ୍କୁ ସାହାଯ୍ୟ କରିବାପାଇଁ କୋରାପୁଟରେ ପହଞ୍ଚିଛନ୍ତି ସଂବାଦ ଲୋକଙ୍କ ବିଶ୍ୱାସର ଏକ ପ୍ରତିଫଳନ ଥିଲା । ଏହାକୁ ଗୁଜବ କୁହାଯାଇପାରିବ ନାହିଁ । କାରଣ ବନ୍ୟା ବା ପ୍ରାକୃତିକ ବିପର୍ଯ୍ୟୟ ଯେଉଁଠି ସେଠି ରାଧାନାଥ ବାବୁ ଏବଂ ତାଙ୍କ ଦଳ ପ୍ରଥମେ ରିଲିଫ ସାମଗ୍ରୀ ନେଇ ପହଞ୍ଚନ୍ତି । ସରକାର ମଧ୍ୟ ଏହା ସ୍ୱୀକାର କରିଛନ୍ତି । ସେହି ରାଧାନାଥ ବାବୁ ଯଦି ରୁଷିଲେ ତେବେ ସରକାରରେ କଂପନ ସୃଷ୍ଟି ହେଉଥିଲା । ସରକାରଙ୍କୁ ଚେତାଇଦେବାବାପାଇଁ ତାଙ୍କର ସଂପାଦକୀୟ, ଝିଟିପିଟି କୁହେକୁ କେନ୍ଦ୍ରକରି ବହୁବାର ବିଧାନସଭାରେ ବିତର୍କର ଝଡ ସୃଷ୍ଟି ହୋଇଛି । ଓଡିଶାରେ କେଉଁଠି କଣ ଘଟୁଛି ବା ଘଟିବାକୁ ଅଛି ତାହାର ସଂବାଦ ସଂଗ୍ରହ ନିମନ୍ତେ ସ୍ପେଶାଲ ବ୍ରାଞ୍ଚ ଅଫିସରମାନେ ପ୍ରାୟତଃ ସବୁବେଳେ 'ସମାଜ'କୁ ଆସୁଥିଲେ । ରାଧାନାଥ ବାବୁଙ୍କ ନେତୃତ୍ୱରେ

ପରିଚାଳିତ ହେଉଥିବା 'ସମାଜ' ଓଡିଆ ସାହିତ୍ୟକୁ ସମୃଦ୍ଧ କରିବା ସହିତ ଲୋକମାନଙ୍କ ଅଭାବ ଅସୁବିଧାକୁ ଲୋକଲୋଚନକୁ ଆଣୁଥିଲା । ଏଥି ସହିତ ଏହାର ସମାଧାନର ମାର୍ଗ ମଧ୍ୟ ପ୍ରଦର୍ଶିତ କରୁଥିଲା । ଲୋକମତକୁ ପ୍ରଭାବିତ କରିବା ସହିତ ଲୋକମତ ସୃଷ୍ଟି କରିବାରେ ସାହାଯ୍ୟ କରୁଥିଲା । ଲାଭ କଥା ଭାବୁନଥିଲା । ରାଧାନାଥ ବାବୁଙ୍କ ସମୟରେ 'ସମାଜ' ଯଦି ଲାଭ କଥା ବିଚାର କରିଥାଆନ୍ତା ତେବେ କୋଟିକୋଟି ଟଙ୍କା ସଂଚୟ କରି ପାରିଥାଆନ୍ତା । କାରଣ ଗୋଟିଏ ସମୟରେ ଏହାର ଏକଛତ୍ର ପ୍ରଭାବ ଓଡିଶାର ସଂବାଦପତ୍ର ଦୁନିଆରେ ଥିଲା । ବାବୁଜୀ କିନ୍ତୁ ତାହା କରି ନଥିଲେ । ସମଗ୍ର ଓଡିଶାକୁ ସେ ଏକାଠି କରି ରଖିଥିଲେ ।

ବାବୁଜୀଙ୍କର କିନ୍ତୁ ଦୁଇଟି ବଡ ଦୁର୍ବଳତା ଥିଲା । ସେ କାନକୁହା କଥାକୁ ଗୁରୁତ୍ୱ ଦେଉଥିଲେ ଏବଂ କାହାର ବିରୋଧରେ ଯଦି ତାଙ୍କୁ କିଏ କିଛି କହୁଥିଲେ ତେବେ ତାହାକୁ ସେ ତୁରନ୍ତ ବିଶ୍ୱାସ କରିଯାଉଥିଲେ । ମୋର ମନେ ଅଛି ଥରେ ସଂପାଦକୀୟ ବିଭାଗର କର୍ମଚାରୀମାନଙ୍କ ସହିତ ବାବୁଜୀଙ୍କର ଏକ ବୈଠକ ଚାଲିଥାଏ । ସଂପାଦକୀୟ ବିଭାଗର ଜଣେ କର୍ମଚାରୀଙ୍କୁ ଦରମା ବାଦ ମାସିକ ଅଧିକ ୧୫ ଶହ ଟଙ୍କା ଭତ୍ତା ଦିଆଯାଉଥିଲା । ସେତେବେଳକୁ ମୁଁ ବହୁତ ଖଟୁଥାଏ । ତେଣୁ ମୋ ମନରେ କ୍ଷୋଭ ପ୍ରବଳ ଥାଏ । ସମସ୍ତଙ୍କୁ କହୁଥିଲେ ମଧ୍ୟ କେହି ମୋ କଥା ଶୁଣୁନଥିଲେ । ତେଣୁ ହଠାତ୍ ଉଠିପଡି ମୁଁ କହିଲି ସେ ବାବୁତ ନିଜର କିଛି କାମ କରୁନାହାଁନ୍ତି । ସଂବାଦଟିଏ ଠିକ ଭାବେ ଲେଖିପାରୁ ନାହାଁନ୍ତି । ଯାହା କାମ ଦେଲେ ପକାଇଦେଇ ଖସି ପଳାଉଛନ୍ତି । ଏହା ସତ୍ୟ କି ନୁହେଁ ଆପଣ ପାଣି ବାବୁଙ୍କୁ ପଚାରି ବୁଝନ୍ତୁ । ତାଙ୍କୁ କାହିଁକି ଅଧିକ ୧୫ ଶହ ଟଙ୍କା ଦିଆଯାଉଛି ? ଏହା ଶୁଣି ବାବୁଜୀ କହିଲେ ମୋର ଇଚ୍ଛା । ଏହା ଶୁଣିବା ପରେ ମୁଁ ଅତ୍ୟନ୍ତ ବିରକ୍ତ ହୋଇ ବାହାରୁ ଆସୁଛି କହି ଚାଲି ଆସିଲି ।

ଏହା ସତ୍ତ୍ୱେ ମୁଁ ତାଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲି । ପିଲାବେଳୁ ମୋର ପଠନ ଅଭ୍ୟାସ ଥିଲା; କିନ୍ତୁ ବାବୁଜୀଙ୍କ ପଠନ ଅଭ୍ୟାସ ଦେଖିବାପରେ ଭାବିଲି ତାଙ୍କ ସମ୍ମୁଖରେ ମୁଁ କିଛି ନୁହେଁ । ଏହାପରେ ମୋର ପଠନ ଅଭ୍ୟାସ ବହୁତ ବଢିଗଲା । ଏହା ମତେ ମୋର ଅବସର ଗ୍ରହଣ ପରେ ବହୁତ ସାହାଯ୍ୟ କରୁଛି । ପଢିବାରେ  ଯେଉଁ ଆନନ୍ଦ ତାହା ବାବୁଜୀଙ୍କୁ ଦେଖି ମୁଁ ଶିଖିଛି । 'ସମାଜ'ରେ କାମ କଲାବେଳେ ମୋର ସୌଭାଗ୍ୟ ଯେ ମୋର ଚାରିପଟେ ଏକ ବିଦ୍ୱାନ ମଣ୍ଡଳୀ ରହିଥିଲେ । ସାହତ୍ୟ,ରାଜନୀତି,ସାମାଜିକ ନୀତି ଏବଂ ଶାସ୍ତ୍ର ଆଦିରେ ସେମାନଙ୍କ ପାଣ୍ଡିତ୍ୟର ତୁଳନା ନାହିଁ । ବାବୁଜୀ ବାଛିବାଛି ସେମାନଙ୍କୁ ଆଣି ସଂପାଦକୀୟ ବିଭାଗରେ ନିଯୁକ୍ତି ଦେଇଥିଲେ ।

ବାବୁଜୀଙ୍କର ଦ୍ୱିତୀୟ ଦୁର୍ବଳତା ଥିଲା କାହାରିକୁ ବିଶ୍ୱାସ ନକରିବା । ସେ ଲୋକସେବକ ମଣ୍ଡଳର ସଦସ୍ୟ ନିମନ୍ତେ ଓଡିଶାର କାହାରି ନାମକୁ ସୁପାରିସ କରିନଥିଲେ । ଏପରିକି ତାଙ୍କର କନ୍ୟା ଶ୍ରୀମତୀ ମନୋରମା ମହାପାତ୍ରଙ୍କ ନାମ ମଧ୍ୟ ସେ ସୁପାରିସ  କରିନଥିଲେ ବୋଲି ଶୁଣାଯାଏ । ଓଡିଶାରେ ଯୋଗ୍ୟ ଲୋକର ଅଭାବ ନଥିଲା । କିନ୍ତୁ ତାଙ୍କ ମନରେ ବୋଧେ ଆଶଂକା ଥିଲା ଯେ ଯଦି କୌଣସି ଯୋଗ୍ୟବ୍ୟକ୍ତିଙ୍କୁ ସେ ଲୋକସେବକ ମଣ୍ଡଳର ସଭ୍ୟ ପଦପାଇଁ ସୁପାରିସ କରନ୍ତି ତେବେ ସେହି ବ୍ୟକ୍ତି କ୍ଷମତାଶାଳୀ ହୋଇ ତାଙ୍କୁ ବାହାର କରିଦେବ । ସେ ମଧ୍ୟ ଅନେକ ସଭାରେ କହିଥିବାର ମୁଁ ଶୁଣିଛି  ଯେ ତୁମଠାରୁ ଯୋଗ୍ୟ ବ୍ୟକ୍ତିକୁ କଦାପି ନିଜର ଅଧସ୍ତନ କର୍ମଚାରୀ ଭାବେ ରଖିବ ନାହିଁ । କାରଣ ଭବିଷ୍ୟତରେ ତୁମ ପାଇଁ ସେ ବିପଦ ହେବେ । ପ୍ରଥମେ ପ୍ରଥମେ ଏହା ଶୁଣିବା ବେଳେ ମୁଁ ଭାବୁଥିଲି ସେ ମଜାକରି ଏପରି କହୁଛନ୍ତି । ପରେ ଜାଣିଲି ଏହା ହେଉଛି ତାଙ୍କ ମନ କଥାର ପ୍ରତିଫଳନ । ଏତେ ବଡ ଯୋଗ୍ୟ ବ୍ୟକ୍ତି କଣ ଜାଣିନଥିଲେ ଯେ କିଛି ଚିରନ୍ତନ ନୁହେଁ । ଯଦି  ଓଡିଶାର କୌଣସି ଯୋଗ୍ୟ ବ୍ୟକ୍ତିଙ୍କୁ ସେ

ସଭ୍ୟ ପଦପାଇଁ ସୁପାରିସ କରିଥାଆନ୍ତେ ତେବେ 'ସମାଜ' ତାଙ୍କ ପରେ ଯେଉଁ ଉତ୍‌ଥାନ-ପତନର ସମ୍ମୁଖୀନ ହେଲା ତାହା ହୋଇନଥାଆନ୍ତା । ବର୍ତ୍ତମାନର 'ସମାଜ' ପରିଚାଳନା କଥା କଣ ବା କୁହାଯାଇପାରେ ? ଏହାତ ମୂଳରୁ ଖଜୁରୀ ପାହାଚ ।

ବାବୁଜୀଙ୍କ ସଂପର୍କରେ ତାଙ୍କର କିଛି ସମାଲୋଚକ କୁହନ୍ତି ଯେ 'ସମାଜ'ରେ ସେ  ନିଯୁକ୍ତି ଦେବାବେଳେ ବ୍ରାହ୍ମଣମାନଙ୍କୁ ପ୍ରାଧାନ୍ୟ ଦେଉଥିଲେ । ଏହା ହେଉଛି ଜାତିଆଣବାଦୀ ଆଭିମୁଖ୍ୟ ଦ୍ୱାରା ପ୍ରଭାବିତ ହୋଇଥିବା ବ୍ୟକ୍ତିଙ୍କର ମତ । ପରିଚାଳନା ବିଭାଗରେ ଖୁବ ବେଶୀରେ ୪/୫ ଜଣ ବ୍ରାହ୍ମଣ ବୋଧେ ଥିଲେ । ପରିଚାଳକ, ଅଫିସର ମୁଖ୍ୟ ଏବଂ କୋଷାଧ୍ୟକ୍ଷ ଥିଲେ କରଣ ଏବଂ ଖଣ୍ଡାୟତ । ସଂପାଦକୀୟ ବିଭାଗରେ ଯେଉଁମାନେ ଥିଲେ ସେମାନେ ନିଜନିଜ କ୍ଷେତ୍ରରେ ଅତି ପାରଙ୍ଗମ ଥିଲେ । ନିଜନିଜର ଦକ୍ଷତା ଏବଂ ଯୋଗ୍ୟତା ବଳରେ ସେମାନେ ନିଯୁକ୍ତି ପାଇଥିଲେ । କର୍ମକ୍ଷେତ୍ରରେ ସେମାନେ ତାହା ପ୍ରମାଣିତ କରିଛନ୍ତି । ହିନ୍ଦୁ, ବୌଦ୍ଧ, ଇସଲାମ ଏବଂ ଖ୍ରିସ୍ତାନ ଧର୍ମର ଅପୂର୍ବ ସମନ୍ୱୟ ତାଙ୍କଠାରେ ଦେଖିବାକୁ ମିଳୁଥିଲା । ବାବୁଜୀଙ୍କର ପ୍ରଖର ସ୍ମରଣ ଶକ୍ତି ସଂପର୍କରେ ମୋର ଆଉ ଗୋଟିଏ କଥା ମନେପଡିଗଲା । ଥରେ କେହି ଜଣେ ବିଶିଷ୍ଟ ଅତିଥି 'ସମାଜ' କୁ ଆସିବାର ଥାଏ । ତାଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥାଏ । ସେହି ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଭୋଜନ କରିବା ନିମନ୍ତେ ଆଉ କିଛି ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥାଏ । ବାବୁଜୀଙ୍କର ତ ଅଭ୍ୟାସ ହେଉଛି ଅତିଥି ଆସିବାର ଅଧଘଣ୍ଟା ପୂର୍ବରୁ ସେ ପ୍ରସ୍ତୁତ ହୋଇ ଆସି ପୋର୍ଟିକୋରେ କିମ୍ବା ହଲରେ ଅପେକ୍ଷା କରିବେ । 'ସମାଜ'ର ହଲରେ ବାବୁଜୀଙ୍କ  ସହିତ ମୁଁ ମଧ୍ୟ ଥାଏ । ହଲରେ ସେ ବୁଲୁଥାଆନ୍ତି । ଏହି ସମୟରେ ପଚାରିଦେଲି ବାବୁଜୀ ଆମର ଏହି ହଲରେ ବିବେକାନନ୍ଦଙ୍କର ଫଟୋ ନାହିଁ । ସେଥିରୁ ଗୋଟିଏ ଆଣି ଲଗାଇଲେ ଭଲ ହୁଅନ୍ତା । ଏହା ଶୁଣିବାମାତ୍ରେ ସେ କହିଲେ

ଭଲ କରି ଦେଖିଛ ? ମୁଁ ଆଜ୍ଞା ହଁ କହିବାପରେ ସେ ମତେ ଟାଣି ନେଇ ଯେଉଁ ସ୍ଥାନରେ ବିବେକାନନ୍ଦଙ୍କର ଫଟୋ ଥିଲା ତାହା ଦେଖାଇଦେଲେ । ଏଥିରୁ ମୁଁ ଜାଣିଲି ଯେ କେତେ ବର୍ଷ ପୂର୍ବେ ସେହି ଫଟୋ ଲଗାଯାଇଥିବ । ତାହାକୁ ମଧ୍ୟ ବାବୁଜୀ ମନେ ରଖିଛନ୍ତି । ଏହା ତାଙ୍କର ପ୍ରଚଣ୍ଡ ସ୍ମରଣ ଶକ୍ତି ନୁହେଁ ତ ଆଉ କଣ ?

ବାବୁଜୀ କାହିଁକି ତାଙ୍କର ଉତ୍ତରାଧିକାରୀ ବାଛୁନାହାଁନ୍ତି ବୋଲି ମୁଁ ଥରେ ଗିରିଜା ବାବୁଙ୍କୁ ପ୍ରଶ୍ନ କରିବାରୁ ସେ କହିଥିଲେ ଏକଛତ୍ରବାଦୀ ମାଲିକ ବା ଶାସକ(ଡିକ୍ଟେଟର) ଉତ୍ତରାଧିକାରୀ ବାଛନ୍ତି ନାହିଁ । ଏହି କାରଣ ଯୋଗୁ ସେମାନଙ୍କ ପରେ ବ୍ୟବସ୍ଥାରେ ଘୋର ଅଧପତନ ହୁଏ । ରାଧାନାଥ ବାବୁ ଥିଲେ ବଦାନ୍ୟ ନିରଙ୍କୁଶ ଶାସକ (ବେନିଭୋଲେଣ୍ଟ ଡିକ୍ଟେଟର) । ଠିକଣା ସମୟରେ ନିଜର କନ୍ୟା ମନୋରମା ମହାପାତ୍ରଙ୍କୁ ଯଦି ଉତ୍ତରାଧିକାରୀ କରିଥାଆନ୍ତେ ତେବେ ସେ ବିଭିନ୍ନ କ୍ଷେତ୍ରରେ ଯେପରି ଅପଦସ୍ତ ହୋଇଛନ୍ତି ତାହା ହୋଇନଥାଆନ୍ତା । ମନୋରମା ଦେବୀ ଥିବା ପର୍ଯ୍ୟନ୍ତ 'ସମାଜ'ରେ ସାମାନ୍ୟ ଭାବେ ହେଲେବି ନୈତିକତା ଥିଲା । ତାହାପରେ ଯାହା ହେଲା ଇତିହାସ ହେଉଛି ତାହାର ସାକ୍ଷୀ । ତେବେ ସମୟ ସବୁ କିଛିର ବିଚାରକରେ । ଏହି ଦୁଇ ଦୁର୍ବଳତାକୁ ବାଦ ଦେଇ ଯଦି ବାବୁଜୀଙ୍କ ବ୍ୟକ୍ତିତ୍ୱର ସମୀକ୍ଷା କରାଯାଏ ତେବେ ଭାରତର ଅନ୍ୟତମ ଅତି ବିଚକ୍ଷଣ ବ୍ୟକ୍ତିର ସମ୍ମାନ ଲାଭ କରିବା ନିମନ୍ତେ ସେ ହେଉଛନ୍ତି ସଠିକ ବ୍ୟକ୍ତି । ତାଙ୍କର ସଂପାଦକୀୟ,ଝିଟିପିଟି କୁହେ,ସଂବାଦ ସବୁ କିଛି ହେଉଛି ଅନନ୍ୟ । ବାବୁଜୀଙ୍କ ପରି ଜଣେ ପ୍ରଖର ସ୍ମରଣଶକ୍ତି ସଂପନ୍ନ, ବିବେକବନ୍ତ, ଦକ୍ଷବ୍ୟକ୍ତିଙ୍କ ଆବିର୍ଭାବ ପୃଥିବୀପୃଷ୍ଠରେ କ୍ୱଚିତ ହୋଇଥାଏ । ଏପରି ଜଣେ ପୁରୁଷାର୍ଥ ସଂପନ୍ନ ବ୍ୟକ୍ତିଙ୍କୁ ଧରାରେ ଅବତରଣ କରାଇବାପାଇଁ ପ୍ରକୃତିକୁ ଖୁବ କମରେ ଶତାବ୍ଦୀଟିଏ ଲାଗିଯାଉଥିବାରୁ ସେ ଯଥାର୍ଥରେ ଶତାବ୍ଦୀ ପୁରୁଷ । ଏହି ଶତାବ୍ଦୀ ପୁରୁଷଙ୍କୁ ତାଙ୍କର ପୁଣ୍ୟ ଦିବସରେ ଆମର ପ୍ରଣାମ ।

# ସମ୍ପର୍କର ସେତୁ 'ସମାଜ ଓ ବାବୁଜୀ'

## କାନନ ଦାଶ

ଭୟଙ୍କର ସାମାଜିକ ଓ ପାରିବାରିକ ପ୍ରତିକୂଳ ପରିସ୍ଥିତିରେ ମୁଁ ସେଦିନ 'ସମାଜ'ର ଦ୍ୱାରସ୍ଥ ହୋଇଥିଲି ଚାକିରି ପାଇଁ । ସେତେବେଳେ ସାମ୍ବାଦିକତା ପାଠ୍ୟକ୍ରମର ସୁଯୋଗ ନ ଥିଲା ଓଡ଼ିଶାରେ । ମୁଁ ଯେ ଜଣେ ସହ-ସମ୍ପାଦକ ରୂପେ ନିଯୁକ୍ତି ପାଇପାରିବି ଏ ବିଶ୍ୱାସ ନ ଥିଲା । ୧୯୭୫ ଜୁନ୍ ୨୬ ତାରିଖରେ ସମ୍ପାଦକ ଡ. ରାଧାନାଥ ରଥଙ୍କୁ ଭେଟିଥିଲି । ସଂଯୋଗକ୍ରମେ ଦିନକ ପୂର୍ବରୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀ ପରିସ୍ଥିତି ଜାରି କରିଥାନ୍ତି । ଗଣମାଧ୍ୟମ ବିଶେଷକରି ସମ୍ବାଦପତ୍ର ଉପରେ ତାହାର କି ପ୍ରଭାବ ପଡ଼ିବ ସେ ସମ୍ପର୍କରେ ମୋର ଧାରଣା ନ ଥିଲା । ତେବେ ସେତେବେଳେ ପୁଣ୍ୟାତ୍ମା ଗୋପବନ୍ଧୁ ଦାସଙ୍କ ଜନ୍ମଶତବାର୍ଷିକୀ ପାଳନ ପାଇଁ 'ସମାଜ'ରେ ପ୍ରସ୍ତୁତି ଚାଲିଥିଲା । ଗୋପବନ୍ଧୁ ରଚନାବଳୀ ଶୀର୍ଷକରେ ତିନିଖଣ୍ଡ ପୁସ୍ତକ ରଚନା ବର୍ଷକ ମଧ୍ୟରେ ଶେଷ କରିବା ପାଇଁ ସ୍ଥିର ହୋଇଥିଲା । ଏଭଳି ଏକ ଲକ୍ଷ୍ୟଭିତ୍ତିକ ଦାୟିତ୍ୱ ନ୍ୟସ୍ତ କରାଯାଇଥାଏ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସାମ୍ବାଦିକ ଫକୀର ମିଶ୍ରଙ୍କ ଉପରେ । ରାଧାନାଥ ବାବୁଙ୍କ ନିର୍ଦ୍ଦେଶକ୍ରମେ ସେ ମୋତେ ଇଣ୍ଟରଭ୍ୟୁ କଲେ । ସେହିଦିନଠାରୁ ହିଁ ମୋର କାର୍ଯ୍ୟାରମ୍ଭ ହେଲା । ସମାଜ ସାପ୍ତାହିକ ଓ ସତ୍ୟବାଦୀ ପତ୍ରିକାରେ ଉତ୍କଳମଣିଙ୍କ ଦ୍ୱାରା ଲିଖିତ ସମଗ୍ର ରଚନାକୁ ସଂଗ୍ରହ କରି ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଚେତନାଭିତ୍ତିକ ବିଭାଗୀକରଣ ମାଧ୍ୟମରେ

ପାଣ୍ଡୁଲିପି ପ୍ରସ୍ତୁତି ଚାଲିଥାଏ । ଏ କ୍ଷେତ୍ରରେ ଫକୀର ବାବୁ ହିଁ ମୋତେ ଗାଇଡ୍ କରୁଥାନ୍ତି । ନିରବଚ୍ଛିନ୍ନ ପରିଶ୍ରମ ଫଳରେ ମୋ ଦାୟିତ୍ୱ ନିର୍ଦ୍ଧାରିତ ସମୟସୀମା ପୂର୍ବରୁ ଶେଷ ହୋଇଗଲା । ତେଣୁ କଟକ ସହରର ଛୋଟ-ବଡ଼ ଘଟଣା ରିପୋର୍ଟିଂ ଆରମ୍ଭ କଲି । ପେଶାଗତ ଜୀବନ ପାଇଁ ହିଁ ଏହା ଥିଲା ପ୍ରଥମ ସୁଯୋଗ ।

ପାଣ୍ଡୁଲିପି ପ୍ରସ୍ତୁତି ଶେଷ ହେଉଥିଲେ ମଧ୍ୟ ସେସବୁର ମନୋ କମ୍ପୋଜ୍, ପ୍ରୁଫ୍ ରିଡିଙ୍ଗ୍ ଓ ବାବୁଜୀ (ରାଧାନାଥବାବୁ)ଙ୍କଠାରୁ ମୁଖବନ୍ଧ ସଂଗ୍ରହ କରିବା ଦାୟିତ୍ୱ ମଧ୍ୟ ମୋର ଥିଲା । ମୁଖବନ୍ଧ ଶ୍ରୁତଲିଖନ ଆକାରରେ ସଂଗ୍ରହ କରିବା ବେଶ୍ କଷ୍ଟସାଧ୍ୟ ଥିଲା । ତାଙ୍କ ନିକଟରେ ଦାୟିତ୍ୱରେ ଥିବା ସହସମ୍ପାଦକ ନାରାୟଣ ମହାପାତ୍ର ସତର୍କ କରିଦେଇଥାନ୍ତି ମୋତେ । ଶ୍ରୁତଲିଖନ ନେଲାବେଳେ ମଝିରେ ଅଟକି କିଛି ପଚାରିଲେ ସେ ଚିଡ଼ିଯା'ନ୍ତି । ଏପରିକି ବେଳେବେଳେ ହାତରୁ କାଗଜ ଭିଡ଼ିନେଇ ତମେ କ'ଣ ଲେଖିଲ ତାକୁ ମଧ୍ୟ ଯାଞ୍ଚ କରନ୍ତି ବାବୁଜୀ । ସ୍ମରଣଶକ୍ତି ତାଙ୍କର ଏତେ ତୀକ୍ଷ୍ଣ ଯେ ଠିକଣା ଭାବେ ଲେଖି ନ ଥିଲେ ଶେଷ ପ୍ରୁଫ୍ ଦେଖିଲାବେଳେ ନିର୍ଦ୍ଦିଷ୍ଟ ଶବ୍ଦ ଓ ବାକ୍ୟ ଗଠନ ଶୈଳୀରେ ସାମାନ୍ୟ ଓଲଟ ବିଲଟ ହୋଇଥିଲେ ନିର୍ଘାତ ଗାଳି ନିଶ୍ଚୟ । ଯାହାହେଉ ଏହି ପ୍ରଥମ ପରୀକ୍ଷାରେ ସେଦିନ ମୁଁ ପାସ୍ କରିଗଲି । ଗୋପବନ୍ଧୁଙ୍କ ଶ୍ରାଦ୍ଧବାର୍ଷିକୀରେ ଏହି ୩ଟି ପୁସ୍ତକ ଉନ୍ମୋଚିତ ହେବାର କାର୍ଯ୍ୟକ୍ରମ ଥିଲା । ପୂର୍ବଦିନ ରାତିସାରା ପୁସ୍ତକ ମୁଦ୍ରଣ ଓ ଉତ୍ସବ ଆୟୋଜନ ନେଇ ମୁଁ ଓ ବନ୍ଧୁ ଦେବପ୍ରସାଦ ବ୍ୟସ୍ତ ଥିଲୁ । ତେଣୁ ରାତିରେ ଗୋପବନ୍ଧୁ ଭବନର ହଲ୍‌ରେ ଶୋଇଗଲୁ । ପରଦିନ ସକାଳୁ ଗଡ଼ଗଡ଼ିଆ ଘାଟରେ ତିଳତର୍ପଣ । ରାତି ଅନିଦ୍ରା ଓ କ୍ଳାନ୍ତିର ନିଦ ସହଜେ ଭାଙ୍ଗୁ ନ ଥାଏ । କେତେବେଳେ ରାତି ପାହିଛି ଜଣା ନାହିଁ । ହେ ପିଲେ ! ଉଠରେ କହି କହି ବାବୁଜୀ ହଲ୍‌କୁ ପଶିଆସିଲେ । ହାତରେ ଥାଏ ଛୋଟ ଡ଼ାଲରେ ଚା' । ସମ୍ପର୍କର ଡୋର କେତେ ମଜଭୁତ ମୁଁ ପ୍ରଥମେ ସେଦିନ ଅନୁଭବ

କଲି । ଦୁଇବନ୍ଧୁ ଉଠି ପଡ଼ିଲୁ । ଦେଖିଲୁ ବାବୁଜୀ ଚା' ଥୋଇ ଚାଲିଯାଇଛନ୍ତି । ନିତ୍ୟକର୍ମ ସାରି ଅନ୍ୟମାନେ ବାହାରିବା ପୂର୍ବରୁ ଆମ୍ଭେ ପ୍ରସ୍ତୁତ ହୋଇପଡ଼ିଲୁ ଗଡ଼ଗଡ଼ିଆ ଘାଟ ଯିବା ପାଇଁ ।

ବାବୁଜୀ ବିଭିନ୍ନ ସଂସ୍ଥା ସହ ଜଡ଼ିତ ଥିଲେ । ଦୈନନ୍ଦିନ କାର୍ଯ୍ୟସୂଚୀରେ ବହୁ ସଭାସମିତି ଓ ସମ୍ମିଳନୀରେ ଯୋଗ ଦେବା ମଧ୍ୟ ତାଙ୍କର ଅନ୍ୟତମ କାର୍ଯ୍ୟ ଥିଲା । ସେସବୁର ରିପୋର୍ଟିଂ କରିବା ପାଇଁ ସମସ୍ତଙ୍କର ଭାରି ଭୟ । ଏତେ ତଥ୍ୟପୂର୍ଣ୍ଣ ହିସାବ ସେ ତାଙ୍କ ବକ୍ତବ୍ୟରେ ରଖିଥାନ୍ତି ଯେ, ତାକୁ ଶୁଣି ଟିପି ଉପସ୍ଥାପନ କରିବା କାଠିକର ପାଠ । କିଛି ତ୍ରୁଟି ରହିଗଲେ ବାବୁଜୀ ଡକାଇ ଗାଳି ଦିଅନ୍ତି । ବାର୍ତ୍ତା ସମ୍ପାଦକ ଉଦୟନାଥ ବାବୁ ରିପୋର୍ଟିଂ କରିବା ପାଇଁ ଯାହାକୁ ବରାଦ କରିବେ ସେ ଯିବାକୁ ବାଧ୍ୟ । 'ସମାଜ' ନ୍ୟୁଜ୍ ଡେସ୍କରେ ବୟସ୍କଙ୍କ ପ୍ରାଧାନ୍ୟ ବେଶି । ଅଥଚ ବାବୁଜୀ ଟୋକାଙ୍କୁ ମହଣାଇ ଆଉ ଗୋଟିଏ ପିଢ଼ି ପାଇଁ ପ୍ରସ୍ତୁତିପର୍ବ ଆରମ୍ଭ କରିଦେଇଥାନ୍ତି । ତାଙ୍କ ଗାଳିମନ୍ଦ ସହି ଯିଏ ତିଷ୍ଠିଗଲା ସେ ହିଁ କ୍ୟାରିୟର ଗଢ଼ିପାରିବ । ତେଣୁ ଅପରିପକ୍ୱ ଓ ଅନଭିଜ୍ଞ ଟୋକା ସାମ୍ବାଦିକଙ୍କୁ ଦାୟିତ୍ୱ ଦେଇ ଉଦୟନାଥ ବାବୁ ପରୋକ୍ଷରେ ସେମାନଙ୍କ ପାଇଁ ଗାଳିର ବ୍ୟବସ୍ଥା କରିଥାନ୍ତି । ସେଦିନ ଥାଏ ମୋ ଜୀବନର ପ୍ରଥମ ରିପୋର୍ଟ ଫାଇଲ୍ କରିବା । ବାରବାଟୀ ଷ୍ଟାଡ଼ିୟମରେ ଥାଏ ରାଜ୍ୟ ଏଏସ୍‌ଓ ଏବଂ କାନୁନ୍‌ଗୋ ସଂଘର ସମ୍ମିଳନୀ । ରାଜସ୍ୱମନ୍ତ୍ରୀ ବ୍ରଜ ମହାନ୍ତିଙ୍କ ସହ ବାବୁଜୀ ଥା'ନ୍ତି ଅତିଥି । ସବୁ ତଥ୍ୟ ଟିପିଆଣିଥିଲି । ରାତି ଅନିଦ୍ରା ହୋଇ ସମ୍ମିଳନୀର ବିବରଣୀ ଲେଖିଚାଲିଲି । ପରଦିନ ଉଦୟନାଥ ବାବୁଙ୍କୁ ମୁଁ ଲେଖିଥିବା ରିପୋର୍ଟ ଦେଲି । ଏହି ସୁଦୀର୍ଘ ରିପୋର୍ଟକୁ ଦେଖି ସେ କେବଳ ତାଚ୍ଛଲ୍ୟ କଲେ ନାହିଁ ବିରକ୍ତ ହୋଇ ଫୋପାଡ଼ିଦେଲେ । ଘରସାରା କପିଲେଖା କାଗଜ ଉଡୁଥାଏ । ସେତେବେଳେ ପଶିଆସିଲେ ଫକୀର ବାବୁ । କାହାକୁ କିଛି ନ କହି ସେ ମୋ ହାତଲେଖା କାଗଜକୁ ତଳୁ ଗୋଟାଇଲେ । ଉଦୟନାଥ ବାବୁଙ୍କୁ କହିଲେ, ଆପଣ ବ୍ୟସ୍ତ

ହୁଅନ୍ତୁନି, ମୁଁ ଏଡିଟ୍ କରିଦେବି । ମୋତେ ସାଙ୍ଗରେ ଡାକିନେଇ ଚା' ପିଆଇଲେ ଓ କପି ସଂଶୋଧନ ଆରମ୍ଭ କଲେ ଫକୀର ବାବୁ । ସୁଦୀର୍ଘ ରିପୋର୍ଟରୁ ଅନାବଶ୍ୟକ ଅଂଶ କାଟିଦେଇ ଭଲ ଇଣ୍ଟ୍ରୋ ସହ ହେଡିଂଟିଏ ବସାଇଦେଲେ ସେହି ରିପୋର୍ଟରେ ସେ । ସେଦିନ ସାନ୍ଧ୍ୟ ସଂସ୍କରଣରେ ମୋର ପ୍ରଥମ ରିପୋର୍ଟ ବାହାରିଲା । ପରଦିନ ଉଦୟନାଥ ବାବୁଙ୍କୁ ଡକାଇ ବାବୁଜୀ ପଚାରିଲେ କିଏ ରିପୋର୍ଟିଂ କରିଛି । ପରେ ପରେ ମୁଁ ଗଲି ଭେଟିବା ପାଇଁ ତାଙ୍କୁ । ବାଃ, କହି ସେଦିନ ପିଠିରେ ସେ ଯେଉଁ ହାତ ଥାପିଥିଲେ ତାହା ହିଁ ମୋ ଭିତରେ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲା । ତେଣିକି ଆଉ ପଛକୁ ଫେରି ଚାହିଁବାର ଅବକାଶ ନ ଥିଲା । ସେହିଦିନଠାରୁ ମୋତେ ମଧ୍ୟ ନିୟମିତ ବାବୁଜୀଙ୍କ ସଭାସମିତି ରିପୋର୍ଟିଂ କରିବାକୁ ପଡ଼ିଲା ।

ଜରୁରୀ ପରିସ୍ଥିତି ବେଳେ କଠୋର ଯାଞ୍ଚ ପରିସରକୁ ଆସିଥିଲା ସମ୍ବାଦପତ୍ର । ଦୈନିକ 'ସମାଜ' ମଧ୍ୟ ସେଥିରୁ ବାଦ୍ ପଡ଼ି ନ ଥିଲା । ଯଥାସମ୍ଭବ ସଂଯମତା ରକ୍ଷାକରି ଆମେ ସମ୍ବାଦ ପରିବେଷଣ କରିଥିଲୁ । ସନ୍ଧ୍ୟାରେ ମୁଦ୍ରଣ ଆରମ୍ଭ ହେବା ପୂର୍ବରୁ ଡିପିଆର୍‌ଓ ଅଭୟ ମହାପାତ୍ର ଆସି ପହଞ୍ଚିଯାଉଥିଲେ । ଜେନେରାଲ୍ ମ୍ୟାନେଜର ଫକୀର ଚରଣ ଦାସ ହିଁ ଅଭୟବାବୁଙ୍କ ଆପତ୍ତି ଅଭିଯୋଗ ଶୁଣୁଥିଲେ । ମୁଦ୍ରିତ ହେବାକୁ ଥିବା କାଗଜର ପ୍ରଥମ କପି ଯାଞ୍ଚବେଳେ କିଛି ସମ୍ବାଦ ସଂପୂର୍ଣ୍ଣ ରୂପେ ବାଦ୍ ଦେବାକୁ ଏପରିକି କିଛି ଅଂଶ କାଟି ଦେବା ସକାଶେ ସେ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ବାବୁଜୀଙ୍କ ନିର୍ଦ୍ଦେଶ, ପ୍ରସ୍ତୁତି ହୋଇଥିବା ପ୍ଲେଟ୍‌ରୁ ସେସବୁକୁ ତ ଉଠାଇ ହେବନି, ତେଣୁ ବଟାଳି ମାରି ତାହାକୁ ପଢ଼ି ନ ହେଲା ଭଳି ବିକୃତ କରାଯାଉଥିଲା । ଏହାର ଭିତିରି ଉଦ୍ଦେଶ୍ୟ ଥିଲା ପାଠକ ଅନ୍ତତଃ ଅନୁଭବ କରିପାରିବ ଯେ, ସରକାରଙ୍କ ପକ୍ଷରୁ ଯାଞ୍ଚ ହେଉଛି ଓ ସଠିକ୍ ତଥ୍ୟ ପରିବେଷଣ କରିବା ସମ୍ଭବ ନୁହେଁ । ତେବେ 'ସମାଜ'ରେ ଏହାକୁ କେନ୍ଦ୍ରକରି ସେଭଳି କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇନି,

ଯେଉଁଥିପାଇଁ ବାବୁଜୀଙ୍କୁ କୈଫିୟତ ଦେବାକୁ କିମ୍ବା ସରକାରୀ ନାଲିଆଖିର ସମ୍ମୁଖୀନ ହେବାକୁ ପଡ଼ିଚି । ସେତେବେଳେ 'ପ୍ରଜାତନ୍ତ୍ର'ର ସମ୍ପାଦକ ହରେକୃଷ୍ଣ ମହତାବଙ୍କୁ ଗିରଫ କରାଯାଇଥିବାରୁ ଆମେ ପରିସ୍ଥିତିର ଗମ୍ଭୀରତା ଅନୁଭବ କରି ନିଜଆଡୁ ଯଥାସମ୍ଭବ ସତର୍କତା ଅବଲମ୍ବନ କରିଥାଉ । ଏସବୁ ସତ୍ତ୍ୱେ ଆମର କିଛି କିଛି ସମ୍ବାଦକୁ ପାଠକ ପଢ଼ି ନ ପାରିଲା ଭଳି ବିକୃତ କରାଯାଉଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ସହ ଆମ ଭୁବନେଶ୍ୱର ରିପୋର୍ଟର ନାରାୟଣ ବାବୁଙ୍କ ବ୍ୟକ୍ତିଗତ ସମ୍ପର୍କ ବେଶ୍ ଭଲ ଥିବାରୁ ସେ ବାବୁଜୀଙ୍କ ସହ ଯୋଗାଯୋଗ ରକ୍ଷାକରି ଆବଶ୍ୟକ ପରାମର୍ଶ ଦେଉଥିଲେ । କାରଣ ସେତେବେଳେ ନନ୍ଦିନୀ ଦେବୀଙ୍କ ସହ ବିଭିନ୍ନ କାରଣରୁ ବାବୁଜୀଙ୍କ କଟୁତିକ୍ତ ସମ୍ପର୍କ ଆମକୁ କେତେକ କ୍ଷେତ୍ରରେ ଅସୁବିଧାରେ ପକାଉଥିଲା । ତେଣୁ ନାରାୟଣବାବୁ ସମ୍ପର୍କର ସେତୁ ପାଲଟିଲେ । ସେ ଯାହାହେଉ, କୌଣସିପ୍ରକାରେ ଜରୁରୀ ପରସ୍ଥିତିର ଦୁଃସମୟକୁ ଆମେ ସୁରୁଖୁରୁରେ ଅତିକ୍ରମ କରିଗଲୁ ।

ବାବୁଜୀଙ୍କ ସଚିବ ରୂପେ କାର୍ଯ୍ୟ କରୁଥିବା ସହସମ୍ପାଦକ ନାରାୟଣ ମହାପାତ୍ର ନିଜ ଅସୁସ୍ଥତା ଦର୍ଶାଇ ଡେସ୍କକୁ ସ୍ଥାନାନ୍ତର ହୋଇଥାନ୍ତି । ତେଣୁ ତାଙ୍କ ସ୍ଥାନରେ ମୋତେ ସମ୍ପାଦକୀୟ ଡିକ୍ଟେସନ ନେବାକୁ ପଡ଼ିଲା । ଏହାକୁ ବାଦ୍ ଦେଲେ ବାବୁଜୀଙ୍କ ଅନ୍ୟ ସମସ୍ତ କାର୍ଯ୍ୟ ତୁଲାଉଥାଏ ବନ୍ଧୁ ଦେବପ୍ରସାଦ । ଜରୁରୀ ପରିସ୍ଥିତି ଉଠିଯିବା ପରେ ସେଦିନ ବିଜୁବାବୁ ଜେଲ୍‌ରୁ ମୁକ୍ତହୋଇ ଆସିଥାନ୍ତି ବାବୁଜୀଙ୍କୁ ଭେଟିବା ପାଇଁ । କଟକ ରିପୋର୍ଟର ମନମୋହନ ସାହୁ ମୋତେ ଏ ସମ୍ପର୍କରେ ଆଗୁଆ ସୂଚନା ଦେଇଥାନ୍ତି । ତେବେ ମୁଁ ନିର୍ଦ୍ଦିଷ୍ଟ ଭାବେ ଜାଣି ନ ଥାଏ ସେ କେତେବେଳେ ଆସିବେ । ବାବୁଜୀଙ୍କ ତଳ ଅଫିସ୍‌ରେ ମୁଁ ଏକୁଟିଆ ବସିଥାଏ । ବାହାଦୂର ଖବର ଦେଲା ବିଜୁବାବୁଙ୍କ ଆଗମନ ସମ୍ପର୍କରେ । ସେ ଆସି ବସିଗଲେ ବାବୁଜୀଙ୍କ ଚୌକିରେ । ସଂଗେ ସଂଗେ ସେଠାରେ ବସି ସିଗାରେଟ୍ ମଧ ଲଗାଇଲେ ।

ଏଭଳି ଏକ ପରିସ୍ଥିତିରେ ମୁଁ ନିଜକୁ ଭାରି ଅପ୍ରସ୍ତୁତ ମନେ କରୁଥାଏ । କୌଣସିପ୍ରକାରେ ବୁଝାଇ ବିଜୁବାବୁଙ୍କ ହାତରୁ ସିଗାରେଟ୍ ଫୋପାଡ଼ିବା ସହ ତାଙ୍କୁ ପାଖ ଚୌକିରେ ବସାଇଲି । ସେତେବେଳେ ବାବୁଜୀ ଉପରମହଲାରେ କାର୍ଯ୍ୟବ୍ୟସ୍ତ ଥା'ନ୍ତି । ମୁଁ ଯାଇ ତାଙ୍କୁ ବିଜୁବାବୁ ଅପେକ୍ଷା କରିଥିବା କଥା କହିଲି । ସେ ମଧ୍ୟ ସଂଗେସଂଗେ ତଳ ଅଫିସ୍‌କୁ ଆସିଲେ । ଦୁଇଜଣଙ୍କ ମଧ୍ୟରେ ବେଶ୍ କିଛି ସମୟ ଧରି ନିଭୃତ ଆଲୋଚନା ଚାଲିଲା । ଫେରିଗଲାବେଳେ ବିଜୁବାବୁ ମୋତେ ପଚାରିଲେ, 'କାନନ୍ କେମିତି ଅଛୁ' । ଏଭଳି ପ୍ରଶ୍ନରେ ମୁଁ ଅବାକ୍ ହୋଇଗଲି, ମୋ ନା ସେ କେମିତି ଜାଣିଲେ । ପରେ ଅବଶ୍ୟ ମୁଁ ବୁଝିଗଲି ଯେ, ଏସବୁ କାରବାର ଆମ କଟକ ରିପୋର୍ଟର ମନମୋହନ ସାହୁଙ୍କର ।

ବେଶ୍ କିଛି ବର୍ଷ ଧରି ବାବୁଜୀଙ୍କ ଡ଼ିକ୍ଟେସନ ନେଇଥିବାରୁ ତାଙ୍କ ପରିବାର ସହ ସମ୍ପର୍କ ନିବିଡ଼ ହୋଇଯାଇଥାଏ । ପ୍ରତିବର୍ଷ ଦୁର୍ଗାପୂଜା ସମୟରେ କର୍ମଚାରୀ ବୋନସ୍ ପାଇଁ ଦାବି କରିଥାନ୍ତି । ଏହି ବୋନସ ନିର୍ଦ୍ଧାରଣ ନେଇ କର୍ମଚାରୀ ଓ ବାବୁଜୀଙ୍କ ମଧ୍ୟରେ ରୀତିମତ ଟଣାଓଟରା ଚାଲିଥାଏ । ସଂସ୍ଥାର ଲାଭ ହେଉ ନ ହେଉ କର୍ମଚାରୀ କିନ୍ତୁ ବୋନସ୍ ପାଇବେ । ଜରୁରୀ ପରିସ୍ଥିତି ପାଇଁ 'ସମାଜ'ର ବିଜ୍ଞାପନ ବାବଦ ଉପାର୍ଜନ ସେବର୍ଷ ବେଶ୍ କମିଯାଇଥାଏ । ଏସବୁ ସତ୍ତ୍ୱେ କର୍ମଚାରୀଙ୍କ ବେତନ ଓ ବୋନସରେ ବାବୁଜୀ ଊଣା କରି ନଥାନ୍ତି । ଏମିତି ଦେଖିବାକୁ ଗଲେ ଦୁର୍ଗାପୂଜା ଭଳି ବ୍ୟୟବହୁଳ ମାସରେ 'ସମାଜ' ଆର୍ଥିକ ଦୁର୍ଗତି ନେଇ ବାବୁଜୀ ଚିନ୍ତାରେ ଥାଆନ୍ତି । କର୍ମଚାରୀ କିନ୍ତୁ କିଛି ବୁଝିବାକୁ ନାରାଜ । ଯେମିତିହେଲେ ପୂର୍ବବର୍ଷ ହାରର ବୋନସ୍ ନେବେ । ଜେନେରାଲ୍ ମ୍ୟାନେଜର ଫକୀରବାବୁ ନିଜର ଅସହାୟତା ପ୍ରକାଶ କରୁଥାନ୍ତି ବାବୁଜୀଙ୍କ ନିକଟରେ । ସେତେବେଳେ ଚାଉଳିଆଗଞ୍ଜର ସୁନାମଧନ୍ୟ ବ୍ୟବସାୟୀ ବନମାଳୀ ସାହୁଙ୍କ ସହ ବାବୁଜୀଙ୍କ ସମ୍ପର୍କ ବେଶ୍ ଭଲ ଥିଲା । ସେ ତାଙ୍କୁ ପୁତ୍ରପ୍ରତିମ ଭଳି ଶ୍ରଦ୍ଧା କରୁଥିଲେ ।

ଏଭଳି ଏକ ଆର୍ଥିକ ସଂକଟ ମଧ୍ୟରେ କର୍ମଚାରୀଙ୍କୁ ବୋନସ୍ ଦେବାକୁ ପଡୁଥିବାରୁ ସେ ବନମାଳୀ ବାବୁଙ୍କୁ ଡକାଇ ପଠାଇଲେ । ମା'ଙ୍କ ଅଳଙ୍କାର ବନ୍ଧା ଦେଇ କିଛି ଟଙ୍କା ଧାରସୂତ୍ରରେ ତାଙ୍କଠାରୁ ନେବାକୁ ଚାହିଁଲେ । ବାବୁଜୀଙ୍କଠାରୁ ଏକଥା ଶୁଣି କାନ୍ଦକାନ୍ଦ ଅବସ୍ଥାରେ ବନମାଳୀ ବାବୁ ବାରମ୍ବାର ହାତ ଯୋଡୁଥାନ୍ତି । ଶେଷରେ କଥା ଛିଣ୍ଡିଲା ବିନା ବନ୍ଧକ ଓ ସୁଧରେ ସେ ଟଙ୍କା ଦେବେ । ସମୟ ସୁବିଧା ଦେଖି ସେ ଟଙ୍କା 'ସମାଜ' ତାଙ୍କୁ ଫେରାଇଦେବ । ମୁଁ ଉହାଡ଼ରେ ରହି ଏହି ଦୃଶ୍ୟ ଦେଖୁଥାଏ । ତେଣିକି ସେ କେତେବେଳେ ଟଙ୍କା ଦେଲେ ଓ ନେଲେ ତାହା ଜାଣିବାର ଅବକାଶ ମୋର ନ ଥିଲା । କିନ୍ତୁ ସେସବୁର ମୂକସାକ୍ଷୀ ଥିଲେ ରିପୋର୍ଟର ମନମୋହନ ସାହୁ । ସମୟକ୍ରମେ ବନମାଳୀ ବାବୁ ହୋଇଗଲେ 'ସମାଜ' ପରିବାରର ଅନ୍ୟତମ ସଦସ୍ୟ । ଏହି ଟଙ୍କା ଧାର-ଉଧାର ପ୍ରଥମ କି ଶେଷ ଘଟଣା ନ ଥିଲା । ତେବେ ମୋ ନଜରକୁ ଆସିବାରେ ତାହା ଥିଲା ଶେଷ ଦୁଃଖଦ ମୁହୂର୍ତ୍ତ ।

ପ୍ରଜାମଣ୍ଡଳ ଆନ୍ଦୋଳନ ଏବଂ ସ୍ୱାଧୀନତା ପରବର୍ତ୍ତୀ ରାଜନୈତିକ ଘଟଣା ପ୍ରବାହରେ ମୋ ବାପା ଥିଲେ ବାବୁଜୀଙ୍କ ଅନ୍ୟତମ ନିକଟତମ ସହଯୋଗୀ । କର୍କଟରୋଗରେ ପୀଡ଼ିତ ବାପାଙ୍କ ବ୍ୟୟବହୁଳ ଚିକିତ୍ସା ଖର୍ଚ୍ଚ ତୁଲାଇବାରେ ବାବୁଜୀଙ୍କ ସହାୟତା ଦୃଷ୍ଟିରୁ ଆମ ପରିବାର ଅନେକାଂଶରେ ଋଣି ହୋଇଯାଇଥାନ୍ତି ତାଙ୍କ ନିକଟରେ । ତେଣୁ ଆମ ଭିତରେ ପାରିବାରିକ ସମ୍ପର୍କ ନିବିଡ଼ ଥାଏ । ଏହା ଯେ ଦିନେ ତିକ୍ତତାରେ ପରିଣତ ହେବ ମୁଁ କେବେ ଭାବି ନ ଥିଲି । ବାବୁଜୀ ମଧ୍ୟ ରାଗିଲେ ଅଗ୍ନିଶର୍ମା, ତାଙ୍କୁ ବୁଝାଇବା କଷ୍ଟକର । ମୋତେ ମା' ସବୁ ସମୟରେ ବୁଝାଇଥାନ୍ତି ତାଙ୍କର ମୁହୂର୍ତ୍ତିକ ରାଗକୁ ସମ୍ଭାଳିଗଲେ ଆଉ କିଛି ଅସୁବିଧା ରହିବନି । ସେଦିନ ଅପେକ୍ଷାକୃତ ବିଳମ୍ବରେ ସମ୍ପାଦକୀୟ ଡିକ୍ଟେସନ ନେଉଥାଏ । ମୋର ଧାରଣା ନ ଥାଏ ଯେ, ବାବୁଜୀ ସେଦିନ ମଧ୍ୟାହ୍ନ ଭୋଜନ କରିନାହାନ୍ତି । କାମ ଭିତରେ ମା'

ବାରମ୍ବାର ଆସି ଡାକୁଥାଆନ୍ତି ଖାଇବା ପାଇଁ । ବାବୁଜୀ ରାଗରେ ପଞ୍ଚମ । ସେଇ ଏକା ଜିଦ୍ ଖାଇବିନି । ଅବଶ୍ୟ ବିଳମ୍ବରେ କାରଣ କ'ଣ ମୁଁ ବୁଝିଗଲି । ସେଦିନ ଥାଏ ଗୁରୁବାର ସଂକ୍ରାନ୍ତି । ତେଣୁ ଘରେ ଆମିଷ ହେବନି । କିନ୍ତୁ ବାବୁଜୀଙ୍କର ଏକା ଜିଦ୍ ସେ ବାଲୁଗାଁରୁ ଶୁଖୁଆ ମଞ୍ଜିଭଜା ଖାଇବେ । ଶେଷରେ ତାଙ୍କ ଜିଦ୍ ନିକଟରେ ମା' ହାର ମାନିଲେ । ଶୁଖୁଆମଞ୍ଜି ଭାଜିବା ପରେ ବାବୁଜୀ ଭାତ ଖାଇଲେ । ଏମିତି ଦେଖିବାକୁ ଗଲେ, ମୁଁ ନିଜେ ମଧ ବଦ୍‌ରାଗୀ । ଘଟଣାକ୍ରମେ ଚାକିରି ଛାଡ଼ି ଚାଲିଯିବା ପାଇଁ ମୁଁ ଦୁଇଥର ଇସ୍ତଫା ଦେଇଛି । ବାବୁଜୀ ଚିରି ଫୋପାଡ଼ି ଦେଇ ପୁଣିଥରେ ଡକାଇ ପଠାନ୍ତି ଆସି କାମ କରିବା ପାଇଁ । ସେହିଭଳି ଏକ ଘଟଣାକ୍ରମେ ବାବୁଜୀଙ୍କ ସହ ମୋର ସମ୍ପର୍କ ତିକ୍ତତାର ଶେଷ ସୀମାରେ ପହଞ୍ଚିଥିଲା । ଡାକିଥିବା ସମ୍ପାଦକୀୟର ଶେଷ ପ୍ରୁଫ୍ ସେ ଦେଖୁଥାଆନ୍ତି । ପାଖରେ ମୁଁ ଠିଆ ହୋଇଥାଏ । ତାଙ୍କୁ ନ ପଚାରି ମୁଁ କିଛି ପରିବର୍ତ୍ତନ କରିଦେଇଥିଲି ସମ୍ପାଦକୀୟରେ । ସେହିଠାରେ ଅଟକିଯାଇ ସେ ମୋତେ ପଚାରିଲେ ତମକୁ କିଏ କହିଲା ବଦଳାଇବାକୁ । ଅଭ୍ୟାସବଶତଃ ଦେଶଦୁନିଆର ଖବର ସମ୍ପର୍କରେ ନିଜକୁ ଅପ୍‌ଡେଟ୍ କରୁଥିବାରୁ ସମ୍ପାଦୀକୟର ଆବଶ୍ୟକତା ଦୃଷ୍ଟିରୁ ସେଦିନ ମୁଁ ବଦଳାଇଥିଲି । ଏହାର ଆବଶ୍ୟକତା ଥିବା ଦର୍ଶାଇ ଯୁକ୍ତି କରିବାରୁ ସେ ଭୟଙ୍କର ଭାବରେ ରାଗିଗଲେ । ମୋତେ କହିଲେ, ରାସ୍ତାରୁ ଗୋଟାଇଆଣି ମଣିଷ କରିଛି, ତମର ଏତେ ଔଦ୍ଧତ୍ୟ, ମୋ ମୁହଁରେ ଜବାବ ଦେଉଛ । ଏଭଳି କିଛି କଥା ମୋ ପାଇଁ ଅସହାୟ ହୋଇପଡ଼ିଥିଲା । ଉତ୍ତରରେ ଏଭଳି କିଛି ମନ୍ତବ୍ୟ ଦେଲି ଯାହାକି ବାବୁଜୀ ସହ୍ୟ କରିବା ଅସମ୍ଭବ ହୋଇପଡ଼ିଥିଲା । ଘଟଣା ଏତେଦୂର ଚାଲିଗଲା ଯେ, ସେ ମୋ ମୁହଁ ଚାହିଁବେ ନାହିଁ ବୋଲି କହିଲେ । ସେହିଦିନଠାରୁ ତାଙ୍କର ବ୍ୟକ୍ତିଗତ ଦପ୍ତରରୁ ମୁଁ ନିଜକୁ ଦୂରେଇନେଲି । ସମ୍ପର୍କର ନିବିଡ଼ତା ଦୃଷ୍ଟିରୁ ମା' ମୋତେ ଉପରକୁ ଆସିବା ପାଇଁ ବାରମ୍ବାର ଡାକିଲେ ମଧ ମୁଁ ଗଲି ନାହିଁ ।

ପରଦିନଠାରୁ ମୁଁ ସମ୍ପାଦକୀୟ ବିଭାଗର ଡେସ୍କରେ କାମ କଲି । ଆନନ୍ଦ ପାଣି ଥାଆନ୍ତି ଦାୟିତ୍ୱରେ । ଅଭ୍ୟାସ ଆରମ୍ଭ କରିବାକୁ ସେ ଛୋଟ ଛୋଟ ପିଟିଆଇ,ୟୁଏନ୍‌ଆଇ କପି ଦିଅନ୍ତି ମୋତେ । ସମ୍ପାଦକୀୟ ବିଭାଗରେ ଅପେକ୍ଷାକୃତ କମ୍ ବୟସର ଶାରଦା ପ୍ରସନ୍ନ ନନ୍ଦ ହୋଇଥିବାରୁ ତାଙ୍କ ପାଖରେ ବସି ଜାତୀୟ, ଅନ୍ତର୍ଜାତୀୟ ସମ୍ବାଦ କିପରି ସମ୍ପାଦନା କରିବାକୁ ହୁଏ ଶିଖିଲି । ସେ ମୋତେ ବୁଝାଇଲେ, ସମ୍ପାଦନା କରିବା ଅର୍ଥ ଇଂରାଜୀରୁ ଓଡ଼ିଆ ଅନୁବାଦ କରିବା ନୁହେଁ । ଆମ ସମ୍ବାଦପତ୍ରର ଆବଶ୍ୟକତା ଅନୁଯାୟୀ ଯେତିକି ଦରକାର ମୂଳ କପିରୁ ଆମେ ସେତିକି ନେବା । ଏପରିକି ଏଜେନ୍ସି କପିର ଇଣ୍ଟ୍ରୋ ଓ ହେଡ୍‌ଲାଇନ୍ ମଧ୍ୟ ଆମେ ବଦଳାଇପାରିବା । ପ୍ରାୟ ଦୁଇ ମାସ ଲାଗିଗଲା ଢାଞ୍ଚାରେ ପଡ଼ିବା ପାଇଁ । ପାଣିବାବୁଙ୍କ ବିଶ୍ୱାସ ଆସିଗଲା ମୋ ଉପରେ । ସେ ମୋତେ ଫାଷ୍ଟ ଷ୍ଟୋରୀଠାରୁ ଆରମ୍ଭକରି ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ନ୍ୟୁଜ୍ ଦେଲେ କରିବାକୁ । ଏକଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା, କିଏ କେଉଁ ନ୍ୟୁଜ୍ କରୁଛି ତାହା ଉପରେ ବାବୁଜୀଙ୍କ ନିଘା ଥାଏ । କାରଣ ଏଜେନ୍ସି କପି କରିସାରିବା ପରେ ସେଥିରେ ଛକି ପକାଇ ନିଜର ନାମ ଲେଖିବାକୁ ପଡ଼େ । ବାବୁଜୀ ସେହି ଏଜେନ୍ସି କପି ଓ ସମ୍ବାଦପତ୍ରରେ ପ୍ରକାଶିତ ସେ ସଂକ୍ରାନ୍ତ ସମ୍ବାଦକୁ ମିଳାଇ ଦୋଷତ୍ରୁଟି ବାଛିଥାନ୍ତି । ଏପରିକି ସଂପୃକ୍ତ ସହସମ୍ପାଦକଙ୍କୁ ଡକାଇ ସ୍ଥଳବିଶେଷରେ ଗାଳି ମଧ୍ୟ ଦିଅନ୍ତି । ପରିସ୍ଥିତି ଚାପରେ ବାବୁଜୀଙ୍କ ପାଖରୁ ଆସି ଡେସ୍କରେ କାମ କରିବା ମୋ ପାଇଁ ଆଶୀର୍ବାଦ ଥିଲା । ଏମିତି ସମୟ ଆସିଲା ଡେସ୍କରେ ସବୁଠାରୁ ଅଧିକ ନ୍ୟୁଜ୍ ଦେଉଥିବା ସହସମ୍ପାଦକ ରୂପେ ମୁଁ ପରିଗଣିତ ହେଲି ଓ ମୋ ଦକ୍ଷତାକୁ ସ୍ୱୀକୃତି ମିଳିଲା । ଏଥିମଧ୍ୟରୁ ତିନିବର୍ଷ ଅତିକ୍ରମ କରିଯାଇଥାଏ । କୌଣସି ପରିସ୍ଥିତିରେ ମୁଁ ବାବୁଜୀଙ୍କ ମୁହାଁମୁହିଁ ହୋଇନି । ମୁଁ ଜଣେ ଟିଙ୍ଗା ଓ ବଦ୍‌ରାଗୀ ବୋଲି ଅଫିସରେ ସମସ୍ତେ ଜାଣିଥାନ୍ତି । ସବୁଦିନ ଭଳି ସେଦିନ ପାଣିବାବୁ ଯାଇଥାନ୍ତି ବାବୁଜୀଙ୍କୁ ଭେଟିବା ପାଇଁ । କାହା ନ୍ୟୁଜ୍ ଉପରେ

ବାବୁଜୀ ବିରକ୍ତ ଓ ଅସନ୍ତୋଷ ପ୍ରକାଶ କରିଛନ୍ତି ତାହା ଜାଣିବା ପାଇଁ ସମସ୍ତେ ପାଣିବାବୁଙ୍କ ଫେରିବାକୁ ଅପେକ୍ଷା କରିଥାନ୍ତି । ସେଦିନ କିନ୍ତୁ ମୋ ସମ୍ପର୍କରେ ବେଶ୍ କିଛି ସମୟ ଧରି ପାଣିବାବୁଙ୍କ ସହ ବାବୁଜୀଙ୍କ ଆଲୋଚନା ହୋଇଥିଲା । ମୋତେ ଉପରକୁ ଯିବା ପାଇଁ ନିର୍ଦ୍ଦେଶ ଆସିଥାଏ । ମୁଁ ପାଣିବାବୁଙ୍କ କଥା ନ ଶୁଣି ନ୍ୟୁଜ୍ ଲେଖି ଚାଲିଥାଏ । ଆରେ ହେ ! ଯାଉନୁ କାହିଁକି ବାବୁଜୀ ଦୁଇଥର ଡାକି ସାରିଲେଣି । ପୁଣି ଗାଳି ଶୁଣିବାର ମାନସିକତା ନ ଥିବାରୁ ତାଙ୍କ କଥା ଶୁଣି ନ ଶୁଣିଲା ଭଳି ଅନ୍ୟମାନଙ୍କ ସହ ଡେସ୍କରେ ଥଟ୍ଟାମଜା କରୁଥାଏ । ସେହି ସମୟରେ ବାବୁଜୀଙ୍କ ଫୋନ୍ ଆସିଲା । ମୋତେ ଧରାଇଦେଲେ ପାଣିବାବୁ । ସେପଟୁ ବାବୁଜୀ କହିଲେ ମୁଁ ରାଧାନାଥ ରଥ କହୁଛି, ଶୀଘ୍ର ଉପରକୁ ଆସ । ମୁଁ ତାଙ୍କ ଡାକରାକୁ ଯେମିତି ଏପର୍ଯ୍ୟନ୍ତ ଅପେକ୍ଷା କରିଥିଲି । ସାଙ୍ଗେ ସାଙ୍ଗେ ଉପରକୁ ଚାଲିଲି । ସେତେବେଳେ ବାବୁଜୀଙ୍କ ପାଇଁ ଖାଇବା ବଢ଼ାଯାଇଥାଏ । ପାଖରେ ତାଙ୍କର ପଡ଼ିଥାଏ ଆଉ ଗୋଟିଏ ଆସନ । ସେଠୁ ସେ ଡାକ ଛାଡ଼ିଲେ - ହୋ ଲକ୍ଷ୍ମଣ ! କାନନବାବୁ ଆସିଗଲେଣି, ତାଙ୍କ ପାଇଁ ଖାଇବାକୁ ବାଢ଼ । ମୁଁ କାହାକୁ କିଛି ନ କହି ତଳକୁ ମୁହଁ ପୋତି ଖାଇ ଚାଲିଥାଏ । ପୁଣି ନିର୍ଦ୍ଦେଶ ହେଲା ସେ କଣ୍ଟା ବାଛି ଖାଇ ଜାଣିବନି, ତାକୁ ଖଣ୍ଡେ ପେଟି ମାଛ ଦିଅ । ତିନିବର୍ଷ ପରେ ହଠାତ୍ ଏ ପ୍ରକାର ଆଦର ଅଭ୍ୟର୍ଥନା ପାଇ ଆଖି ମୋର ଛଳଛଳ । ସେତେବେଳେ ମା' ଆସି କହିଲେ, କ'ଣ ବାବୁଜୀ ଡାକିବା ପରେ ସବୁ ରାଗ ଅଭିମାନ ତୁଟିଗଲା ? ତଥାପି ମୁଁ ନିରବ । ହାତଧୋଇ ତଳକୁ ଓହ୍ଲାଇ ଆସିବାର ଉପକ୍ରମ କରୁଛି, ବାବୁଜୀ କହିଲେ- ତୁମକୁ ଖାଲି ଖାଇବାକୁ ଡାକି ନ ଥିଲି । ଏଠି ବସ । ସେ କହିଲେ, ତମକୁ ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେବାକୁ ସ୍ଥିର କରିଛି । ଭୟ ଓ ସଂକୋଚରେ ତାଙ୍କ ମୁହଁକୁ ମୁଁ ଚାହିଁଥାଏ । ବାବୁଜୀ କହିଲେ, ଉଦୟନାଥ ବାବୁଙ୍କ ବୟସ ହୋଇଗଲାଣି । ସେ ଆଉ ପାରୁନାହାନ୍ତି । ତମେ କାଲିଠାରୁ ଦିନ ୧୨ଟାବେଳେ ଅଫିସ୍ ଆସ । ପ୍ରେସ୍‌ରେ ଉଦୟନାଥ

ବାବୁଙ୍କୁ କାମରେ ସାହାଯ୍ୟ କରିବ । ଉତ୍ତରରେ ମୁଁ କହିଲି, ଲେଆଉଟ୍ ସମ୍ପର୍କରେ ଆଦୌ ମୋର ଧାରଣା ନାହିଁ । ମୁଁ ଯାଇ କ'ଣ କରିବି । ବାବୁଜୀଙ୍କ ଉତ୍ତର ଥିଲା- ଏବେ ଯେଉଁ କାମ କରୁଛ, ସେସବୁ କ'ଣ ପାଞ୍ଚଗାଁ'ରୁ ଶିଖିଆସିଥିଲ । ଦିନ କେତେଟାରେ ସେସବୁ ଶିଖିଯିବ । ଅଳଙ୍କରଣରେ ପରିବର୍ତ୍ତନ ସାଙ୍ଗକୁ ନୂଆ ଶୈଳୀରେ ପେଜ୍ ବସିବା ଦରକାର । କେଉଁ ସମ୍ବାଦ କେଉଁଠି ବସିବ, ସେ ସମ୍ପର୍କରେ ଉଦୟନାଥ ବାବୁଙ୍କୁ ସହଯୋଗ କରି କାଗଜର କାୟା ପରିବର୍ତ୍ତନ ପାଇଁ ପରାମର୍ଶ ଦେଇଥାନ୍ତି ସେ । ଆମ କାଗଜ ପୁରୁଣାକାଳିଆ ହୋଇଗଲାଣି, ଲୋକଙ୍କ ଆଗ୍ରହ କମୁଛି । ମୁଁ ମନରେ ସାହସ ସଞ୍ଚୟକରି କହିଲି, ସେ ବୟସ୍କଲୋକ, ପ୍ରେସ୍‌ରେ ନ୍ୟୁଜ୍ ବସିବାକୁ ନେଇ ଆମ ଭିତରେ ବାଦବିବାଦ ହେଲେ ଭାରି ଅସୁନ୍ଦର ହେବ । ମୋଠାରୁ ଏକଥା ଶୁଣି ବାବୁଜୀ କହିଲେ, ମୁଁ ତାଙ୍କୁ ଡାକି ବୁଝାଇଦେବି । ଏତେକଥା ପରେ ମଧ୍ୟ ମୁଁ ସେଠାରୁ ଆସୁ ନ ଥାଏ । ସେ ପଚାରିଲେ, ପୁଣି କ'ଣ ହେଲା । ଦୁଇଘଣ୍ଟା ଆଗରୁ ଆସି ଡେସ୍କରେ କାମ ନ କଲେ ମୋତେ ଭଲ ଲାଗିବ ନାହିଁ । ତା'ଛଡ଼ା ପ୍ରେସ୍‌କୁ ଯିବା ପୂର୍ବରୁ ଆଜିର ସମ୍ବାଦ ସମ୍ପର୍କରେ ମୋର ମଧ୍ୟ କିଛି ଧାରଣା ହେବା ଦରକାର । ବାବୁଜୀ ଟିକେ ମୁରୁକି ହସି କହିଲେ, ହଉ ଯା' । ପରେ ପରେ ଉଦୟନାଥ ବାବୁଙ୍କୁ ଡକରା ଆସିବାରୁ ମୁଁ ସବୁକଥା ବୁଝିଗଲି ।   ତାଙ୍କ ଫେରିବାକୁ ମୁଁ ଅପେକ୍ଷା କରିଥିଲି । ସେ ଆସୁଆସୁ ସମସ୍ତଙ୍କ ଆଗରେ କହିଲେ - କାଲିଠାରୁ କାନନବାବୁଙ୍କୁ ମୋତେ ପ୍ରେସ୍‌ରେ ମହଣେଇବାକୁ ପଡ଼ିବ । କିଛି ଉତ୍ତର ନ ଦେଇ ମୁଁ ସେମିତି ତଳକୁ ମୁହଁ ପୋତି ବସିଥାଏ ।  ବାବୁଜୀ ଅଚାନକ ଏଭଳି ଏକ ନିଷ୍ପତ୍ତି କାହିଁକି ନେଲେ, ତାହାର କିଛି କୂଳ କିନାରା ପାଉ ନ ଥାଏ । ଏକଥା ସତ ଯେ ସେ ଏକାଧିକ ଦୈନିକ ଇଂରାଜୀ କାଗଜ ପଢ଼ନ୍ତି । ରୁଚିପୂର୍ଣ୍ଣ ଲେଆଉଟ୍ ଓ ହେଡ୍‌ଲାଇନ୍ ଦେଖି ସେ ନିଶ୍ଚୟ ଚାହୁଁଥିବେ 'ସମାଜ'ର ଅଳଙ୍କରଣରେ ସେଭଳି କିଛି ପରିବର୍ତ୍ତନ ହୁଅନ୍ତା । ସେ ନିଜେ ପୁରୁଣାକାଳିଆ ହେଲେ ମଧ୍ୟ

ପରିବର୍ତ୍ତନ ପ୍ରୟାସୀ ଏଥିରେ କୌଣସି ସନ୍ଦେହ ନାହିଁ । ତାଙ୍କ କଥା ଭାବିଲେ ବେଳେ ବେଳେ ହସ ଲାଗେ । ଉଦୟନାଥ ବାବୁଙ୍କ ବୟସ ହୋଇଗଲାଣି, ଅଥଚ ସେ ନିଜେ ଟୋକା ଅଛନ୍ତି । ଡେସ୍କରେ ଆଉ ବେଶି ସମୟ ବସିପାରିଲିନି । ପାଣିବାବୁଙ୍କୁ କହି ବାହାରେ ବେଶ୍ କିଛି ସମୟଧରି ବୁଲିଲୁ । ମନ ଭିତରେ ସେଇ ଗୋଟିଏ କଥା, ଅନ୍ୟ କାହାକୁ ଦାୟିତ୍ୱ ନ ଦେଇ ମୋତେ କାହିଁକି ଦେଲେ ।

ପରଦିନ ବାବୁଜୀଙ୍କ କହିବା ମୁତାବକ ଦିନ ୧୨ଟାରେ ଅଫିସ ନ ଆସି ଆଗୁଆ ଆସିଲି । ସ୍ୱାଭାବିକ ଢଙ୍ଗରେ ଡେସ୍କରେ ଏଜେନ୍ସି ପାଠ କରିଚାଲିଲି । ଦୁଇଘଣ୍ଟା ପରେ ମୋ ପଛରେ ଆସି ଠିଆ ହୋଇଗଲେ ଉଦୟନାଥ ବାବୁ । ସେ ଚାଲଯିବା କହିବା ମାତ୍ରେ ସୁନାପିଲା ଭଳି ତାଙ୍କ ପିଛା ଧରିଲି । ପ୍ରାୟ ୧୫ ଦିନ ଧରି ତାଙ୍କ କାର୍ଯ୍ୟଶୈଳୀକୁ ମୁଁ ଲକ୍ଷ୍ୟ କରୁଥାଏ । ବେଳେବେଳେ ସେ ତାଙ୍କଆଡୁ କିଛି ହେଡ୍‌ଲାଇନ୍ ଦିଅନ୍ତି ବଦଳାଇବାକୁ, ବିଶେଷକରି ଏଜେନ୍ସି ନ୍ୟୁଜ୍ । ନିଜ ଭିତରେ କିଛିଟା ଆତ୍ମବିଶ୍ୱାସ ସୃଷ୍ଟି ହେବା ପରେ ପ୍ରଥମ ପୃଷ୍ଠାର ଲେଆଉଟ୍ ବଦଳାଇଲି । ହେଡିଂରେ କୋଲନ୍ ପ୍ରୟୋଗ କରି ସଂକ୍ଷିପ୍ତ କରିବା, ଏକଧାଡ଼ିଆ ହ୍ୟାଙ୍ଗର ହେଡିଂ, ଖବରର ଗୁରୁତ୍ୱ ଦେଖି ବ୍ୟାନର ହେଡିଂ ଭଳି କିଛି ନୂଆ ପ୍ରୟାସ ପଛରେ ଉଦୟନାଥ ବାବୁଙ୍କର ନିରବ ସମର୍ଥନ ଥାଏ । କ୍ରମେ ପ୍ରଥମ ପୃଷ୍ଠାରେ କେଉଁସବୁ ଖବର ଯିବ, ତାହାକୁ ବାଛି ରଖିଲି ଓ ନିଜ ଶୈଳୀରେ ପେଜ୍ ଲେଆଉଟ୍ କଲି । ଆମ ଭିତରେ ଅଜାନାତିର ସମ୍ପର୍କ ଗଢ଼ିଉଠିଲା । ବେଶ୍ ହସଖୁସିରେ ଦିନ ଗଡ଼ିଚାଲିଲା । ସେତେବେଳେ ଆମର କେହି ପ୍ରତିଦ୍ୱନ୍ଦ୍ୱୀ ନ ଥିବାରୁ ବିଜ୍ଞାପନ ଚାପ ମଧ୍ୟ ଅଧିକ ଥିଲା । ତେଣୁ ସପ୍ତାହରେ ତିନିଦିନ ୧୨ ପୃଷ୍ଠା ଓ ୪ଦିନ ଆଠପୃଷ୍ଠା ହେଉଥିଲା । ଦିନକୁ ଦିନ ଖବରର ଚାପ ମଧ୍ୟ ବଢୁଥିଲା । ତେଣୁ ବଡ଼କଥା ହେଲା, ଆଜି କ'ଣ ଯିବ, କାଲିକି କ'ଣ ରହିଯିବ, ସେ ସମ୍ପର୍କରେ ନିଷ୍ପତ୍ତି ନେବା । ବଳକା ପାଠ

ସ୍ଥାନ ଅଭାବରୁ ପଡ଼ି ରହୁଥିବାରୁ ସେଥିରୁ କିଛି କିଛି ନଷ୍ଟ କରି ଦିଆଯାଏ । ମୁଁ ଏସବୁ ଦେଖିଲେ ମଧ କହିବାର କିଛି ଯୁ  ନ ଥାଏ । ଅଥଚ ଗୁରୁତ୍ୱ ନ ଥିବା ସମ୍ବାଦ ଉପରେ ଉଦୟନାଥ ବାବୁଙ୍କର କିଛି କଟକଣା ନ ଥାଏ । ସେସବୁକୁ ବସାଇବା ପାଇଁ ବିଭିନ୍ନ କାରଣରୁ ସେ କୁଣ୍ଠିତ ହୁଅନ୍ତି ନାହିଁ । ବେଳେବେଳେ ସେସବୁ ଅସହ୍ୟ ହୋଇଗଲା ମୋ ପାଇଁ । ମନେ ହେଲା ବାବୁଜୀ ଦେଇଥିବା ଦାୟିତ୍ୱ ମୁଁ ଠିକ୍ ଭାବେ ତୁଲାଉନାହିଁ । ତେଣୁ ତାଙ୍କର ଏହି କାର୍ଯ୍ୟରେ ମୁଁ ବାଧହୋଇ ହସ୍ତକ୍ଷେପ କଲି । ଏହାକୁ ନେଇ ଆମ ଭିତରେ ପ୍ରେସ୍‌ରେ ଯେଭଳି ବିବାଦ ନ ହୁଏ, ସେଥିପ୍ରତି ମଧ ମୁଁ ସତର୍କ ଥିଲି । ତେଣୁ ଉଦୟନାଥ ବାବୁ ଘରକୁ କିମ୍ବା ସଭାସମିତି ଯିବା ପରେ ବଳକା ଥିବା ଯାଞ୍ଚ କରି ଅନାବଶ୍ୟକ ଅଣସମ୍ବାଦଗୁଡ଼ିକୁ ମୁଁ ନଷ୍ଟ କରିଦେଉଥାଏ । ଏହା ଯେ ଦିନେ ମାନସିକ ସ୍ତରରେ ତାଙ୍କ ଓ ମୋ ଭିତରେ ଦୂରତା ସୃଷ୍ଟି କରିବ, ମୁଁ ଜାଣି ନ ଥିଲି । ମୋର ଯୁକ୍ତି ଥିଲା, ଆଜିର କିଛି ଭଲ ଖବର ବିନିମୟରେ ସେସବୁକୁ ସମ୍ବାଦପତ୍ରରେ ସ୍ଥାନ ଦିଆଯାଇପାରିବ ନାହିଁ । ପରିସ୍ଥିତି ଏପରି ହେଲା ଯେ, ସେ ପ୍ରେସ୍‌କୁ ଆଉ ଆସିଲେ ନାହିଁ । ପାଣିବାବୁଙ୍କ ମାଧମରେ ସେଭଳି କିଛି ଅନାବଶ୍ୟକ ସମ୍ବାଦ କାଗଜରେ ସ୍ଥାନ ଦେବାକୁ ଉଦ୍ୟମ କଲେ । କିଛି କିଛି ବାହାରିଲେ ମଧ ବହୁ ଅପ୍ରକାଶିତ ରହିଗଲା । ଉଦୟନାଥବାବୁ ଅସନ୍ତୋଷ ପ୍ରକାଶ କରି ଆଉ ଅଫିସ୍ ଆସିଲେ ନାହିଁ । ବାବୁଜୀଙ୍କର ସେ ଥିଲେ ସବୁଠାରୁ ବରିଷ୍ଠ ସହକର୍ମୀ । ତାଙ୍କ ନ ଆସିବାର କାରଣ ସମ୍ପର୍କରେ ସେ ଯେ ଖୋଳତାଡ଼ କରି ନ ଥିବେ, ତାହା ନୁହେଁ । ତେବେ ମୋତେ ଏ ସମ୍ପର୍କରେ ଆଦୌ ପଚାରିନାହାନ୍ତି । ସେତେବେଳକୁ କାଗଜର ଲେଆଉଟ୍ ଓ ହେଡ୍‌ଲାଇନରେ ଉଲ୍ଲେଖନୀୟ ପରିବର୍ତ୍ତନ ଘଟୁଥାଏ । ସେହି ଅନୁସାରେ ଆଦୃତି ଓ ପ୍ରସାରଣ ବଢ଼ିଥିଲା । ମୁଁ 'ସମାଜ'ରେ ଯୋଗ ଦେଲାବେଳେ ଦୈନିକ ପ୍ରସାରଣ ସଂଖ୍ୟା ଥିଲା ୪୮ ହଜାର । ତାହା କ୍ରମେ ବୃଦ୍ଧି ପାଇ ୧ଲକ୍ଷ ଅତିକ୍ରମ କଲା । ବରିଷ୍ଠ ସହକର୍ମୀଙ୍କ ହେଡ୍‌ଲାଇନ୍ ବଦଳାଇବା ଓ ଅନାବଶ୍ୟକ ଦୀର୍ଘ

ସମ୍ବାଦକୁ କାଟିଦେବା ଭଳି ଘଟଣାକୁ କେନ୍ଦ୍ରକରି ଡେସ୍କରେ ଅସନ୍ତୋଷ ବୃଦ୍ଧି ପାଉଥାଏ । ମୋର ସେତେବେଳେ ଯୁକ୍ତି ଥିଲା ସବୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଆଜି ଯାଉ,କାଲିକୁ ବଳକା ନ ରହୁ । ଏହାକୁ କେନ୍ଦ୍ରକରି ରାଗ ଅଭିମାନ ରହିବା ଉଚିତ ନୁହେଁ । ଅବଶ୍ୟ ସେତେବେଳେ ଏଜେନ୍ସି ନ୍ୟୁଜ୍‌ର ଗୁରୁତ୍ୱ ଅଧିକ ଥିଲା । ସେସବୁକୁ ଯଥାସମ୍ଭବ ସଂକ୍ଷିପ୍ତ କରାଯାଇପାରିଲେ, ଆଞ୍ଚଳିକ ସମ୍ବାଦ ପାଇଁ ସ୍ଥାନ ସୃଷ୍ଟି ହୋଇପାରିବ । ଏତେସବୁ ଘଟଣାକ୍ରମ ପରେ ମଧ୍ୟ ବାବୁଜୀଙ୍କ ନିରବତା ମୋତେ କିନ୍ତୁ ଠିକ୍ ଲାଗୁ ନ ଥାଏ । ସେତେବେଳେ ହେଡିଂ ପାଇଁ ଚେପ୍‌ଟା, ଡେଙ୍ଗା, କପିଳ ଓ ବଡ଼ ଭଳି ଭିନ୍ନ ଭିନ୍ନ ଅକ୍ଷର ଥାଏ । କେତେକ କଲମ୍ ହେଡିଂରେ କେତେ ଅକ୍ଷର କଲେ ଠିକ୍ ହେବ, ତାହା ମୋତେ ଜଣା ଥିବାରୁ ସେହି ଅନୁଯାୟୀ ଅନ୍ୟମାନଙ୍କର ହେଡିଂ ମଧ୍ୟ ମୁଁ ବଦଳାଉଥିଲି । କୌଣସିପ୍ରକାରେ ହେଡିଂକୁ ତିନିଲାଇନ୍‌ବିଶିଷ୍ଟ କରିବାକୁ ଦେଉ ନ ଥିଲି । ସେତେବେଳେ ବସନ୍ତ କୋକିଳ ଭଗବାନ ପତି ଥାଆନ୍ତି ଅନ୍ୟତମ ବରିଷ୍ଠ ସହକର୍ମୀ । ସେଦିନ ତାଙ୍କ ହେଡିଂ ତିନି ଲାଇନ୍ ହୋଇଯାଇଥିବାରୁ ମୁଁ ବଦଳାଇଥିଲି । ପରଦିନ ବାବୁଜୀ ସେହି ହେଡିଂରେ ଭୁଲ୍ ଥିବା ଦର୍ଶାଇ ହାତଲେଖା କପି ମଗାଇଲେ । ମୁଁ ପରିବର୍ତ୍ତନ କରିଥିବାରୁ ସେ ଫକୀରବାବୁଙ୍କୁ ଡାକି କହିଲେ, ତାଙ୍କୁ ସସ୍‌ପେଣ୍ଡ୍ କରିଦିଅ । ଏ ଘଟଣା କିଛି ଲୁଚି ରହି ନ ଥାଏ । ମୁଁ ଅଫିସ୍ ଗେଟ୍ ପାଖରେ ପହଞ୍ଚିବା ମାତ୍ରେ ବାହାଦୂର୍‌ଠାରୁ ସସ୍‌ପେଣ୍ଡ କଥା ଶୁଣିଲି । ଏହାପରେ ଯେଉଁ ହେଡିଂକୁ ନେଇ ଆପତ୍ତି ଉଠିଛି, ତାହାକୁ ବାରମ୍ବାର ପଢ଼ିଲେ ମଧ୍ୟ ଭୁଲ୍ କେଉଁଠି ରହିଗଲା,ତାହା ଜାଣି ପାରିଲିନି । ଫକୀରବାବୁ ଏ ସମ୍ପର୍କରେ ମୋତେ କିଛି ନ କହିଲେ ମଧ୍ୟ ମୁଁ ଅଫିସ୍ ଭିତରକୁ ନ ଆସି ବାହାରେ ବୁଲୁଥାଏ । ଏହି ସମୟରେ ଭଗବାନବାବୁ ଟାଉନ୍ ବସ୍‌ରେ ଓହ୍ଲାଇଲେ । ସେ ଗେଟ୍‌ରେ ପଶିବା ପୂର୍ବରୁ ମୁଁ ତାଙ୍କୁ ଅଟକାଇଦେଲି । ଅଜାନାତି ସମ୍ପର୍କ । କଥା ଭାଙ୍ଗି ଅଫିସ୍‌କୁ ଯାଇପାରିଲେ ନାହିଁ । କାଗଜ ବାହାରକରି ତାଙ୍କୁ ଦେଖାଇଲି ହେଡିଂରେ କ'ଣ ଭୁଲ୍ ଅଛି ଜାଣିବା ପାଇଁ । ସେ କହିଲେ,ନା କିଛି ଭୁଲ୍

ନାହିଁ । ତାଙ୍କୁ ଚା' ପିଆଇ ଭିତରକୁ ଛାଡ଼ିଦେଲି । ପାଣିବାବୁ ମଧ୍ୟ ଅପେକ୍ଷା କରିଥାନ୍ତି, ତାଙ୍କୁ ହେଡିଂ ସମ୍ପର୍କରେ ପଚାରି ବୁଝିବା ପାଇଁ । ସେ ସେହି ଏକାକଥା କହିଲେ । ତାଙ୍କୁ ସମସ୍ତେ କହିବାରୁ ସେ କାଗଜ ଧରି ବାବୁଜୀଙ୍କ ନିକଟକୁ ଚାଲିଗଲେ । ଦୁଇଜଣଙ୍କ ମଧ୍ୟରେ ବ୍ୟାକରଣଗତ ତ୍ରୁଟି ବିଚ୍ୟୁତିକୁ ନେଇ ବେଶ୍ କିଛିସମୟ ଯୁକ୍ତିତର୍କ ହେଲା । ଶେଷରେ କଥା ଛିଣ୍ଡିଲା, ହେଡିଂରେ କିଛି ଭୁଲ୍ ନାହିଁ । ଏ ସମ୍ପର୍କରେ ଫକୀରବାବୁଙ୍କୁ ମଧ୍ୟ ଜଣାଇ ଦିଆଗଲା । ସେ କେବଳ ମୁଚ୍‌କି ମୁଚ୍‌କି ହସିଲେ ସିନା କିଛି କହିଲେ ନାହିଁ। ପାଣିବାବୁ ପିଅନ ପଠାଇ ମୋତେ ଡକାଇ ଆଣିଲେ । ମାଳିକୁ ଛେଳି ଅଡୁଆ ଭଳି ସେ ଚାହୁଁଥିଲେ ଶୀଘ୍ର କାନନ ଆସି ଦାୟିତ୍ୱ ସମ୍ଭାଳୁ । ମୁଁ ଆସିଗଲା ପରେ ନିରବ ଥିବା ଭଗବାନବାବୁ ଘଟଣାକ୍ରମର ବିବରଣୀ ଦେଲେ । ଆମେ ସମସ୍ତେ ଜାଣୁ ଯେ ସେ ଖୁବ୍ ଚା' ପ୍ରିୟ । ପିଅନ ତ୍ରିନାଥ ପଟ୍ଟନାୟକକୁ ମୁଁ ବରାଦ ଦେଲି ପ୍ରତି ଘଣ୍ଟାଏ ଅନ୍ତରରେ ଅଜାଙ୍କୁ ମୋର ଚା' ଦେବୁ । ସେ ଖୁବ୍ ମନ ଖୁସିରେ ଥାଆନ୍ତି । ଘରକୁ ଯିବା ପୂର୍ବରୁ ପ୍ରେସ୍‌ରେ ମୋତେ ଭେଟି ଆଶୀର୍ବାଦ କଲେ । ଟୋକାଲୋକ, ଏତେ ରାଗ ଅଭିମାନ୍ କ'ଣ ? ଆଗକୁ ମାଡ଼ିଚାଲ ।

ମୁଁ ସେତେବେଳେ ପୁରୁଣା ରାଉସାପାଟଣାରେ ସପରିବାରେ ରହୁଥାଏ । ଖରାଦିନ, ପ୍ରବଳ ଗରମ । ରାତିରେ ନିଦ ହେଉ ନ ଥାଏ । ହଠାତ୍ ରାତି ଅଧରେ ପ୍ରବଳ ପାଟିତୁଣ୍ଡ ଶୁଭିଲା । କ'ଣ ହୋଇଛି ଜାଣିବା ପାଇଁ ଦେହରେ ଟରକିସ୍ ଟାୱେଲ୍ ପକାଇ ଘରୁ ବାହାରି ପଡ଼ିଲି । ପୋଲିସ୍ ନାଲିବତୀ ଗାଡ଼ି ଅଟକିଛି ପଡ଼ୋଶୀଙ୍କ ଘର ସାମ୍ନାରେ । କାହାକୁ କିଛି ନ କହି ସାମ୍ନାରେ ଥିବା ଜଣକ ଘର ବାରଣ୍ଡାରେ ଜାକିଜୁକି ହୋଇ ବସିଗଲି ମୁଁ । ପୋଲିସ୍‌ବାଲାଙ୍କ କାର୍ଯ୍ୟକଳାପ ଉପରେ ନିଘା ରଖିଥାଏ । ସେମାନଙ୍କ ଚାଲିଚଳଣ ଓ କାର୍ଯ୍ୟକଳାପରୁ ମନେହେଉଥିଲା ସେମାନେ ନିଶାସକ୍ତ । ଜଣେ ନିଖୋଜ ଅପରାଧୀ ସମ୍ପର୍କରେ ଖବର ପାଇ ସେମାନେ ଆସିଥାନ୍ତି

ଚଢ଼ଉ କରିବା ପାଇଁ । ସେହି ଅପରାଧୀ ଛାତ ଉପରେ ଶୋଇଥିବାରୁ ପୋଲିସ୍ ଗାଡ଼ି ଲାଗିବା ମାତ୍ରେ ସେ ଛାତରୁ ଛାତ ଡେଇଁ ଚମ୍ପଟ ମାରିଦେଲେ । ପୋଲିସ୍ କିନ୍ତୁ ପରିବାରର ଲୋକଙ୍କ ଉପରେ ଅକଶ ସାଜିଲା । ଏପରିକି ଘରର ଯୁବତୀ ଝିଅକୁ ଦୁର୍ବ୍ୟବହାର କରିବାରେ ମଧ୍ୟ ପଛଘୁଞ୍ଚା ଦେଲା ନାହିଁ। ଲାଠି ମାଡ଼ରେ ବୁଢ଼ାବାପାର ମୁଣ୍ଡ ଫାଟିବା ସାଙ୍ଗକୁ ବଡ଼ଭାଇର ଗୋଡ଼ହାଡ଼ ଭାଙ୍ଗିଗଲା । ସେ ସମୟରେ ତୁରନ୍ତ ଫଟୋ ଉଠାଇବାକୁ ଆଜିର ସୁବିଧା ନ ଥିଲା । ପରଦିନ ସକାଳୁ ଫଟୋଗ୍ରାଫର ଡକାଇ ଆହତଙ୍କ ଫଟୋ ଉଠାଇବା ସହ ସେମାନଙ୍କ ବୟାନ ରେକର୍ଡ଼ କଲି । ଅଫିସରେ ପହଞ୍ଚିବା ପରେ ନିଜେ ପ୍ରତ୍ୟକ୍ଷ କରିଥିବା ଘଟଣା ସମ୍ପର୍କରେ ରିପୋର୍ଟ ଫାଇଲ୍ କଲି । ପ୍ରଥମ ପୃଷ୍ଠାରେ ଫଟୋ ସହ ବିବରଣୀକୁ ହ୍ୟାଙ୍ଗର କରି ବସାଇଲି । ସେତେବେଳେ ଜିଲ୍ଲା ଏସ୍‌ପି ଥାଆନ୍ତି ସୁରେନ୍ଦ୍ର ନାଥ ସ୍ୱାଇଁ । ଜଣେ ଦକ୍ଷ ଓ ସଚ୍ଚୋଟ ଅଫିସର ଭାବରେ ତାଙ୍କର ବେଶ୍ ସୁଖ୍ୟାତି । ସେ ପରଦିନ ଅଫିସରେ ପହଞ୍ଚି ବାବୁଜୀଙ୍କୁ ଭେଟିଲେ । ପୁରୀଘାଟ ଥାନା ଅଧିକାରୀ ତାଙ୍କର ଜଣେ ନିହାତି ଅନୁଗତ ହୋଇଥିବାରୁ ସେ ପ୍ରକାଶିତ ସମ୍ବାଦର ପ୍ରତିବାଦ କଲେ । କିଏ ରିପୋର୍ଟ ଦେଇଛି ଜାଣିବା ପାଇଁ ପାଣିବାବୁଙ୍କୁ ଡକାଇ ପଠାଇଲେ ବାବୁଜୀ । ସେତେବେଳକୁ ଏ ସମ୍ପର୍କରେ ଟେବୁଲ୍‌ରେ ବେଶ୍ ତନାଘନା ହୋଇସାରିଥାଏ । କିଛି ଯୁବ ସାମ୍ବାଦିକ ବନ୍ଧୁ ଏସ୍‌ପିଙ୍କ ପତିଆରା ରଖିବା ପାଇଁ ମୋତେ ସାଲିସ୍ କରିବାକୁ ପ୍ରବର୍ତ୍ତାଉଥାନ୍ତି । ପାଣିବାବୁ ମୋ ନାଁ କହିଦେବାରୁ ମୁଁ ଡକରା ପାଇ ଗଲି ବାବୁଜୀଙ୍କ ପାଖକୁ । ତମକୁ ଦାୟିତ୍ୱ ଦିଆଯାଇଛି ବୋଲି ଯାହା ମନ ତାହା ନିଜେ ଲେଖି ଛାପିଦେବ, ଏହା ଥିଲା ବାବୁଜୀଙ୍କ ପ୍ରଶ୍ନ । ମୁଁ କିଛି ନ କହି ନିରବରେ ଠିଆ ହୋଇଥାଏ । କେବଳ ଏତିକି କହିଲି, ସୁରେନ୍ଦ୍ରବାବୁ ବାହାରକୁ ଗଲେ ମୁଁ ବ୍ୟକ୍ତିଗତ ଭାବେ ଆପଣଙ୍କୁ କିଛି କହିବି । ସୌଜନ୍ୟ ଦୃଷ୍ଟିରୁ ସେ ପ୍ରକୋଷ୍ଠରୁ ବାହାରିଯାଇ ଡେସ୍କରେ ଆଲୋଚନା କଲେ । ରାତିଅଧରେ ମୁଁ ପ୍ରତ୍ୟକ୍ଷ

କରିଥିବା ଘଟଣାର ସବିଶେଷ ବିବରଣୀ ବାବୁଜୀଙ୍କୁ କହିଲି । ଏସବୁ ସତ୍ତ୍ୱେ ଆମେ ଯଦି ପୋଲିସ୍ ନିକଟରେ ମୁଣ୍ଡ ନୁଆଁଇଦେବା, ତେବେ ସାମ୍ବାଦିକ ପେଶାର କୌଣସି ମର୍ଯ୍ୟାଦା ରହିବ ନାହିଁ । ଦରକାର ପଡ଼ିଲେ, ମୁଁ ଇସ୍ତଫା ଦେବାକୁ ପ୍ରସ୍ତୁତ ଅଛି । ମୋଠାରୁ ଏ କଥା ଶୁଣିବା ପରେ ବାବୁଜୀଙ୍କ ରାଗ ଥମିଗଲା, କହିଲେ ତୁମେ ଯାଅ । ସୁରେନ୍ଦ୍ରବାବୁ ପୁଣି ବାବୁଜୀଙ୍କ ନିକଟକୁ ଆସିଲେ । ବାବୁଜୀ ହାତ ଉଠାଇ ନମସ୍କାର କରି କହିଲେ, ମୁଁ କିଛି କରିପାରିବିନି । ଏସ୍‌ପି ସାହେବ ଆପଣ ଏବେ ଆସିପାରନ୍ତି । ତାଙ୍କର ଏହି ଆଭିମୁଖ୍ୟ ସେଦିନ ଆମ ସମସ୍ତଙ୍କୁ ବିସ୍ମିତ କରିଥିଲା ।

ସେହିଭଳି ଅନ୍ୟ ଏକ ଘଟଣାରେ ବାବୁଜୀଙ୍କ ନିଷ୍ପତ୍ତି ମୋତେ ଭାରି ବ୍ୟଥିତ କରିଥିଲା । ସେତେବେଳେ ଜାନକୀବାବୁ ଥାଆନ୍ତି ରାଜ୍ୟ ମୁଖ୍ୟମନ୍ତ୍ରୀ । ତାଙ୍କର ଅନୁଗତ ବସନ୍ତ ବିଶ୍ୱାଳଙ୍କର ସମଗ୍ର ରାଜ୍ୟରେ ପତିଆରା ଥିଲା । ସେ କେବଳ ପୂର୍ତ୍ତମନ୍ତ୍ରୀ ନୁହଁନ୍ତି, ସୁପର ଚିଫ୍ ମିନିଷ୍ଟର ମଧ୍ୟ । କିଛି ଯୁବକଂଗ୍ରେସ ନେତାଙ୍କୁ ଲଗାଇ ଷ୍ଟେସନ ବଜାରରେ କାଗଜ ପୋଡ଼ି, ଏପରିକି ଗଡ଼ମାଣିତ୍ରୀରେ ବାବୁଜୀଙ୍କ ଗାଡ଼ି ଉପରେ ଆକ୍ରମଣ ଭଳି ଘଟଣା ଆମ ମନରୁ ଲିଭି ନ ଥାଏ । କାଗଜ ପ୍ରିଣ୍ଟିଂ ଆରମ୍ଭ ବେଳକୁ ବିଦ୍ୟୁତ୍ ଲାଇନ୍ କାଟ ଭଳି ଉଦ୍ଦେଶ୍ୟମୂଳକ ସମସ୍ୟା ସୃଷ୍ଟି କରାଗଲା । ପରିସ୍ଥିତିର ମୁକାବିଲା ସକାଶେ କଲିକତା ହିନ୍ଦ୍ ମୋଟର୍ସରେ ଭାଇସ୍ ପ୍ରେସିଡେଣ୍ଟ ଥିବା ସାନପୁଅ ରମେଶବାବୁଙ୍କୁ କହି ବାବୁଜୀ ତୁରନ୍ତ ଶକ୍ତିଶାଳୀ ଜେନେରେଟର ମଗାଇଲେ 'ସମାଜ' ପାଇଁ । କ୍ଷମତାସୀନ ରାଜ୍ୟ ସରକାରଙ୍କୁ ବିରୋଧ କରି ସମ୍ବାଦପତ୍ର ଚଳାଉଥିବାରୁ ତାଙ୍କୁ ବହୁ ପ୍ରତିକୂଳ ପରିସ୍ଥିତି ଦେଇ ଗତି କରିବାକୁ ପଡୁଥିଲା । ଯେଉଁ ଘଟଣାକୁ ନେଇ ରାଜ୍ୟ ସମସ୍ତ ସମ୍ବାଦପତ୍ର ପ୍ରତିବାଦ କରିଥିଲେ,ତାହା ଥିଲା ଏମିତି । ହିନ୍ଦୁସ୍ତାନ ସମାଚାର ପକ୍ଷରୁ କଟକ ବଡ଼ମେଡିକାଲ ସଂକ୍ରାନ୍ତ ଏକ ଛୋଟ ଖବର ପ୍ରସାରିତ ହୋଇଥିଲା । କେବଳ 'ସମାଜ' ନୁହେଁ ଅନ୍ୟ ସମ୍ବାଦପତ୍ର ମଧ୍ୟ ତାହାକୁ ସ୍ଥାନ ଦେଇଥିଲେ । ଯଦିବା ସେଥିରେ କିଛି ତ୍ରୁଟି

ନ ଥିଲା ତାହାର ପ୍ରତିବାଦ କରାଯାଇପାରିଥାନ୍ତା । କ୍ଷମତାର ପ୍ରୋତ୍ସାହନ ପାଇ ମେଡିକାଲ ଛାତ୍ର ସମ୍ବାଦପତ୍ର ଅଫିସ୍ ଉପରେ ଚଢ଼ାଉ କଲେ । ମୁଖ୍ୟ ଫାଟକରେ ଦରଓ୍ୱାନକୁ ଧକ୍କା ଦେଇ ମେଡ଼ିକାଲ ଛାତ୍ରମାନେ ଧସେଇ ପଶିଥିଲେ 'ସମାଜ' ଅଫିସ୍‌ରେ । ଏଭଳି ଏକ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ସମସ୍ତେ ନିଜ ନିଜ ସୁରକ୍ଷା ପାଇଁ ଏଠିସେଠି ଆଶ୍ରୟ ନେଲେ । ସୁଯୋଗ ନେଇ କିଛି ମେଡ଼ିକାଲ ଛାତ୍ର ଉପରମହଲାରେ ରହୁଥିବା ବାବୁଜୀଙ୍କ ରେସିଡେନ୍ସ ଆଡ଼କୁ ପାହାଚରେ ଉଠିବାକୁ ଉପକ୍ରମ କଲେ । ବାଧହୋଇ ମୁଁ ତାଙ୍କୁ ଅଟକାଇଥିଲି । ମୋ ପାଟିରେ ଉପର ମହଲାର କବାଟ ମଧ ଭିତରୁ ପଡ଼ିଗଲା । ପରେ ପରେ ସେମାନେ ମୋତେ ଟେକିନେଇ ମାରଧର କରିବା ସହ ଚଷମା ଭାଙ୍ଗିଦେଲେ । କୌଣସିପ୍ରକାରେ ସେମାନଙ୍କ ମେଳିରୁ ମୋତେ ଉଦ୍ଧାରକରି କିଛି କର୍ମଚାରୀ ଗୋଟିଏ ରୁମ୍‌ରେ ବନ୍ଦ କରି ରଖିଥିଲେ । ଏତେ ଗଣ୍ଡଗୋଳ ସତ୍ତ୍ୱେ କ୍ୟାଣ୍ଟନମେଣ୍ଟ ପୋଲିସ୍ ଖବର ପାଇ ମଧ ଘଟଣାସ୍ଥଳରେ ପହଞ୍ଚିଲା ନାହିଁ । ଖବର ନେବାରୁ ଜଣାପଡ଼ିଲା ଯେ, ପୋଲିସ୍ ଆଇଜିଙ୍କ ପୁଅ ଏହି ମେଡ଼ିକାଲ ଛାତ୍ରଙ୍କ ନେତୃତ୍ୱ ନେଇଥିଲେ । କଟକ ପ୍ରେସ୍ କ୍ଲବ୍ ବୈଠକରେ ଘଟଣାର ପ୍ରତିବାଦ କରାଗଲା । ପ୍ରତିବାଦର ପ୍ରତୀକ ସ୍ୱରୂପ ସମ୍ପାଦକୀୟ ଖାଲି ରହିଲା । ଏସବୁ ଘଟଣାର କିଛି ଦିନ ପରେ ସେହି ମେଡ଼ିକାଲ ଛାତ୍ରଙ୍କ ସହ ବାବୁଜୀ ଏକ ବୈଠକରେ ବୁଝାମଣା କଲେ । ଏପରିକି ସେମାନଙ୍କୁ ଶ୍ରଦ୍ଧାରେ ରସଗୋଲା ଖୁଆଇଲେ । ଅଫିସ୍ ହଲ୍‌ରେ ଏସବୁ ଚାଲିଥିବାବେଳେ ମୁଁ ପ୍ରେସ୍‌ରେ ପେଜ୍ ବସାଉଥାଏ । ସବୁ ଖବର ପାଉଥିଲେ ମଧ ମୋର କିଛି କହିବାର ବା କରିବାର ନ ଥିଲା । ଖାଲି ଦୁଃଖରେ ଦାନ୍ତ କଡ଼ମଡ଼ କରୁଥିଲି ଯାହା । କୃଷ୍ଣ ଭାଇନା ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି କଫି ମଗାଇ ମୋ ମନ ନେବାପାଇଁ ଚେଷ୍ଟା କରୁଥାନ୍ତି । ବାବୁଜୀ ଏଭଳି ଏକ ନିଷ୍ପତ୍ତି କାହିଁକି ନେଲେ, ତାହା ଭାବି ଭାବି ସେଦିନ ରାତିରେ ମୋତେ ଭଲ ନିଦ ହେଲାନି ।

ସେତେବେଳକୁ ମନୋରମା ମହାପାତ୍ର (ସୁଲୁ ନାନୀ) ସହଯୋଗୀ ସମ୍ପାଦକ ରୂପେ ଯୋଗ ଦେଇଥାନ୍ତି । ପ୍ରାରମ୍ଭିକ ଅବସ୍ଥାରେ କିଛିକିଛି ଘଟଣାରେ ତାଙ୍କ ସହ ମନାନ୍ତର ହୋଇଥିଲେ ମଧ୍ୟ ସେସବୁକୁ ଭୁଲିଯାଇ ଆମେ ମିଳିମିଶି କାମ କଲୁ । ପଦାରବିନ୍ଦ ମହାପାତ୍ର ମଧ୍ୟ ଅବୈତନିକ ଜେନେରାଲ୍ ମ୍ୟାନେଜର ରୂପେ ଦାୟିତ୍ୱ ତୁଲାଉଥାନ୍ତି । ବାବୁଜୀଙ୍କ ଜ୍ୱାଇଁ ହିସାବରେ ତାଙ୍କର ଅଫିସ୍‌ରେ ସ୍ୱତନ୍ତ୍ର ସମ୍ମାନ ଓ ଖାତିର ଥିଲା । ଏମିତି ଦେଖିବାକୁ ଗଲେ ଭାରି ସାଦାସିଧା ମଣିଷ ସେ । ମୁଖ୍ୟ ବନସଂରକ୍ଷକ ପଦରୁ ଅବସର ନେଇଥିଲେ ମଧ୍ୟ ଟିକିଏ ଗର୍ବ କି ଅହଙ୍କାର ନ ଥିଲା ତାଙ୍କର । ମୋର ଏତେ ବ୍ୟକ୍ତିଗତ ସମ୍ପର୍କ ସତ୍ତ୍ୱେ ତାଙ୍କ ସହ ଅଫିସ୍‌ରେ ପ୍ରବଳ ପାଟିତୁଣ୍ଡ ହୋଇଥିଲା । ସେଦିନ ମୁଁ ପେଜ୍ ସାରି ଡେସ୍କରେ ଅପେକ୍ଷା କରିଥାଏ କାଗଜକୁ । ବହୁସମୟ ଧରି ଅପେକ୍ଷା କରିବା ପରେ କାଗଜ କାହିଁକି ବାହାରିଲାନି ଜାଣିବା ପାଇଁ ପ୍ରେସ୍‌କୁ ବାହାରିଲି । ସେତେବେଳକୁ କୃଷ୍ଣ ଭାଇନା ପେଜ୍ ଭାଙ୍ଗି ନୂଆ ପେଜ୍ ବସାଉଥାନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି, କେମିତି ମୋ ଅଜ୍ଞାତରେ ଏସବୁ ଚାଲିଛି । କିଛି ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ବାବୁଜୀ ପଠାଇଲେ କି ମୁଁ ପ୍ରଶ୍ନ କଲି । କୃଷ୍ଣ ଭାଇନା ଉତ୍ତରରେ କହିଲେ, ପଦାରବିନ୍ଦ ବାବୁ କିଛି ସମ୍ବାଦ ଉଠାଇ ବିଜ୍ଞାପନ ବସାଇଛନ୍ତି । ସେ ମୋତେ ନ କହି ଏତେସବୁ କଥା କଲେ କିପରି ? ମୁଁ ସିଧା ତାଙ୍କ ପ୍ରକୋଷ୍ଠକୁ ଯାଇ ପଚାରିଲି । ଦାୟିତ୍ୱ ଓ କ୍ଷମତାକୁ ନେଇ ଆମ ମଧ୍ୟରେ ଯୁକ୍ତିତର୍କ ମଧ୍ୟ ହୋଇଗଲା । ପଦାରବିନ୍ଦ ବାବୁ ମୋ ପେଜ୍ ଫର୍ମାଟରେ ଯେଉଁ ପ୍ଲେଟ୍ ହୋଇଥିଲା ତାହାକୁ ମୁଦ୍ରଣ କରିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ଏହାକୁ କେନ୍ଦ୍ରକରି ଘଟଣା ଯେଉଁ ସ୍ତରକୁ ଯାଇଥିଲା ତାହା ଠିକ୍ ହେଲାନି । ଉଭୟ ସୁଲୁନାନୀ ଓ ପଦାରବିନ୍ଦ ବାବୁ ମାନସିକ ସ୍ତରରେ ବେଶ୍ ଆଘାତ ପାଇଥିଲେ । ଦୁଇ ପ୍ରାଣୀ ବାବୁଜୀଙ୍କୁ ଭେଟି ସବୁକଥା କହିଲେ । ଉତ୍ତରରେ ବାବୁଜୀ କ'ଣ କହିଲେ, ମୁଁ ଶୁଣିନି । କିନ୍ତୁ ଏ ସମ୍ପର୍କରେ ସେ ମୋତେ ମଧ୍ୟ ଥରେହେଲେ ପଚାରିନାହାନ୍ତି । ଏହି ଘରୋଇ ଆଲୋଚନାବେଳେ ସେଠାରେ ଉପସ୍ଥିତ ଥିବା ପିଅନ ମୋତେ

ଯାହା କହିଲା ସେଥିରେ ମୁଁ ଚକିତ ହୋଇଗଲି । ଦାୟିତ୍ୱରେ ଲକ୍ଷ୍ମଣରେଖା ସମ୍ପର୍କରେ ସେ ସମସ୍ତଙ୍କୁ ସତର୍କ କରାଇ ଦେଇଥିଲେ । କାରଣ ବାବୁଜୀ ନିଜେ ବିଜ୍ଞାପନ ପାଇଁ କାଗଜ ମୁଦ୍ରଣ ବିଳମ୍ବ ନ କରିବାକୁ ଆମମାନଙ୍କୁ ସବୁବେଳେ ସତର୍କ କରାଇ ଦେଇଥାନ୍ତି ।

ବାବୁଜୀଙ୍କ ବୟସାଧିକ୍ୟର ସୁଯୋଗ ନେଇ ତାଙ୍କୁ ପ୍ରଭାବିତ କରୁଥିବା ଲୋକ କିଛି କମ୍ ନ ଥିଲେ । କିଛି ନିଜ ସ୍ୱାର୍ଥ ପାଇଁ ତାଙ୍କ ମନ ନେବାକୁ ମିଛ କହୁଥିଲେ । ସେ ସମ୍ପର୍କରେ ମୁଁ କିଛି ମତାମତ ଦେବାକୁ ଉଚିତ ମଣୁ ନ ଥିଲି । ତେବେ ଯେତେବେଳେ ଏହି ମିଛ ସକାଶେ କାଗଜର ଭାବମୂର୍ତ୍ତି କ୍ଷୁଣ୍ଣ ହେଉଥିଲା ସେତେବେଳେ ମୁହଁ ଖୋଲିବାକୁ ପଡ଼ିଲା । ଭୁବନେଶ୍ୱର ଅଫିସ ଦାୟିତ୍ୱରେ ଥାଆନ୍ତି ସାମ୍ବାଦିକ ପ୍ରଦୋଷ ପଟ୍ଟନାୟକ । ତାଙ୍କ ଉପରେ ବାବୁଜୀଙ୍କ ଅଖଣ୍ଡ ବିଶ୍ୱାସ । ବାବୁଜୀ କଟକରେ ଥାଇ ତାଙ୍କୁ ମଝିରେ ମଝିରେ ଫୋନ୍‌କରି ଦେଶ ଦୁନିଆର ହାଲ ବୁଝନ୍ତି । ବେଳେବେଳେ ସେ ଜାତୀୟ, ଅନ୍ତର୍ଜାତୀୟ ମନଗଢ଼ା ଖବର ତାଙ୍କୁ ଶୁଣାଇଥାନ୍ତି । ବିନା ମାନସିକ ପ୍ରସ୍ତୁତିରେ ଯାହା ପାରିଲେ ତାହା କହିଚାଲିଲେ; ଏପରିକି ବିଶ୍ୱାସ ଜନ୍ମାଇବା ପାଇଁ ଗୋଇନ୍ଦା ବ୍ୟୁରୋ ସୂତ୍ର ଆଦି ଉଦ୍ଧାର କରନ୍ତି । ଥରେ ଦୁଇଥର ଏହି ଗୁଳିକୁ ବାବୁଜୀ ସମ୍ବାଦ ଆକାରରେ ଛାପିବା ପାଇଁ ଡିକ୍ଟେସନ ଦେଇଥିଲେ । ସେଥିନେଇ ସାଧାରଣରେ ଅପ୍ରସ୍ତୁତ ହେବା ପରେ ଆମେ ଏହାର ସୂତ୍ରଧରଙ୍କୁ ଖୋଜି ପାଇଲୁ । ବେଳେବେଳେ ଏ ପ୍ରକାର ସମ୍ବାଦକୁ ଡଷ୍ଟବିନ୍‌ରେ ଫୋପାଡ଼ିବାକୁ ମଧ୍ୟ ପଡ଼ିଛି । ଶେଷରେ ବାଧ୍ୟହୋଇ କାଗଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ପ୍ରଦୋଷ ବାବୁଙ୍କୁ ଏଥିରୁ ନିବୃତ୍ତ ରହିବା ପାଇଁ ବାରମ୍ବାର ବୁଝାଇବାକୁ ପଡ଼ିଛି ।

(ବାତ୍ୟା ଓ ବନ୍ୟା ପ୍ରପୀଡ଼ିତ ରାଜ୍ୟର ଦୁର୍ଦ୍ଦଶାଗ୍ରସ୍ତ ଜନସାଧାରଣଙ୍କ ନିକଟରେ ରିଲିଫ୍ ସାମଗ୍ରୀ ପହଞ୍ଚାଇବାରେ 'ସମାଜ'ର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ସରକାରୀ ଏଜେନ୍ସିକୁ ପଛରେ ପକାଇ ବାବୁଜୀଙ୍କ

ନେତୃତ୍ୱରେ ଏହି କାର୍ଯ୍ୟ ସୁନିୟନ୍ତ୍ରିତ ଭାବେ ପରିଚାଳିତ ହେଉଥିଲା । ବିଶେଷକରି ୧୯୮୨ ମହାବନ୍ୟା ସମୟର ରିଲିଫ୍ କାର୍ଯ୍ୟର ତୁଳନା ନାହିଁ । ଅସୁସ୍ଥତା ସତ୍ତ୍ୱେ ସେ ଫଟୋଗ୍ରାଫର ଉମା ଭାଇନାଙ୍କୁ ଧରି ବନ୍ୟାଞ୍ଚଳକୁ ବାହାରିପଡ଼ନ୍ତି । 'ସମାଜ' ଅଫିସରୁ ଯେତିକି ରିଲିଫ ସାମଗ୍ରୀ ଦୁର୍ଗତଙ୍କ ପାଇଁ ପଠାଯାଉଥିଲା, ତା'ଠାରୁ ଅଧିକ ପରିମାଣର ରିଲିଫ୍ ଆସି ଅଫିସରେ ପହଞ୍ଚୁଥିଲା । ସେତେବେଳେ ରାଜେନ୍ଦ୍ର ପ୍ରସାଦ ସିଂହ, ବାସୁଦେବ ସାମଲ ଓ ନରେନ୍ଦ୍ର ସ୍ୱାଇଁ ପ୍ରମୁଖ ରିଲିଫ କାର୍ଯ୍ୟର ମଙ୍ଗ ଧରିଥିଲେ । ଏହି ବନ୍ୟା ରିଲିଫ ସମଗ୍ର ରାଜ୍ୟବାସୀଙ୍କ ମନରେ 'ସମାଜ' ଓ ବାବୁଜୀଙ୍କ ନେତୃତ୍ୱ ପ୍ରତି ସ୍ୱତନ୍ତ୍ର ଶ୍ରଦ୍ଧା, ସମ୍ମାନ ଓ ବିଶ୍ୱାସ ସୃଷ୍ଟି କରିଥିଲା । କାଗଜର ପ୍ରସାରଣ ଉପରେ ମଧ୍ୟ ତାହାର ଅନୁକୂଳ ପ୍ରଭାବ ପଡ଼ିଥିଲା । ତେବେ ବ୍ୟକ୍ତିଗତ ଭାବେ ଏଥିସହ ମୁଁ ବିଶେଷ ଭାବେ ଜଡ଼ିତ ନ ଥିବାରୁ ମୋର ଏହି ଆଲେଖ୍ୟରେ ଅଧିକ କିଛି ତଥ୍ୟ ଦେବାକୁ ଉଚିତ ମଣୁନାହିଁ । )

ବାବୁଜୀ ଶେଷ ଜୀବନ ପର୍ଯ୍ୟନ୍ତ ସୁସ୍ଥ ଥିଲେ ମଧ୍ୟ ବୟସର ବୋଝ ଓ ନିଜ ପରିବାରର ଦୁଃଖଦ ଘଟଣାବଳୀ ତାଙ୍କୁ ମାନସିକ ସ୍ତରରେ ଏକପ୍ରକାର ଅକ୍ଷମ କରି ପକାଇଥିଲା । ଏକଥା ସତ ଯେ ତାଙ୍କର ଏହି ଅକ୍ଷମତାର କିଛି ଲୋକ ସୁଯୋଗ ନେଇଥିଲେ । ସାନପୁଅ ରମେଶ ରଥଙ୍କ ଅକାଳ ବିୟୋଗ ସାଙ୍ଗକୁ ଜାମାତା ପଦାରବିନ୍ଦ ମହାପାତ୍ର ଓ ପତ୍ନୀ ଜଣକ ପରେ ଜଣେ ତାଙ୍କ ହାତ ଛାଡ଼ି ଆରପାରିକୁ ଚାଲିଯାଇଥିଲେ । ଅବଶିଷ୍ଟ ଯେଉଁମାନେ ଥିଲେ, ସେମାନେ ଥିଲା ନ ଥିଲା ପରି । କାହା ସାଥୀରେ ଦୁଃଖ ବାଣ୍ଟିବା କିମ୍ବା କାହାର ଆଶ୍ୱାସନା ତାଙ୍କ ପାଇଁ କିଛି ଫରକ୍ ପଡୁ ନ ଥିଲା । ପରିବର୍ତ୍ତିତ ସମାଜ ପରିଚାଳନା ନେଇ ସେ ସେଭଳି ଆଶାନ୍ୱିତ ନ ଥିଲେ ମଧ୍ୟ କିଛି କରିବାର ଯୁ ମଧ୍ୟ ନଥିଲା । ବହୁ ଦୁଃଖଦ ଅନୁଭୂତି ମଧ୍ୟରେ ଶେଷ ପାଞ୍ଚବର୍ଷର ଜୀବନ ତାଙ୍କ ପାଇଁ ଅସହାୟ ହୋଇପଡିଥିଲା । ତେଣୁ ସେ କିଛି ଶ୍ଳୋକକୁ ଗୁଣୁଗୁଣେଇ ଭଗବାନଙ୍କ ହାତରେ ନିଜକୁ ଓ ନିଜ ହାତତିଆରି 'ସମାଜ'କୁ ସମର୍ପି ଦେଇଥିଲେ ।

## ଗଣମାଧ୍ୟମର କ୍ଷୁଣ୍ଣ ପତିଆରା

ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସେତେବେଳେ ଆମ ଦେଶରେ ପ୍ରଥମ ଘଟଣା । ଇଂରେଜ ଶାସନାଧିନ ଓଡ଼ିଶାର ବହୁ ଅଞ୍ଚଳ ପଡ଼ୋଶୀ ରାଜ୍ୟର ଲୋଲୁପ ଦୃଷ୍ଟିରେ ଖଣ୍ଡବିଖଣ୍ଡିତ ହୋଇ ରହିଥିବାରୁ ଓଡ଼ିଆ ଭାଷାର ସ୍ଥିତି ଘୋର ସଙ୍କଟ ମଧ୍ୟ ଦେଇ ଗତି କରୁଥିଲା । ଓଡ଼ିଆ ଯେ ଏକ ସ୍ୱତନ୍ତ୍ର ଭାଷା ନୁହେଁ ଏକଥା କହିବାକୁ ମଧ୍ୟ ପଛଘୁଞ୍ଚା ଦେଲେନି ପଡ଼ୋଶୀ ରାଜ୍ୟ । ଏଭଳି ଏକ ସ୍ଥିତିରେ ଉତ୍କଳ ସମ୍ମିଳନୀ ଗଠନ ଓ ଭାଷା ଆନ୍ଦୋଳନ ମୁଣ୍ଡ ଟେକିଥିଲା ଓଡ଼ିଶାରେ । ସେତେବେଳେ ପ୍ରକାଶ ପାଉଥିବା ସମ୍ବାଦପତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଭାଷା ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲା । ଦେଶକୁ ପରାଧୀନତାରୁ ମୁକ୍ତ କରିବା ପାଇଁ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ଆନ୍ଦୋଳନ ଓ ସତ୍ୟାଗ୍ରହ ସଂକ୍ରାନ୍ତ ସମ୍ବାଦର ପ୍ରଚାର ତଥା ପ୍ରସାର ସାଙ୍ଗକୁ ଓଡ଼ିଶା ଭାଷା ସାହିତ୍ୟକୁ ଉଜ୍ଜୀବିତ କରିବାରେ ସମ୍ବାଦପତ୍ର ପ୍ରମୁଖ ଭୂମିକା ଗ୍ରହଣ କରୁଥିଲା । ତେଣୁ ସେ ସମୟରେ ଓଡ଼ିଆ ଭାଷା ସାହିତ୍ୟ ସମ୍ପର୍କରେ ବିଶେଷ ଜ୍ଞାନ ଥିବା ବ୍ୟକ୍ତିବିଶେଷଙ୍କୁ ସାମ୍ବାଦିକ ରୂପେ ନିଯୁକ୍ତି ଦିଆଯାଉଥିଲା । ସତ କହିବାକୁ ଗଲେ, ସମ୍ବାଦପତ୍ର ଥିଲା ଓଡ଼ିଆ ଭାଷା ଶିକ୍ଷାର ଅନ୍ୟତମ ମାଧ୍ୟମ । ସ୍ୱାଧିନତା ପରବର୍ତ୍ତୀ ସମୟରେ ମଧ୍ୟ ତାହା ଗୁରୁତ୍ୱ ହରାଇ ନ ଥିଲା । ସେହିଭଳି ସମ୍ବାଦପତ୍ର ମାଧ୍ୟମରେ ଅନ୍ୟ ଆଞ୍ଚଳିକ ଭାଷାରୁ ଶବ୍ଦ ଆହରଣ ଓ ପ୍ରୟୋଗ ମଧ୍ୟ କରାଯାଉଥିବାରୁ ଓଡ଼ିଆ ଭାଷାର ଶବ୍ଦସମ୍ଭାର ସମ୍ପ୍ରସାରିତ ହୋଇଥିଲା ।

ମୁଁ ଯେତେବେଳେ ୧୯୭୫ରେ ସାମ୍ବାଦିକତା ଜୀବନ 'ସମାଜ'ରେ ଆରମ୍ଭ କଲି, ସେତେବେଳେ ଯେଉଁ ବରିଷ୍ଠ ସହଯୋଗୀଙ୍କୁ ପାଇଲି ସେମାନଙ୍କ ଓଡ଼ିଆ ଭାଷା ଉପରେ ବେଶ୍ ଦଖଲ ଥିଲା । ଜାତୀୟ ଓ ଅନ୍ତର୍ଜାତୀୟ ସମ୍ବାଦ ଟେଲିପ୍ରିଣ୍ଟର ଯୋଗେ ପ୍ରସାରିତ ହେଉଥିବାରୁ ସେସବୁର ଅନୁବାଦ ଓ ଶୀର୍ଷକ ଚୟନରେ ସାମ୍ବାଦିକର ନିପୁଣତାକୁ ଗୁରୁତ୍ୱ

ଦିଆଯାଉଥିଲା । ଏଥିସହ ସମ୍ବାଦ ଲିଖନ ଓ ପରିବେଷଣ ଶୈଳୀରେ ଜାତୀୟ ସମ୍ବାଦପତ୍ରର ପ୍ରଭାବ ଅନୁଭୂତ ହେଲା । ତେବେ ଭାଷାରେ ଯେଭଳି କୌଣସି ସାଲିସ୍ ନ ହୁଏ, ସେଥିପ୍ରତି କେବଳ ରାଧାନାଥ ବାବୁ ନୁହଁନ୍ତି, ଅନ୍ୟ ବରିଷ୍ଠ ସହଯୋଗୀମାନେ ମଧ୍ୟ ସତର୍କ ଥାଆନ୍ତି । ସମୟକ୍ରମେ ଅଳଙ୍କରଣ ଶୈଳୀ ଧୀରେ ସୁସ୍ପେଷ୍ଟ ବଦଳିବାକୁ ଲାଗିଲା । ତେବେ ତଥ୍ୟନିଷ୍ଠ ସମ୍ବାଦ ପରିବେଷଣର ଗୁରୁତ୍ୱ ହ୍ରାସ ପାଇ ନ ଥିଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ କ୍ରମାଗତ ଭାବେ ରାଜନୈତି ସଂକଟ ଓ ହଟଚମଟ ଲାଗି ରହୁଥିବାରୁ ରାଜନେତାକେନ୍ଦ୍ରିକ ଦୁର୍ନୀତି, ଅନୀତି ଓ ଦଳବଦଳ ପରିଲକ୍ଷିତ ହେଉଥିଲା । ଦୈନନ୍ଦିନ ଜୀବନରେ ଘଟଣା ଦୁର୍ଘଟଣା ଓ ଅପରାଧ ସହ ରାଜନୀତି ଭିତ୍ତିକ ସମ୍ବାଦର ସ୍ୱତନ୍ତ୍ର ଗୁରୁତ୍ୱ ଥିଲା । ଏ କ୍ଷେତ୍ରରେ କପୋଳକଳ୍ପିତ ତଥା ଆକାଶରୁ ତୋଳିଆଣି ଗପ ଲେଖିବାର ସୁଯୋଗ ଥିଲେ ମଧ୍ୟ ସେଥିରୁ ନିବୃତ୍ତ ରହିବା ପାଇଁ ସମ୍ପାଦକଙ୍କଠାରୁ କଠୋର ତାଗିଦ୍ ମଧ୍ୟ ଥାଏ । ସବୁଠାରୁ ବଡ଼ କଥା ହେଲା, କୌଣସି ସମ୍ବାଦରେ ସାମ୍ବାଦିକଙ୍କୁ ନିଜସ୍ୱ ମତାମତ ଦେବାର ସୁଯୋଗ ନ ଥିଲା । କେବଳ ସମ୍ପାଦକ ଅଗ୍ରଲେଖା ମାଧ୍ୟମରେ ଆଲୋଚନା ସମାଲୋଚନା କରିପାରିବେ । କୌଣସି ଘଟଣାକୁ ରାଜନୈତିକ ରଙ୍ଗ ଦେଇ ଉତ୍ତେଜନା ସୃଷ୍ଟିକାରୀ ସମ୍ବାଦ ପରିବେଷଣର ଆଦୌ ସୁଯୋଗ ନ ଥିଲା । ଏଥିଲାଗି ସାମ୍ବାଦିକଙ୍କ ପାଇଁ ସ୍ୱୀକୃତ ଲକ୍ଷ୍ମଣରେଖାକୁ ପ୍ରାୟ ସମସ୍ତେ ମାନୁଥିବାରୁ ପାଠକୀୟ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ସେମାନେ ହୋଇଥାଆନ୍ତି । ସମୟକ୍ରମେ ସାମ୍ବାଦିକ ନିଜସ୍ୱ ମତାମତକୁ ଅନ୍ୟ ମୁହଁରେ କୁହାଇ ସେହି ଉଦ୍ଧୃତିକୁ ପରିବେଷିତ ସମ୍ବାଦରେ ସ୍ଥାନ ଦେବେ । ତାହା ପାଠକଙ୍କ ମହଲରେ ଏତେ ଗ୍ରହଣୀୟ ହେଲା ଯେ କ୍ରମେ ତାହା ସମ୍ବାଦ ପ୍ରସାରଣ ଶୈଳୀର ଅଂଶବିଶେଷ ହୋଇଗଲା । ପରବର୍ତ୍ତୀ ସମୟରେ ଅନୁସନ୍ଧାନମୂଳକ ସମ୍ବାଦ ପରିବେଷଣର ଗୁରୁତ୍ୱ ବୃଦ୍ଧି ପାଇଲା । ତଥ୍ୟ ଓ ସୂତ୍ରକୁ ଆଧାର କରି ସମ୍ବାଦ ସଂଗ୍ରହରେ ନିପୁଣତାକୁ ପ୍ରାଧାନ୍ୟ ଦେଉଥିବାରୁ କେଉଁ ସାମ୍ବାଦିକର କେତେଦୂର ପହଞ୍ଚ ଓ ଲୋକସମ୍ପର୍କ ରକ୍ଷା

କରିବାରେ ଧୂରୀଣ ତାହାଙ୍କୁ ତଉଲି ଯୋଗ୍ୟତା ଧାର୍ଯ୍ୟ କରାଗଲା । ସେମାନଙ୍କୁ କ୍ଷମତା ଅଳିନ୍ଦର ନିକଟବର୍ତ୍ତୀ ହେବାର ସୁଯୋଗ ମିଳିଲା । ସେହିଠାରୁ ଆରମ୍ଭ ହେଲା ରାଜନେତା ଓ ସାମ୍ବାଦିକଙ୍କ ସଲାସୁତୁରାରେ ବରାଦୀ ସମ୍ବାଦ ପରିବେଷଣ । ରାଜନୈତିକ ହଟଚମଟ ସୃଷ୍ଟି କରିବାରେ ଏହି ବରାଦୀ ସମ୍ବାଦର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେହିଭଳି ଦୁର୍ନୀତି ଓ ଅନୀତି ସଂକ୍ରାନ୍ତ ଠୋସ୍ ପ୍ରମାଣ ସଂଗ୍ରହ କରିବାରେ ପ୍ରଶାସନିକ ଅଧିକାରୀଙ୍କ ସହ ସୁସମ୍ପର୍କ ରକ୍ଷାକରି ତଥ୍ୟ ଯୋଗାଡ଼ କରୁଥିବା ସାମ୍ବାଦିକର ମଧ୍ୟ ପତିଆରା ବୃଦ୍ଧି ପାଇଲା । ବୃତ୍ତିନିଷ୍ଠ ସାମ୍ବାଦିକ ଉଭୟ କ୍ଷେତ୍ରରେ ଦକ୍ଷତା ପ୍ରଦର୍ଶନ କରି ସୁନାମ ଅର୍ଜ୍ଜନ କରିପାରୁଥିବାବେଳେ ଅନ୍ୟ କେତେକ ଦଲାଲି କରି ବିଷୟ ସମ୍ପତ୍ତି ଆହରଣ କରିବାରେ ମାତିଗଲେ । କେବଳ ସାମ୍ବାଦିକତା ନୁହେଁ ସବୁ ପେସାରେ କିଛି  କଳା ମେଣ୍ଢା ଥାଆନ୍ତି । ଆକାଶବାଣୀ କେନ୍ଦ୍ର ଓ ଦୂରଦର୍ଶନ ସରକାରୀ ସମ୍ବାଦ ପରିବେଷଣ କରୁଥିବାବେଳେ ପ୍ରିଣ୍ଟ ମିଡ଼ିଆ ଯଥାସମ୍ଭବ ନିରପେକ୍ଷତା ଅବଲମ୍ବନ କରି ଜନସାଧାରଣଙ୍କ ଶ୍ରଦ୍ଧାଭାଜନ ହୋଇଥିଲା । ଏସବୁ ସତ୍ତ୍ୱେ ସମ୍ବାଦପତ୍ର ଯେ ସମ୍ପୂର୍ଣ୍ଣ ରୂପେ ପ୍ରଭାବମୁକ୍ତ ଥିଲା, ତାହା ନୁହେଁ । ଜାତୀୟ ଓ ଆଞ୍ଚଳିକ ସ୍ତରରେ ପ୍ରଭାବ ବିସ୍ତାର କରିଥିବା ରାଜନୈତିକ ଦଳଗୁଡ଼ିକ ମଧ୍ୟ ବିଭିନ୍ନ ସମ୍ବାଦପତ୍ର ସହ ଯୋଡ଼ି ହୋଇଥାନ୍ତି । ଏସବୁ ସତ୍ତ୍ୱେ ପ୍ରମୁଖ ପ୍ରସଙ୍ଗ ନେଇ ମିଡ଼ିଆ ନିଜସ୍ୱ ମତ ଉପସ୍ଥାପନ କରୁଥିଲେ ମଧ୍ୟ ଜନସ୍ୱାର୍ଥକୁ ବଳିଦେବା ଅଚିନ୍ତନୀୟ ଥିଲା ସେତେବେଳେ ।

ନବେ ଦଶକରେ ବୈଷୟିକ ଜ୍ଞାନକୌଶଳର ଅଭିବୃଦ୍ଧି ଘଟିବା ସହ ଘରୋଇ ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମ କାୟାବିସ୍ତାର କରିବାର ସୁଯୋଗ ପାଇଲେ । ସେହିଭଳି ସମ୍ବାଦପତ୍ରର ମୁଦ୍ରଣ ଓ ଖବର ସଂଗ୍ରହରେ ନୂତନ ଜ୍ଞାନକୌଶଳର ପ୍ରୟୋଗ ହେବାରୁ ମିଡ଼ିଆରେ ବିପୁଳ ପୁଞ୍ଜିନିବେଶ କରିବାକୁ ପଡ଼ିଲା । ଏହାକୁ କେନ୍ଦ୍ରକରି ଯେଉଁ ପ୍ରତିଯୋଗିତା ଆରମ୍ଭ ହେଲା, ସେଥିରେ

ଏକାଧିକ ସମ୍ବାଦପତ୍ର ନିଜର ସତ୍ତା ହରାଇଲେ । ସେହିଭଳି ସମ୍ବାଦସର୍ବସ୍ୱ ଘରୋଇ ଚ୍ୟାନେଲର ମଧ୍ୟ ଅଭ୍ୟୁଦୟ ଘଟିଲା । ବିପୁଳ ପୁଞ୍ଜିର ଆବଶ୍ୟକତା ଥିବାରୁ ଲାଭ କ୍ଷତିକୁ ତଉଲି କର୍ପୋରେଟ ଶୈଳୀରେ ନ୍ୟୁଜ୍ ଚ୍ୟାନେଲ୍ ଓ ସମ୍ବାଦପତ୍ରର ପରିଚାଳନା ଆରମ୍ଭ ହେଲା । ଟିଆର୍‌ପି ଓ ପ୍ରସାରଣ ଯାହାର ଯେତେ ଅଧିକ ସେହି ଅନୁସାରେ ବିଜ୍ଞାପନ ମିଳୁଥିବାରୁ ତାହାକୁ ହାସଲ କରିବା ସକାଶେ ନାନାପ୍ରକାର କଳକୌଶଳ ପ୍ରୟୋଗ କରିବାର ଆବଶ୍ୟକତା ଉପୁଜିଲା । ଚବିଶଘଣ୍ଟିଆ ସମ୍ବାଦ ପ୍ରସାରଣ କରୁଥିବା ଘରୋଇ ନ୍ୟୁଜ୍ ଚ୍ୟାନେଲ୍ ସହ ସମ୍ବାଦପତ୍ର ପ୍ରତିଯୋଗିତା କରୁଥିବାରୁ ନିଜର 'କଣ୍ଟେଣ୍ଟ୍' ବଦଳେଇବାକୁ ବାଧ୍ୟ ହେଲେ । କ୍ରମେ ସମ୍ବାଦପତ୍ରରୁ ସଭାସମିତି ରିପୋର୍ଟ ଗୁରୁତ୍ୱ ହରାଇଲା । ବିଭିନ୍ନ ସମସ୍ୟା ଏବଂ ଘଟଣା ଦୁର୍ଘଟଣାର ବିଶ୍ଳେଷଣାତ୍ମକ ତଥ୍ୟ ପରିବେଷିତ ହେଲା । ସବୁଠାରୁ ମଜା କଥା ହେଲା, କେବଳ ନିଛକ ସମ୍ବାଦ ନୁହେଁ ମତାମତ, ମନ୍ତବ୍ୟ ତଥା ବିଶ୍ଳେଷଣ ନ୍ୟୁଜ୍‌ରେ ସ୍ଥାନ ପାଇଲା । ଏପରିକି ଜନମତକୁ ପ୍ରଭାବିତ କରିବାର ଲକ୍ଷ୍ୟ ରଖି ପ୍ରସାରିତ ହେଉଥିବା ସମ୍ବାଦର ଗୁରୁତ୍ୱ ବଢ଼ିଲା । ଏହାର ସୁଯୋଗ ନେବା ପାଇଁ କେବଳ ରାଜନୈତିକ ଦଳ ନୁହେଁ ବିଭିନ୍ନ ଶିଳ୍ପସଂସ୍ଥା ଓ ସାଧାରଣ ଜୀବନରେ କାର୍ଯ୍ୟକରୁଥିବା ଏନ୍‌ଜିଓମାନେ ଆଗେଇ ଆସିଲେ । ଏହିଠାରୁ 'ପେଡ୍ ନ୍ୟୁଜ୍' ସଂସ୍କୃତି ଆରମ୍ଭ ହେଲା । ଏହି ସଂସ୍କୃତି ମିଡ଼ିଆକୁ କବଳିତ କରି ରଖିଥିବାରୁ ଗଣମାଧ୍ୟମ ଉପରୁ ପାଠକୀୟ ଶ୍ରଦ୍ଧା ଓ ବିଶ୍ୱାସ ଦିନକୁ ଦିନ ହ୍ରାସ ପାଇବାରେ ଲାଗିଲା । ଏହାସତ୍ତ୍ୱେ ପ୍ରିଣ୍ଟ ମିଡ଼ିଆର ପାଠକଙ୍କ ସଂଖ୍ୟା ଦିନକୁ ଦିନ ବଢୁଥିବାରୁ ପ୍ରସାରଣ ମଧ୍ୟ ଆନୁପାତିକ ଭାବେ ବଢ଼ିଲା । ତେବେ ଘଟଣାର ସତ୍ୟାସତ୍ୟ ସମ୍ପର୍କରେ ଅବଗତ ହେବା ପାଇଁ ନିର୍ଦ୍ଦିଷ୍ଟ ଗୋଟିଏ ସମ୍ବାଦପତ୍ରର ତଥ୍ୟ ଉପରେ ନିର୍ଭରଶୀଳତା ମଧ୍ୟ ହ୍ରାସ ପାଇଲା । ତେଣୁ ଏକାଧିକ ସମ୍ବାଦପତ୍ର ଓ ଚ୍ୟାନେଲକୁ ଅନୁସରଣ ନ କଲେ ପ୍ରକୃତରେ କ'ଣ, କିପରି ଘଟିଛି ତାହା ଜାଣିବା କଷ୍ଟକର । ଅନ୍ୟପକ୍ଷରେ ବ୍ୟସ୍ତବହୁଳ ଜୀବନରେ ଏତେ କଥାକୁ ବେଳ କାହାର ନାହିଁ । କେବଳ ହେଡ୍ ଲାଇନ୍

ଓ ହାଇଲାଇଟ୍ସ ଉପରେ ଆଖି ପକାଇଦେଲେ କଥା ସରିଲା । ତେଣୁ ସମ୍ବାଦପତ୍ରର ଅଲଙ୍କରଣ ଶୈଳୀ ବଦଳିଛି । ରୋଚକ ଶୀର୍ଷକ ସାଙ୍ଗକୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦର ମୁଖ୍ୟାଂଶକୁ ପାଠକର ଦୃଷ୍ଟି ଆକର୍ଷଣ ସକାଶେ ନୂଆ ନୂଆ ଧାରାରେ ଆଜିକାଲି ତଥ୍ୟ ପରିବେଷଣ କରାଯାଉଛି ।

ଜାତୀୟ ଓ ଆଞ୍ଚଳିକ ସ୍ତରରେ ଏକାଧିକ ନ୍ୟୁଜ୍ ଚ୍ୟାନେଲ ପ୍ରତିଯୋଗିତାପୂର୍ଣ୍ଣ ତଥ୍ୟ ପରିବେଷଣ କରୁଥିବାରୁ ଅତିରଞ୍ଜନର ସୀମା ଅତିକ୍ରମ କରିବା ସାଙ୍ଗକୁ ତାହାର ପ୍ରଭାବ ସମ୍ବାଦପତ୍ରକୁ ମଧ୍ୟ ସଂକ୍ରମିତ କରିଛି । ଏଠାରେ ସୂଚାଇ ଦିଆଯାଇପାରେ କି, ଭାଷା ସାହିତ୍ୟକୁ ସଞ୍ଜିବନୀ ଯୋଗାଇ ଆସିଥିବା ଓଡ଼ିଆ ସମ୍ବାଦପତ୍ର ମଧ୍ୟ ନିଜର ଆଭିମୁଖ୍ୟ ବଦଳେଇବାରେ ପଛଘୁଞ୍ଚା ଦେଲାନି । ସମୟ ଥିଲା ଓଡ଼ିଆ ଓ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଥିବା ବ୍ୟକ୍ତିବିଶେଷ ପ୍ରୁଫ୍ ରିଡିଂର ନେତୃତ୍ୱ ନେଉଥିବାରୁ ସମ୍ବାଦପତ୍ରରେ ପ୍ରଚଳିତ ଓଡ଼ିଆ ଭାଷା ସମୃଦ୍ଧ ହୋଇଥିଲା । ମୁଦ୍ରଣଶିଳ୍ପରୁ କମ୍ପୋଜ୍ ବ୍ୟବସ୍ଥା ପ୍ରତ୍ୟାହୃତ ହୋଇଯିବା ପରେ କମ୍ପ୍ୟୁଟର ମାଧ୍ୟମରେ ଡିଟିପି କରାଯିବାରୁ ପ୍ରୁଫ୍ ରିଡିଂର ସୁଯୋଗ ଥିଲେ ମଧ୍ୟ ତାହାକୁ ପରିଚାଳନା କର୍ତ୍ତୃପକ୍ଷ ଏଡ଼ାଇଗଲେ । ଅନ୍ୟପକ୍ଷରେ ଜାତୀୟସ୍ତରର ଘରୋଇ ଚ୍ୟାନେଲ ମାଧ୍ୟମରେ ହିନ୍ଦୀ ଓ ଇଂରାଜୀ ସମ୍ବାଦ ପ୍ରସାରଣ କ୍ରମେ ଲୋକପ୍ରିୟତା ହାସଲ କଲା । ତା'ର ପ୍ରଭାବରେ ଲୋକଙ୍କର କଥିତ ଓଡ଼ିଆ ଭାଷାରେ ହିନ୍ଦୀ ଓ ଇଂରାଜୀ ଶବ୍ଦ ବ୍ୟବହାର ଦିନକୁ ଦିନ ବୃଦ୍ଧି ପାଇଲା । ଓଡ଼ିଶାର ମୁଣ୍ଡ ଟେକିଥିବା ଘରୋଇ ଚ୍ୟାନେଲ ଶସ୍ତା ଲୋକପ୍ରିୟତା ହାସଲ ସକାଶେ ତିନି ଭାଷାର ସମ୍ମିଶ୍ରଣରେ ଯେଉଁ ଖେଚୁଡ଼ି ଓଡ଼ିଆ ଭାଷା ପ୍ରୟୋଗ କଲେ ତାହାର ପ୍ରଭାବ ମଧ୍ୟ ଓଡ଼ିଆ ପ୍ରିଣ୍ଟ ମିଡ଼ିଆରେ ଅନୁଭୂତ ହେଲା । କେବଳ ସେତିକି ନୁହେଁ ପ୍ରୁଫ୍ ରିଡିଂ ବ୍ୟବସ୍ଥା ନ ଥିବାରୁ ସମ୍ବାଦପତ୍ରରେ କ୍ରମାଗତ ଭାବେ ମୁଦ୍ରଣ ତ୍ରୁଟି ଅନୁଭୂତ ହେଲା । ଅନ୍ୟ ଗୋଟିଏ ଦିଗ ହେଲା ଲୋକଙ୍କୁ ନିଜ ଅଞ୍ଚଳର ସମ୍ବାଦ ଯୋଗାଇଦେବା ଓ ପ୍ରସାରଣ ବୃଦ୍ଧିକୁ ଦୃଷ୍ଟିରେ ରଖି ଏକାଧିକ

ସଂସ୍କରଣର ବ୍ୟବସ୍ଥାକୁ ଖବରକାଗଜ ମାଲିକମାନେ ଆଦରିନେଲେ । ବିଭିନ୍ନ ସଂସ୍କରଣ ମଧ୍ୟରେ ବିଶେଷ ସମୟ ବ୍ୟବଧାନ ରହୁ ନ ଥିବାରୁ ଭାଷାଗତ ତ୍ରୁଟିକୁ ସୁଧାରିବା ସମ୍ଭବପର ହେଲା ନାହିଁ । ଭାଷା ସାହିତ୍ୟରେ ପରିଲକ୍ଷିତ ଦୁର୍ବଳତା ସକାଶେ ଏହି ପରିସ୍ଥିତି ଅନେକାଂଶରେ ଦାୟୀ । ଏଠାରେ ଆମର କହିବାର କଥା ହେଲା, ଓଡ଼ିଆ ଭାଷାକୁ ଏକ ବଡ଼ ଧରଣର ବିପର୍ଯ୍ୟୟକୁ ରକ୍ଷା କରିବା ପାଇଁ ରାଜ୍ୟରେ ମୁଣ୍ଡ ଟେକିଥିବା ସମ୍ବାଦପତ୍ର ନିଜର ଆଭିମୁଖ୍ୟ ବଦଳାଇଥିବାରୁ ଭାଷା ସାହିତ୍ୟରେ ମଧ୍ୟ ଶୁଦ୍ଧ ଓଡ଼ିଆ ଲିଖନ ପରିଲକ୍ଷିତ ହେଉନାହିଁ । ଓଡ଼ିଆ ଶାସ୍ତ୍ରୀୟ ଭାଷାର ମାନ୍ୟତା ହାସଲ କରିଥିଲେ ମଧ୍ୟ ଭାଷାଗତ ଅବକ୍ଷୟଧାରାକୁ ରୋକାଯାଇ ପାରିନାହିଁ । ସରକାରୀ ଦପ୍ତର ଓ ଅଦାଲତରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଆନ୍ଦୋଳନ ଜାରି ରହିଥିବାବେଳେ ଗଣମାଧ୍ୟମଗୁଡ଼ିକ ପ୍ରତି ମୁହୂର୍ତ୍ତରେ ଭାଷା ସାହିତ୍ୟକୁ ହତ୍ୟା କରୁଛନ୍ତି ।

ରାଜ୍ୟବାସୀଙ୍କ ନିକଟରେ ନିଜ ଅଞ୍ଚଳର ସମ୍ବାଦ ପରିବେଷଣକୁ ନେଇ ସମ୍ବାଦପତ୍ରଗୁଡ଼ିକ ଏକାଧିକ ସଂସ୍କରଣ ପ୍ରକାଶ କରୁଥିବାରୁ ଗୋଟିଏ ଅଞ୍ଚଳର ଖବର ଅନ୍ୟ ଅଞ୍ଚଳର ଲୋକେ ଜାଣିବାର ସୁଯୋଗ ନାହିଁ । କେବଳ ସେତିକି ନୁହେଁ, ପ୍ରସାରଣ ବୃଦ୍ଧିକୁ ଦୃଷ୍ଟିରେ ରଖି ଅଣସମ୍ବାଦ ପ୍ରକାଶ ଆନୁପାତିକ ଭାବେ ବୃଦ୍ଧି ପାଇଛି । ସେହି ଅନୁପାତରେ ଗୁରୁତ୍ୱପୂର୍ଣ୍ଣ ସମ୍ବାଦର ପ୍ରାଧାନ୍ୟ ମଧ୍ୟ ହ୍ରାସ ପାଇଛି । ସବୁଠାରୁ ଉଲ୍ଲେଖଯୋଗ୍ୟ ଯେ, ସବୁ ସଂସ୍କରଣର ଲୋକାଭିମୁଖୀ ସମସ୍ୟାମୂଳକ ସମ୍ବାଦକୁ ନେଇ ଏକ କେନ୍ଦ୍ରୀୟ ସଂସ୍କରଣ ପ୍ରକାଶ ପ୍ରତି ବିମୁଖତା ଯୋଗୁଁ ଖବରକାଗଜର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବ୍ୟାହତ ହେଉଛି । ରାଜ୍ୟରେ ଏକାଧିକ ନ୍ୟୁଜ୍ ଚ୍ୟାନେଲ ସକ୍ରିୟ ହୋଇଥିବାରୁ ସମ୍ବାଦପତ୍ରର ଆଦର କମିଛି । ନିଜର ସ୍ଥିତି ସୁଦୃଢ଼ କରିବା ସକାଶେ ସମ୍ବାଦପତ୍ର ମଧ୍ୟ ଛୋଟ ଛୋଟ ଗୁରୁତ୍ୱହୀନ ଖବରକୁ ରଙ୍ଗ ଦେଇ ଅତିରଞ୍ଜିତ ସମ୍ବାଦ ପରିବେଷଣ କରୁଛନ୍ତି । ଏହାଛଡ଼ା

ଖବରକାଗଜ ଅପେକ୍ଷାକୃତ ଅଧିକ ଫିଚରଧର୍ମୀ ହୋଇଛନ୍ତି । ବର୍ଦ୍ଧିତ କଳେବର ୨୦ ପୃଷ୍ଠା ହୋଇଥିଲେ ମଧ୍ୟ ସେଥିରେ ଅନ୍ୟୂନ ୪ପୃଷ୍ଠା କେବଳ ଫିଚରସର୍ବସ୍ୱ ତଥ୍ୟ ସ୍ଥାନ ପାଉଛି । ୮ପୃଷ୍ଠା ବିଶିଷ୍ଟ ରବିବାସରୀୟ ସଂସ୍କରଣରେ ଏହି ଫିଚର ପୃଷ୍ଠାଗୁଡ଼ିକୁ ସଂଲଗ୍ନ କରାଯାଇପାରନ୍ତା । ଅନ୍ୟ ଗୋଟିଏ ଦିଗ ହେଲା, ଜୀବନ ଜଂଜାଳର ଭିଡ଼ ଭିତରେ ଦିନକୁ ଦିନ ସମ୍ବାଦପତ୍ର ପ୍ରତି ପାଠକୀୟ ଆଦର ମଧ୍ୟ ହ୍ରାସ ପାଉଛି । ତାହାର ପଠନ କେବଳ ହେଡ୍ ଲାଇନ୍‌ରେ ସୀମିତ ରହୁଛି । ସେହି ହେଡ୍ ଲାଇନ୍‌ରୁ ହିଁ ପାଠକ ଆକର୍ଷିତ ହୋଇଥାଏ ବିଷୟବସ୍ତୁ ପଢ଼ିବା ପାଇଁ । ଏ କ୍ଷେତ୍ରରେ ଅଳଙ୍କରଣ ପରିପାଟୀରେ ପରିବର୍ତ୍ତନ ଅବଶ୍ୟାମ୍ଭାବୀ ହୋଇପଡ଼ିଛି । ଏହାକୁ କେନ୍ଦ୍ରକରି ସମ୍ବାଦପତ୍ରଗୁଡ଼ିକ ଏକାଧିକ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି ।

ପରିବର୍ତ୍ତିତ ପରିସ୍ଥିତିରେ ଗଣମାଧ୍ୟମ ନିଜର ବିଶ୍ୱାସନୀୟତା ହରାଉଥିବାର ଲକ୍ଷ୍ୟ କରାଯାଉଛି । ବହୁକ୍ଷେତ୍ରରେ ସେମାନେ କ୍ଷମତା ରାଜନୀତିର ହାତବାରିସି ପାଲଟିଛନ୍ତି । ବିଶେଷକରି ୨୦୧୪ ସାଧାରଣ ନିର୍ବାଚନ ପରେ ପରେ ବଡ଼ ବଡ଼ କର୍ପୋରେଟ ସଂସ୍ଥା ଜାତୀୟ ସ୍ତରର ଗଣମାଧ୍ୟମଗୁଡ଼ିକର ଅଂଶଧନ କିଣି ତାହାକୁ ନିଜ ହିସାବରେ ପରିଚାଳନା କରୁଛନ୍ତି । ଦେଶର ରାଜନୈତିକ ଘଟଣାବଳୀ ଓ ସରକାରୀ ନିଷ୍ପତ୍ତିର ପ୍ରତିକୂଳ ଦିଗ ସମ୍ପର୍କରେ ପ୍ରକୃତ ତଥ୍ୟ ସାମ୍ନାକୁ ଆସିପାରୁନାହିଁ । ଯଦି ସାମାଜିକ ଗଣମାଧ୍ୟମର ସକ୍ରିୟତା ବୃଦ୍ଧି ପାଇ ନ ଥାଆନ୍ତା, ତେବେ ବହୁ ଗୁରୁତ୍ୱପୂର୍ଣ୍ଣ ଖବର ଲୋକଲୋଚନକୁ ଆସିପାରୁ ନ ଥାଆନ୍ତା ; ଏପରିକି ବିଭିନ୍ନ ସମ୍ବାଦପତ୍ର ଓ ଗଣମାଧ୍ୟମ ସରକାରଙ୍କ ସ୍ତାବକ ପାଲଟି ଥିଲାବେଳେ ସେମାନଙ୍କ ନ୍ୟୁଜ୍ ପୋର୍ଟାଲ ଭିନ୍ନ ତଥ୍ୟ ଦେଇ ସଚେତନ ଓ ଚିନ୍ତାଶୀଳ ଜନତାକୁ ଅସଲ ପରିସ୍ଥିତି ସମ୍ପର୍କରେ ଜାଗରୁକ କରୁଛନ୍ତି । ଏ କ୍ଷେତ୍ରରେ ସୂଚନା ଅଧିକାର ଆଇନ ବେଶ୍ ସହାୟକ ହୋଇଛି । ଏହି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହ ମାଧ୍ୟମର କଣ୍ଠରୋଧ ପାଇଁ ମଧ୍ୟ ଉଦ୍ୟମ ଆରମ୍ଭ ହୋଇଛି ।

ସରକାରଙ୍କ ପ୍ରଚାରଧର୍ମୀ ଅସତ୍ୟ ସମ୍ବାଦର ପ୍ରତିରୋଧ ଓ ସମାଲୋଚନାକୁ ଦେଶବିରୋଧୀ ଆଖ୍ୟା ଦେଇ ଯେଭଳି ଆକ୍ରମଣ କରାଯାଉଛି, ସେଥିରେ ନିରପେକ୍ଷ ଓ ନିର୍ଭୀକ ସମ୍ବାଦ ବା ତଥ୍ୟ ପ୍ରଦାନ ବ୍ୟାହତ ହେଉଛି । ଏପ୍ରକାର ଅଘୋଷିତ କଟକଣା ସମ୍ମୁଖରେ ଗଣମାଧ୍ୟମ କେତେଦୂର ତିଷ୍ଠିବ, ସେନେଇ ସନ୍ଦେହ ଉପୁଜିବା ସ୍ୱାଭାବିକ । ଯେତେଦୂର ମନେ ହୁଏ, ଆଗାମୀ ଦିନରେ ଗଣମାଧ୍ୟମ କେବଳ ବିଶ୍ୱାସନୀୟତା ହରାଇବ ନାହିଁ, ପରୋକ୍ଷ କଟକଣା ଜାରି ରହିଲେ ତାହାର ସ୍ଥିତି ବିପନ୍ନ ହେବ ।

ସର୍ବୋପରି ଆମେ କହିବା ଯେ, ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ସମ୍ବାଦପତ୍ରର ଦାୟିତ୍ୱ ଓ କର୍ତ୍ତବ୍ୟ ମଧ୍ୟ ବୃଦ୍ଧି ପାଇଛି । ବଙ୍ଗାଳି, ମରହଟ୍ଟା ଓ ଇଂରେଜଙ୍କ ଷଡ଼ଯନ୍ତ୍ରରେ ଓଡ଼ିଆ ଭାଷା ନିଜର ସ୍ଥିତି ହରାଇଥିଲାବେଳେ ଖବରକାଗଜ ମାଧ୍ୟମରେ ଭାଷା ସୁରକ୍ଷା ଆନ୍ଦୋଳନ ଆରମ୍ଭ ହୋଇଥିଲା । କ୍ରମେ ହିନ୍ଦୀ ଓ ଇଂରାଜୀ ଭାଷାର ଅନୁପ୍ରବେଶ ଯୋଗୁଁ ଶୁଦ୍ଧ ଓଡ଼ିଆ ଭାଷା ଲିଖନ ଓ ପଠନର ସୁଯୋଗ ସଂକୁଚିତ ହେଉଛି । ଓଡ଼ିଆ ଖବରକାଗଜ ଏହି ଅବକ୍ଷୟ ଧାରାର ଅଂଶୀଦାର ନ ହେଉ । ଯେଉଁ ଦାୟିତ୍ୱ ସମ୍ପାଦନ ପାଇଁ ଆମ ଓଡ଼ିଶାରେ ସମ୍ବାଦପତ୍ର ସୃଷ୍ଟି ହୋଇଥିଲା, ତାହାର ଯେ ପରିସମାପ୍ତି ଘଟୁଛି ଭାବିବା ଉଚିତ୍ ନୁହେଁ । ଅନ୍ତତଃ ଭାଷାର ଶାସ୍ତ୍ରୀୟତା ବଜାୟ ରଖିବାର ଗୁରୁଦାୟିତ୍ୱ ସମ୍ବାଦପତ୍ର ବହନ କରିବା ପାଇଁ ଆଗେଇ ଆସିବା ଉଚିତ୍ ।

□□□

# ବାବୁଜୀଙ୍କ ସହ କିଛି ସ୍ମୃତି

## ଅଶୋକ ଦାସ

ପାଠପଢ଼ା ପରେ ସତୁରୀ ଦଶକର ମଧ୍ୟ ଭାଗରେ ଜଣେ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀ ଭାବେ ନିଜକୁ ଗଢ଼ିବାକୁ ଚାହିଁଥିଲେ ହେଁ ବିଭିନ୍ନ ଘାତ ପ୍ରତିଘାତ ଯୋଗୁଁ ଜଟଣୀରେ ଆରମ୍ଭ କରିଥିବା କ୍ଷୁଦ୍ର ଶିଳ୍ପଟି ଅନେକ ସମୟରେ ରୁଗଣ୍ ହୋଇପଡୁଥିଲା । ଏଥିଯୋଗୁଁ ଯୁବ ବୟସରେ କିଛିଟା ହତାଶା ଓ ଦ୍ୱନ୍ଦ୍ୱ ମଧ୍ୟରେ ଗତି କରୁଥିବାବେଳେ ଘଟଣାଚକ୍ରରେ ପ୍ରତିଷ୍ଠିତ ଓଡିଆ ଦୈନିକ 'ସମାଜ'ରେ ମୁଁ ଆକସ୍ମିକ ଭାବେ ସମ୍ପୃକ୍ତ ହୋଇଥିଲି । ଏହା ପରେ ସାମ୍ବାଦିକତାକୁ ଆପଣେଇ ନେବାର ନିଶାରେ ମୁଁ ସେବେଠାରୁ ଏଯାଏଁ ଯେତେ ବାଟ ଆସିଛି ଓ ଯାହା କିଛି ପରିଚୟ ପାଇଛି ତାହାର ଶ୍ରେୟ ଓଡ଼ିଆ ସାମ୍ବାଦିକତା ଜଗତର ଯୁଗପୁରୁଷ ଡକ୍ଟର ରାଧାନାଥ ରଥଙ୍କୁ ହିଁ ମୁଁ ଦେବି । ତାଙ୍କ ସହ ମୋର ସମ୍ପର୍କ ଓ ସ୍ମୃତି କଥା ଲେଖିବାକୁ ହେଲେ ତାଙ୍କୁ ପ୍ରଥମେ କେଉଁଠି କେମିତି ଭେଟିଲି, ସେ ବିଷୟରେ କହିବା ପ୍ରାସଙ୍ଗିକ ହେବ ।

### ପ୍ରଥମ ସାକ୍ଷାତ

ଏହା ହେଉଛି ୧୯୭୮ ମସିହାର କଥା । ମୁଁ ଜଟଣୀ ଲାୟନ୍ସ କ୍ଲବ୍‌ର ସମ୍ପାଦକ ଥାଏ ଏବଂ କ୍ଲବ୍‌ର ଏକ ଉତ୍ସବକୁ ଡକ୍ଟର ରଥଙ୍କୁ ମୁଖ୍ୟ ଅତିଥି ଭାବେ ଆମେ ନିମନ୍ତ୍ରଣ କରିଥିଲୁ । ସେ ନିର୍ଦ୍ଧାରିତ ସମୟ ପୂର୍ବରୁ ସଭାସ୍ଥଳରେ ପହଞ୍ଚି ଯିବାରୁ କ୍ଲବ୍ ପକ୍ଷରୁ ନିଆଯାଇଥିବା ବିଭିନ୍ନ ସେବାମୂଳକ କାର୍ଯ୍ୟକ୍ରମ ଓ ଅନ୍ୟାନ୍ୟ ବିଷୟରେ ତାଙ୍କ ସହ କିଛିଟା ଆଳାପ ଆଲୋଚନାର

ସୁଯୋଗ ଜୁଟିଥିଲା । ଏହି ଅବସରରେ କ୍ଲବ୍‌ର ତତ୍କାଳୀନ ସଭାପତି ଡଃ କୃଷ୍ଣ କୁମାର ମହାନ୍ତି ଜଟଣୀରେ 'ସମାଜ'ର କେହି ପ୍ରତିନିଧି ନଥିବା କଥା ଦର୍ଶାଇବାରେ ଡକ୍ଟର ରଥ ଆମ ଦୁହିଁଙ୍କୁ କହିଥିଲେ, "କେହି ଭଲ ଲୋକ ପାଇଲେ ମୋତେ ଜଣାଇବେ ଓ ମୁଁ ନିଷ୍ପତ୍ତି ନେବି" । ଲେଖାଲେଖିରେ ମୋର ଆଗ୍ରହ ରହିଛି ବୋଲି କ୍ଲବ୍ ସଭାପତି ମନ୍ତବ୍ୟ ଦେବାରେ ଡକ୍ଟର ରଥ ତତ୍‌କ୍ଷଣାତ୍ ଖୁସି ହୋଇ ମୋତେ କଟକ ଯାଇ ତାଙ୍କୁ କେତେବେଳେ ଦେଖା କରିବାକୁ ପରାମର୍ଶ ଦେଇଥିଲେ । ସେଦିନର ସେହି କଥା ସେମିତି ରହିଯାଇଥିଲା । କିଛି ବ୍ୟକ୍ତିଗତ କାମ ପାଇଁ ମୁଁ ପ୍ରାୟ ୫-୬ ମାସ ପରେ କଟକ ଯାଇଥିଲି । ବକ୍ସିବଜାରସ୍ଥିତ ଗୋପବନ୍ଧୁ ଭବନ ସାମ୍ନା ରାସ୍ତାରେ ଗଲାବେଳେ ଡକ୍ଟର ରଥଙ୍କ କଥା ମନେ ପକାଇ ସମାଜ ଅଫିସ୍ ଭିତରକୁ ଯାଇ ଏକ କାଗଜରେ ମୋ ନାଁ ଓ ଜଟଣୀ ଲାୟନ୍ସ କ୍ଲବ୍ ଲେଖି ତାଙ୍କ ପାଖକୁ ପଠାଇବାରେ ସେ ତୁରନ୍ତ ଡାକିଥିଲେ । କୁଶଳ ଜିଜ୍ଞାସା ପରେ ମୁଁ କିଛି କହିବା ଆଗରୁ ଅବୈତନିକ ପ୍ରତିନିଧି ଭାବେ ମୋ ନାଁରେ ଏକ କାର୍ଡ କରିବାକୁ ସହକାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏଇଠୁ ଆରମ୍ଭ ହୋଇଥିଲା ଜଣେ ସାମୟିକ ପ୍ରତିନିଧି ଭାବେ ମୋ ସାମ୍ବାଦିକ ଜୀବନ, ଯେଉଁଥିରେ ପେଶା ବିଷୟରେ ଜାଣିବା ପୂର୍ବରୁ ମୁଁ ସେହି ନିଶାରେ ଆଚ୍ଛନ୍ନ ହୋଇପଡ଼ିଥିଲି ।

ଜଟଣୀ ସହରର ରେଳବାଇ ଅଞ୍ଚଳ ଖୋର୍ଦ୍ଧା ରୋଡ୍ ଭାବେ ପରିଚିତ । ଏହା ସେତେବେଳର ଅବିଭାଜିତ ଦକ୍ଷିଣପୂର୍ବ ରେଳବାଇର ଓଡ଼ିଶାରେ ଥିବା ଏକମାତ୍ର ଡିଭିଜନ୍ ଥିବାରୁ ରେଳବାଇ ସମ୍ପର୍କିତ ସମ୍ବାଦ ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଓଡ଼ିଶାର ବିକାଶ ପାଇଁ ରେଳବାଇର ବିକାଶ ଜରୁରୀ ହୋଇଥିଲେହେଁ ସେ ସମୟରେ ଅନେକ କଥା କର୍ତ୍ତୃପକ୍ଷଙ୍କ ଦ୍ୱାରା ଅଣଦେଖା ହେଉଥିବାର ତଥ୍ୟଭିତ୍ତିକ ରିପୋର୍ଟ ମୁଁ ଲେଖିବାରେ ଡକ୍ଟର ରଥ (ଯାହାଙ୍କୁ 'ସମାଜ'ରେ ଯୋଗଦେବା ପରେ ଅନ୍ୟମାନଙ୍କ ଭଳି ମୁଁ ବାବୁଜୀ ବୋଲି ସମ୍ବୋଧନ କଲି) ମୋତେ ବିଶେଷ ଉତ୍ସାହିତ କରିଥିଲେ । ଏକ ଛୋଟ

ସହରର ସମ୍ବାଦଦାତାକୁ ବାବୁଜୀଙ୍କ ଭଳି ବିରାଟ ବ୍ୟକ୍ତିତ୍ୱଙ୍କ ସ୍ନେହବୋଳା ଉତ୍ସାହ ମୋତେ ମୋ ଯୁବ ବୟସରେ ଆଗକୁ ମାଡ଼ିଚାଲିବା ପାଇଁ ଅସମ୍ଭବ ପ୍ରେରଣା ଯୋଗାଇଥିଲା ।

ରେଳବାଇ ଓ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ/ଫିଚର୍ ଲେଖି ତାଙ୍କର ଶ୍ରଦ୍ଧାଭାଜନ ହେବାପରେ ମଝିରେ ମଝିରେ ନିଜ କାମରେ ଭୁବନେଶ୍ୱର ଆସିବା ବେଳେ ଦୁଇ ତିନି ଜଣ ପେଶାଦାର ସାମ୍ବାଦିକଙ୍କ ସଂସ୍ପର୍ଶରେ ଆସି ରୁଟିନ୍ ରିପୋର୍ଟ ବଦଳରେ କିଛିଟା ନିଆରା ଲେଖା ପାଇଁ ମନରେ ଆଗ୍ରହ ସୃଷ୍ଟି ହୋଇଥିଲା । ବିଭିନ୍ନ ସମ୍ବାଦ ଓ ଲେଖା ପାଇଁ ପାଠକୀୟ ଆଦୃତି ଏବଂ ବାବୁଜୀଙ୍କ ଉତ୍ସାହ ପ୍ରଦାନ ଯୋଗୁଁ ଛୋଟ ସହରରେ ଥାଇ ମଧ୍ୟ ମୁଁ ନିୟମିତ ବହୁ ସଂଖ୍ୟକ ସମ୍ବାଦ ପଠାଇପାରୁଥିଲି ।

**ଭୁବନେଶ୍ୱରରେ କାର୍ଯ୍ୟାରମ୍ଭ**

ଜଟଣୀର ସାମୟିକ ସମ୍ବାଦଦାତା ଭାବେ କାର୍ଯ୍ୟ କରୁଥିବାବେଳେ ମୁଁ କିପରି ଭୁବନେଶ୍ୱର ଆସି ପୂର୍ଣ୍ଣ ସମୟ ସାମ୍ବାଦିକତାକୁ ଆପଣେଇଲି ତାହା ଏଠାରେ ଉଲ୍ଲେଖ କରିବାକୁ ଉଚିତ ମନେକରୁଛି । ୧୯୮୦ରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପ୍ରଥମ ମନ୍ତ୍ରିମଣ୍ଡଳରେ ବସନ୍ତ କୁମାର ବିଶ୍ୱାଳ ରାଷ୍ଟ୍ରମନ୍ତ୍ରୀ ଭାବେ ଯୋଗ ଦେଇଥିଲେ ।

ମୁଖ୍ୟମନ୍ତ୍ରୀଙ୍କ ସହ ତାଙ୍କର ଘନିଷ୍ଠତା କାରଣରୁ ସେ ବିଶେଷ ପ୍ରଭାବଶାଳୀ ହୋଇ ନିଜ ବିଭାଗ ସାଙ୍ଗକୁ ଅନ୍ୟ ମନ୍ତ୍ରୀମାନଙ୍କ ବିଭାଗର କାର୍ଯ୍ୟରେ ମଧ୍ୟ କିଛିଟା ହସ୍ତକ୍ଷେପ କରିବାକୁ ପଛାଉନଥିଲେ । ୧୯୮୨ରେ କେତେକ ବିଭାଗକୁ ଅର୍ଥ ବରାଦ ସମ୍ପର୍କିତ ନିଷ୍ପତ୍ତିରେ ବସନ୍ତ ବାବୁଙ୍କ ହସ୍ତକ୍ଷେପକୁ ସେ ସମୟର କିଛି ବରିଷ୍ଠ ମନ୍ତ୍ରୀ ସହ୍ୟ କରୁନଥିଲେ ମଧ୍ୟ ମୁହଁ ଖୋଲି କହିବାର ସାହସ ନଥିଲା । ଘଟଣାକ୍ରମେ ସେ ସମୟର 'ଇଣ୍ଡିଆନ୍ ଏକ୍ସପ୍ରେସ୍' ପ୍ରତିନିଧି ଅରୁଣ ସିହ୍ନାଙ୍କ ଘରକୁ ମୁଁ ଆସିଥିବା ବେଳେ ସେ ବିଭିନ୍ନ ସୂତ୍ରରୁ ଅନୁସନ୍ଧାନ କରି ଏ ସମ୍ପର୍କିତ ସମ୍ବାଦଟି ତାଙ୍କ ଦିଲ୍ଲୀ

କାର୍ଯ୍ୟାଳୟକୁ ପଠାଇବା ପାଇଁ ପ୍ରସ୍ତୁତ ହେଉଥା'ନ୍ତି । ସେ ମୋତେ ତାଙ୍କ ଲେଖାଟି ଦେଖାଇବା ପରେ ମୁଁ ଏଭଳି ଏକ ହଟଚମଟ ଖବରକୁ 'ସମାଜ'ରେ ପ୍ରକାଶ କରାଇବାର ଲୋଭ ଏଡ଼ାଇ ନପାରି ବନ୍ଧୁ ଅରୁଣଙ୍କ ଅନୁମତିକ୍ରମେ ବାବୁଜୀଙ୍କୁ ଫୋନ୍ କଲି । ଅତୀତରେ ଦୀର୍ଘବର୍ଷ ମନ୍ତ୍ରୀପଦରେ ଥିବା ବାବୁଜୀ ମଧ୍ୟ ଏଭଳି ଖବର ଶୁଣି ସ୍ତବ୍ଧ ହୋଇଗଲେ ଓ ଏ ସମ୍ପର୍କରେ ଯାହା ପ୍ରମାଣ ଅଛି, ସେସବୁ ଧରି ତୁରନ୍ତ କଟକରେ ପହଞ୍ଚିବାକୁ ପରାମର୍ଶ ଦେଲେ । ତେବେ ମନ୍ତ୍ରୀମାନଙ୍କ ଆଭ୍ୟନ୍ତରୀଣ ଆଲୋଚନାରେ କଥା କଟାକଟି ଓ ଯୁକ୍ତିତର୍କ ବିଷୟରେ ମୁଁ କ'ଣ ବା ପ୍ରମ ।ଣ ସଂଗ୍ରହ କରିପାରିଥାନ୍ତି ? ଭାଗଲପୁର ଜେଲ୍‌ରେ କଏଦୀମାନଙ୍କ ଆଖିରେ ଏସିଡ୍ ଢାଳି ଅନ୍ଧ କରିବା ଘଟଣା ପ୍ରଥମେ ଲୋକଲୋଚନକୁ ଆଣି ସାରା ଭାରତରେ ଚହଳ ସୃଷ୍ଟି କରିଥିବା ସାମ୍ବାଦିକ ଅରୁଣ ସିହ୍ନାଙ୍କ ବିଭିନ୍ନ ଅନୁସନ୍ଧାନମୂଳକ ରିପୋର୍ଟ ଉପରେ ମୋର ଯଥେଷ୍ଟ ଭରସା ଥିଲା । କିନ୍ତୁ ବାବୁଜୀଙ୍କର ପ୍ରମାଣ ଦରକାର । ମୁଁ ତେଣୁ ଅନ୍ୟ କିଛି ଉପାୟ ନପାଇ ଅରୁଣଙ୍କ ସୁଦୀର୍ଘ ଟେଲିପ୍ରିଣ୍ଟର କପିକୁ ଭାଙ୍ଗିଭୁଙ୍ଗି ବାବୁଜୀଙ୍କୁ ଦେଖାଇବାକୁ କଟକ ବାହାରିଲି ଓ ଏ ବିଷୟରେ ଓଡ଼ିଆ ପାଠକଙ୍କ ପାଇଁ ଆବଶ୍ୟକ ହେଲା ଭଳି ଆଉ କିଛିଟା କଥା ମୋର କିଛି ସୂତ୍ରରୁ ମଧ୍ୟ ସଂଗ୍ରହ କରି ସେସବୁ ସାଙ୍ଗେସାଙ୍ଗେ ଲେଖି ଏକ ବିଶେଷ ରିପୋର୍ଟ ପ୍ରସ୍ତୁତ କଲି । ବାବୁଜୀ ସେଦିନ ମୋ ଲେଖାଟି ଆମୂଳଚୂଳ ପଢ଼ି କେମିତି ଗମ୍ଭୀର ହୋଇଗଲେ ଓ ସେହି ଟେଲିପ୍ରିଣ୍ଟର କପିର ଫଟୋ କ୍ୟାମେରାରେ ଉଠାଇବାର ଆବଶ୍ୟକତା ନଥିଲେ ମଧ୍ୟ ସେଭଳି କରି ତାହା ସାଇତି ରଖିବାକୁ ଅଫିସ୍ ଫଟୋଗ୍ରାଫରଙ୍କୁ ନିର୍ଦ୍ଦେଶ ଦେଲେ । ମୁଁ ଜଟଣୀ ଫେରି ଆସିଲି ଓ ତହିଁ ପରଦିନ ସକାଳେ ସମାଜ'ରେ ସେହି ସମ୍ବାଦଟି ନଦେଖି ବୋଧହୁଏ ବାବୁଜୀ ତାହା ପ୍ରକାଶ କରିବାକୁ ଉଚିତ ମଣିଲେନି ବୋଲି ଧରିନେଲି । ସେ ସମୟରେ ଭୁବନେଶ୍ୱରକୁ ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ଦିଲ୍ଲୀ ସଂସ୍କରଣ ଆସୁଥିଲା ଓ ତା ପୁଣି ଦିନକ ପରେ ପହଞ୍ଚୁଥିଲା । ତେଣୁ ସ୍ୱାଭାବିକ ଭାବେ ଅରୁଣ ସିହ୍ନାଙ୍କ

ଖବର ତହିଁ ପରଦିନ ସକାଳେ ଭୁବନେଶ୍ୱରରେ କେହି ଜାଣିପାରିନଥିଲେ । ଏଣେ ସେହି ସନ୍ଧ୍ୟାରେ କଟକରେ 'ସମ ।ଜ' ପ୍ରକାଶ ପାଇବାର କେଇଘଣ୍ଟା ଭିତରେ ଖବରଟି ଜାଣିବାଶୁଣିବା ମହଲରେ ବେଶ୍ ହଇଚଇ ସୃଷ୍ଟି କରିଥିଲା ଏବଂ ତହିଁ ପରଦିନ ସକାଳେ ଭୁବନେଶ୍ୱରରେ ବିତରଣ ହେବା ପରେ କଂଗ୍ରେସ ରାଜନୀତିରେ ଏହା ରୀତିମତ୍ ଏକ କମ୍ପନ ଖେଳାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ସବୁଠାରୁ ମଜାକଥା ହେଲା ରାଜ୍ୟ ରାଜନୀତିର ଏହି ସମ୍ବାଦ ଜଟଣୀ ଡେଟ୍‌ଲାଇନ୍‌ରେ ପ୍ରକାଶ ପାଇଥିବା କାରଣରୁ କେହିକେହି ମେ । ବିଷୟରେ ଜାଣିବାକୁ ଉତ୍ସୁକତା ପ୍ରକାଶ କରିଥିଲେ । ଏହି ଘଟଣାକୁ ଭୁବନେଶ୍ୱର ବ୍ୟୁରୋର ତତ୍କାଳୀନ ମୁଖ୍ୟ ନାରାୟଣ ରଥ ପ୍ରତିବାଦ କରିଥିଲେ ହେଁ ବାବୁଜୀ ବସ୍ତୁତଃ ମୋ ରିପୋର୍ଟକୁ ସମର୍ଥନ ଜଣାଇଥିଲେ । ଅବସ୍ଥା ଏପରି ହେଲା ଯେ, ଅବସର ପରେ କାର୍ଯ୍ୟ କରୁଥିବା ବରିଷ୍ଠ ସାମ୍ବାଦିକ ନାରାୟଣ ରଥ ଅବ୍ୟାହତି ନେଲେ ଓ ତାଙ୍କ ସ୍ଥାନରେ ପ୍ରଦୋଷ ପଟ୍ଟନାୟକ ଅବସ୍ଥାପିତ ହେଲେ । ଏକଥା 'ସମାଜ'ରୁ ପଢ଼ି ପ୍ରଦୋଷ ପଟ୍ଟନାୟକଙ୍କୁ ତାଙ୍କର ପଦୋନ୍ନତି ପାଇଁ ଅଭିନନ୍ଦନ ଜଣାଇବାବେଳେ ସେ ମୋତେ ବାବୁଜୀ ଡାକୁଛନ୍ତି ବୋଲି କହି ତାଙ୍କ ଘରେ ତୁରନ୍ତ ପହଞ୍ଚିବାକୁ ପରାମର୍ଶ ଦେଲେ । ବାବୁଜୀ ମୋତେ ଡକାଇବାର କାରଣ ସମ୍ପର୍କରେ ସେ ମଧ୍ୟ କିଛି ଜାଣିନଥିଲେ । ନାରାୟଣ ରଥଙ୍କ ବିଦାୟ ପରେ ପ୍ରଦୋଷ ବାବୁଙ୍କ ଘରେ ହିଁ ସେଦିନ 'ସମାଜ'ର ଭୁବନେଶ୍ୱର ଅଫିସ କାର୍ଯ୍ୟ ଆରମ୍ଭ ହୋଇଥିଲା । ମୁଁ ଖରାବେଳେ ତାଙ୍କ ଘରେ ପହଞ୍ଚିବା ମାତ୍ରେ ପ୍ରଦୋଷ ବାବୁ ମୋ ଆସିବା ଖବର ବାବୁଜୀଙ୍କୁ ଟେଲିଫୋନ୍‌ରେ ଜଣାଇଦେଲେ । ବାବୁଜୀ ସାଙ୍ଗେସାଙ୍ଗେ ଭୁବନେଶ୍ୱର ଆସୁଛନ୍ତି ବୋଲି ଜଣାଇ ମୋତେ ଅପେକ୍ଷା କରିବାକୁ କହିଲେ । ପ୍ରାୟ ଘଣ୍ଟାକ ପରେ ବାବୁଜୀ ପହଞ୍ଚି ଭୁବନେଶ୍ୱର ଅଫିସରେ ଆଉ କେହି ନିଯୁକ୍ତ ହେବା ଯାଏଁ ମାସେ ଖଣ୍ଡେ କାମ କଲେ ମୋର କିଛି ଅସୁବିଧା ହେବ କି ବୋଲି ପଚାରିଲେ । ରାଜଧାନୀରେ ମାସକ ପାଇଁ ହେଉ ମଧ୍ୟ 'ସମାଜ'ରେ ରିପୋର୍ଟିଂ

କରିବାର ସୁଯୋଗ ମିଳୁଥିବାରୁ ମୁଁ ପ୍ରସ୍ତାବରେ ସାଙ୍ଗେସାଙ୍ଗେ ରାଜି ହୋଇଗଲି । ବାବୁଜୀ ଅତି ଖୁସିରେ "ଆମେ ଏଥିପାଇଁ ତୁମକୁ ପାରିଶ୍ରମିକ ଦେବୁ" ବୋଲି କହି କଟକ ଫେରିଗଲେ । ତହିଁ ପରଦିନଠାରୁ ଆରମ୍ଭ ହେଲା ଜଟଣୀରୁ ଭୁବନେଶ୍ୱରକୁ ମୋର ଦୈନିକ ଯାତ୍ରା ଏବଂ ଦିନତମାମ ଜଣା ଅଜଣା ସୂତ୍ରରୁ କିଛି ଖବର ସଂଗ୍ରହ ଓ ରିପୋର୍ଟ ପ୍ରସ୍ତୁତି । ଏସବୁ ମୋତେ ଭଲ ଲାଗିଲା ଓ ମୋ କାମକୁ ମଧ୍ୟ ସହକର୍ମୀମାନେ ତଥା ନିଜେ ବାବୁଜୀ ପସନ୍ଦ କରିବା ଦେଖି ମୁଁ ମାତ୍ର ମାସକ ପାଇଁ କାମ କରିବା କଥା ଏବଂ ନିଜ ବ୍ୟବସାୟକୁ ବସ୍ତୁତଃ ଭୁଲିଗଲି । ଆଉ ପଛକୁ ଫେରି ନ ଚାହିଁ ମୁଁ ବିଭିନ୍ନ ଧରଣର ଲେଖା ପାଇଁ ମନୋନିବେଶ କଲି ।

କିଛିଟା ନୂଆ ଢଙ୍ଗରେ ଖବର ଲେଖିବା ଯୋଗୁଁ ପାଠକୀୟ ଆଦୃତି ଓ ସମ୍ପାଦକଙ୍କ ପ୍ରଶଂସା ପାଇ ନିଜର କ୍ଷୁଦ୍ର ଉଦ୍ୟୋଗକୁ ଦୂରେଇ ଦେଇ ସାମ୍ବାଦିକତା ପେଶାକୁ ପୂରାପୂରି ଆପଣେଇ ନେଲି । କ୍ଷୁଦ୍ର ଶିଳ୍ପଟି ରୁଗଣ୍ ହୋଇଯିବା ପରେ ମୁଁ ଋଣ ନେଇଥିବା ବ୍ୟାଙ୍କର ବରିଷ୍ଠ ଅଧିକାରୀଙ୍କ ରିପୋର୍ଟରେ ମଧ୍ୟ ଏହା ପ୍ରତିଫଳିତ ହେଲା । ପରିଶେଷରେ ଘରର କିଛି ଜମି ଓ ମା'ଙ୍କ ସୁନାଗହଣା ବିକି ଋଣ ଭାରରୁ ମୁକ୍ତ ହୋଇ ସାମ୍ବାଦିକତାରେ ଲାଗିପଡ଼ିଲି । କିନ୍ତୁ କିଛି ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ମୋ ନାଁରେ ବେଳେବେଳେ ବାବୁଜୀଙ୍କୁ ଯାଉସିଆଉ ତାହା ମିଛ କଥା କହି ମୋ । ବିରୋଧରେ ଉସ୍କାଇଥାନ୍ତି । ତେବେ ବାବୁଜୀ କ୍ରୋଧାନ୍ୱିତ ଢଙ୍ଗରେ ହେଲେ ମଧ୍ୟ ସିଧାସଳଖ ମୋତେ ପଚାରିବାରେ ଯେତେବେଳେ ସତମିଛ ନିଜେ ଜାଣିଯା'ନ୍ତି, ସେତେବେଳେ ତାଙ୍କର କ୍ଷଣକୋପୀ ଗୁଣ ସତ୍ତ୍ୱେ ମୋ ପ୍ରତି ତାଙ୍କ ସ୍ନେହକୁ ମୁଁ ନୀରବରେ ବହୁବାର ଅନୁଭବ କରିଛି । ସେ ସମୟରେ ଟେଲିଭିଜନ୍ ନଥିଲା ଓ ସାରା ରାଜ୍ୟରେ ସମ୍ବାଦପତ୍ର କହିଲେ ଲୋକେ 'ସମାଜ'କୁ ହିଁ ବୁଝୁଥିଲେ । ମୋର ରିପୋର୍ଟିଂ ହୁଏତ ସେତେବେଳେ କିଛିଟା ନିଆରା ଥିଲା ଏବଂ ମୁଁ ଏସବୁ ପାଇଁ ବାବୁଜୀଙ୍କ ସୁଦୃଷ୍ଟିରେ ଥିବାରୁ

କେହିକେହି ତାହା ସହିନପାରି ବେନାମୀ ଚିଠି ହେଉ ଅବା ଅନ୍ୟକିଛି ମାଧ୍ୟମରେ ମିଛସତ ଯୋଡ଼ି ମୋତେ ଭୁବନେଶ୍ୱରରୁ ହଟାଇବା ପାଇଁ ବହୁ ଚେଷ୍ଟା କରିଥିଲେ ମଧ୍ୟ ଜହୁରୀ ଗୁଣ ଥିବା ବାବୁଜୀ ସେମାନଙ୍କ ଆଶା ପୂରଣ କରିନଥିଲେ ।

ବାବୁଜୀ ଭୁବନେଶ୍ୱର ଅଫିସରେ ଆସି ଆମ ସହ ବିଭିନ୍ନ ବିଷୟରେ କଥା ହୁଅନ୍ତି । ସେତେବେଳେ ଅନେକ ସଭାକୁ ସେ ନିମନ୍ତ୍ରିତ ହୋଇଆସୁଥିବାରୁ ତାଙ୍କ ସହିତ ରିପୋର୍ଟିଂ ପାଇଁ ଆମକୁ ଯିବାକୁ ପଡେ । ସଭାସ୍ଥଳରୁ ଫେରିବା ବାଟରେ ସେ ସଭାରେ ଦେଇଥିବା ଭାଷଣ ଓ ଅନ୍ୟମାନଙ୍କ ପ୍ରତିକ୍ରିୟା ବିଷୟରେ ପଚାରିଥାନ୍ତି । କାଳେ କୋଉ କଥା କହିବା ବେଳେ ଭୁଲ ହୋଇଯିବ, ଏହି ଦୃଷ୍ଟିରୁ ଠିକଣା ଭାବେ ସବୁ କଥା ମନଯୋଗ ଦେଇ ଟିପିବାର ଯେଉଁ ଅଭ୍ୟାସ ବାବୁଜୀଙ୍କ ବେଳୁ ଆରମ୍ଭ ହୋଇଥିଲା, ତାହା ମୋ ସାମ୍ବାଦିକତା ଜୀବନରେ ବେଶ୍ ସହାୟକ ହେଲା । ସଭାସ୍ଥଳରୁ ଅଫିସ ଫେରିବା ବାଟରେ ଗାଡ଼ି ଅଟକାଇ ଡ୍ରାଇଭର୍ ହାତରେ ଆମ ପାଇଁ ଜଳଖିଆ ମଗାଇବା ମଧ୍ୟ ଏକ ଧାରାରେ ପଡ଼ିଯାଇଥିଲା ।

ସମ୍ପର୍କରେ ନିବିଡ଼ତା

ମୋର ଅନ୍ୟାନ୍ୟ ରିପୋର୍ଟ ସହ ଅନେକ ସମୟରେ ରାଜ୍ୟ ରାଜନୀତିକୁ ନେଇ ବିଶ୍ଳେଷଣାତ୍ମକ ଲେଖା ଯୋଗୁଁ ବାବୁଜୀ ଥଟ୍ଟାରେ 'ପଲିଟିସିଆନ୍' ବୋଲି ଡାକିବା ମୋତେ ମଜା ଲାଗୁଥିଲା । ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ମୋତେ ଆପ୍ୟାୟିତ କରିବା ପାଇଁ କାଶୀ ପିଅନଙ୍କୁ ଡାକି ସେ ଉପରେ ପହଞ୍ଚିବା ଯାଏଁ ବାବୁଜୀ କଲିଂ ବେଲ୍ ସ୍ୱିଚ୍‌କୁ ଚିପି ଧରୁଥିଲେ । ଏଭଳି ଅନେକ ଛୋଟ ବଡ ଘଟଣା ତାଙ୍କ ପ୍ରତି ମୋର ଭକ୍ତି ଓ ଆନୁଗତ୍ୟକୁ ବହୁମାତ୍ରାରେ ବଢାଇଦେଇଥିଲା । ଚାକିରିର ପ୍ରଥମ ସାତ ଆଠ ବର୍ଷ ମୁଁ ବୋଧହୁଏ ଦିନକ ପାଇଁ ବି ଛୁଟି ନେଇନଥିଲି । ଏପରିକି ମୋ ଜେଜେଙ୍କ ପରଲୋକ ବେଳେ ପ୍ରଦୋଷ ବାବୁ ପୁଣେ ଯାଇଥିବାରୁ ଅଫିସ କାମରେ

ଯେପରି ଅସୁବିଧା ନହୁଏ, ସେଥିପାଇଁ ତାଙ୍କ ଶେଷକୃତ୍ୟ ସାରି ମୁଁ ଓଦା ଲୁଗାରେ ପୁରୀ ସ୍ୱର୍ଗଦ୍ୱାରରୁ ଭୁବନେଶ୍ୱର ଆସି ମୋ କାମ ଯଥାରୀତି ତୁଲାଇଥିଲି । ଏହାର ପ୍ରତିଦାନ ମୁଁ ବହୁ ଗୁଣରେ ପାଇଥିଲି ଦଶ ଦିନ ପରେ । ଜେଜେଙ୍କ ଏକାଦଶାହରେ ମୋତେ କିଛି ନକହି ବାବୁଜୀ ତତ୍କାଳୀନ ପୁରୀ ପ୍ରତିନିଧି ସ୍ୱର୍ଗତଃ ଶଙ୍କର ତ୍ରିପାଠୀଙ୍କ ଜରିଆରେ କେବଳ ମହାପ୍ରସାଦ ବରାଦ ଦେଇନଥିଲେ, ନିଜେ ଟ୍ରେକର୍‌ରେ କଟକରୁ ପୁରୀ ଯାଇ ସେଠାରୁ ମହାପ୍ରସାଦ ଆଣି ଜଟଣୀରେ ଆମେ ରହୁଥିବା ଘରେ ପହଞ୍ଚିଥିଲେ । ସନ୍ଧ୍ୟାରୁ ବିଳମ୍ବିତ ରାତି ପର୍ଯ୍ୟନ୍ତ ନିଜେ ମୁରବି ଭଳି ବସି ରହି ସବୁ ଦେଖିବା କଥାକୁ ମୁଁ କେବେ ହେଲେ ଜୀବନରେ ଭୁଲି ପାରିବି ନାହିଁ ।ମଜାଦାର ଅନୁଭୂତି

ପାଣିପାଗ ଠାରୁ ଆରମ୍ଭ କରି ରାଜନୀତି, ଅର୍ଥନୀତି, ସାମାଜିକ ବ୍ୟବସ୍ଥା ଓ ଅନ୍ୟାନ୍ୟ ଅନେକ ବିଷୟରେ ବାବୁଜୀଙ୍କ ସହ ଆଲୋଚନା ଏବଂ ଏବେକାର ପରିସ୍ଥିତି ସହ ପୁରୁଣା ଦିନର କଥା ତାଙ୍କ ଠାରୁ ଶୁଣିବାକୁ ବେଶ୍ ଭଲ ଲାଗେ । ବାବୁଜୀ ଏତେ କଥା ପଚାରନ୍ତି ଯେ, ତହିଁର ଉତ୍ତର ଦେବାକୁ ଆମ ପାଖରେ ସେତେ ବେଶି ଖବର ନଥାଏ । ତେଣୁ ମୁଁ ଆଗତୁରା ହୋଇ ତାଙ୍କ ଠାରୁ କିଛି ଶୁଣିବାକୁ ମଉକା ଖୋଜେ । ଥରେ ମୋ । ସହକର୍ମୀଙ୍କ ସହ ବାଜି ପଡ଼ିଲା ଯେ, ମୁଁ ବାବୁଜୀଙ୍କୁ ତାଙ୍କ ବାହାଘର କଥା ପଚାରିବି । ଏହା ସମ୍ଭବ ନୁହେଁ ବୋଲି ମୋ ସହକର୍ମୀ ମନ୍ତବ୍ୟ ଦେବାରେ ମୁଁ କହିଲି, ଅାଜି ହିଁ ସେକଥା ହେବ । ବାବୁଜୀ ଖରାବେଳେ ଆସିଲା ପରେ ମୁଁ ଆଜିକାଲିର ବାହାଘର ଓ ବରଯାତ୍ରୀଙ୍କ କଥାର ଉଦାହରଣ ଦେଇ ପଚାରିଦେଲି, "ବାବୁଜୀ, ଆପଣଙ୍କ ବେଳେ ତ ଏମିତି ସବୁ ହେଉନଥିବ । ଆଛା ! ଆପଣଙ୍କ ବାହାଘରରେ କଣ କେମିତି ହୋଇଥିଲା ?" ବାବୁଜୀ ଆରମ୍ଭ କଲେ ତାଙ୍କ ବାହାଘର କଥା । ବରଯାତ୍ରୀ ବାହାରିବା ପୂର୍ବରୁ ଗାଁ ମନ୍ଦିରରେ କାନିକା ଓ ବୋଦା ମାଂସର ଭୋଜି ଏବଂ ମଠା ଲୁଗା ପିନ୍ଧି ବରବେଶ ହେବା ଆଗରୁ ସେ ସମସ୍ତଙ୍କୁ ନିଜେ କଦଳୀ ପତ୍ରରେ ଖାଦ୍ୟ

ପରଶିଥିବାର କଥା । ତାଙ୍କର ବର୍ଣ୍ଣନା ଏତେ ସୁନ୍ଦର ଥିଲା ଯେ, ସେଥିରୁ ଅଳ୍ପ ସମୟରେ ସେ କାଳର କଥା ଓ ରୀତିନୀତି ଆମ ପାଇଁ ସ୍ପଷ୍ଟ ହୋଇଯାଇଥିଲା । ବାବୁଜୀ ଯିବା ପରେ ମୋ ବାଜି ଜିତିବା କଥା ବହୁ ବନ୍ଧୁଙ୍କ ପାଇଁ ବେଶ୍ ଆମୋଦଦାୟକ ହୋଇଥିଲା ଓ ଏବେବି କେହିକେହି ସେକଥା ମନେ ରଖି ମୋ ସହ ଥଟ୍ଟା କରନ୍ତି ।

## ଅଭିମାନ ମିଳେଇଗଲା

ବରିଷ୍ଠ ପ୍ରଶାସନିକ ଓ ପୁଲିସ ଅଧିକାରୀମାନେ ବାବୁଜୀଙ୍କୁ ସମ୍ମାନ ଜଣାନ୍ତି ଓ ସେ ମଧ୍ୟ ସମସ୍ତଙ୍କୁ ଆଦର କରିଥାନ୍ତି । ରାଜନୈତିକ ଚାପରେ ତୁଙ୍ଗ ପୁଲିସ ମହଲରେ ଅଦଳବଦଳ ସମ୍ପର୍କିତ ମୋର ଏକ ସମ୍ବାଦ ବେଶ୍ ଚର୍ଚ୍ଚିତ ହେବାରେ ସମ୍ଭବତଃ ଉପର ମହଲର ନିର୍ଦ୍ଦେଶରେ ତତ୍କାଳୀନ ପୁଲିସ ଡିଜି ନିଜର ବ୍ୟକ୍ତିଗତ ସମ୍ପର୍କ ଆଧାରରେ ବାବୁଜୀଙ୍କୁ ଦେଖାକରି ସେହି ସମ୍ବାଦର ପ୍ରତିବାଦ ପ୍ରକାଶ ପାଇଁ ଅନୁରୋଧ ଜଣାଇଥିଲେ । ଏହି କଥାକୁ ଭାଙ୍ଗି ନପାରି ବାବୁଜୀ ମୋତେ କିଛି ନପଚାରି ତାଙ୍କ ଅଜାଣତରେ ସେହି ସମ୍ବାଦଟି ପ୍ରକାଶ ପାଇଥିଲା ବୋଲି ନିଜଆଡୁ ତହିଁ ପରଦିନ 'ସମାଜ'ରେ ଲେଖିଦେଲେ । ଏହା ମୋତେ ଆଘାତ ଦେଇଥିଲା ଓ ସମ୍ପାଦକଙ୍କର ମୋ ପ୍ରତି ଆସ୍ଥା ନଥିବା କଥା ଏଥିରୁ ସ୍ପଷ୍ଟ ହୋଇଥିବା ଦର୍ଶାଇ ଇସ୍ତଫା ଦେବାକୁ ଚାହିଁଥିଲି । ମୋ ଚିଠି ପାଇ ସେ ମୋର ବରିଷ୍ଠ ସହକର୍ମୀଙ୍କ ଜରିଆରେ ତାଙ୍କ ସହ ଦେଖା ନହେଲା ଯାଏଁ ଏଭଳି ନକରିବାକୁ ପ୍ରବର୍ତ୍ତାଇ ଥିଲେ । ସେତେବେଳେ ବାବୁଜୀ ପ୍ରାୟ ଅଧିକାଂଶ ଦିନ ଭୁବନେଶ୍ୱର ଅଫିସକୁ ଆସୁଥିଲେ ଅବା ଦିନରେ ୮-୧୦ ଥର ଫୋନ କରୁଥିଲେ ମଧ୍ୟ କାଳେ ମୁଁ ଫୋନ ଧରିବି ଓ ଇସ୍ତଫା ପାଇଁ ଜିଦ୍ କରିବି, ସମ୍ଭବତଃ ସେଥିପାଇଁ ସେ ପ୍ରାୟ ସପ୍ତାହେ ଧରି ଭୁବନେଶ୍ୱର ଆସିଲେ ନାହିଁ ବା ଦିନବେଳା ଫୋନ କଲେ ନାହିଁ । ଏହାପରେ ଏକ ସ୍ମରଣୀୟ ଘଟଣା ଘଟିଲା । ଦିଲ୍ଲୀରୁ ଆସିଥିବା କିଛି ସମାଜସେବୀଙ୍କୁ ଧଉଳି ଶାନ୍ତିସ୍ତୁପ ଦେଖାଇବା ସକାଶେ ଭୁବନେଶ୍ୱର

ଆଣି ସମାଜ ଅଫିସ ବଦଳରେ ଗୋପବନ୍ଧୁ ଖଦି ଭବନ ଅଫିସରେ ପହଞ୍ଚି ମୁଁ ଓ ମୋର ବରିଷ୍ଠ ସହକର୍ମୀଙ୍କୁ ବାବୁଜୀ ସେଠାକୁ ଡକାଇଲେ । ଆମେ ପହଞ୍ଚିବା ମାତ୍ରେ ଦିଲ୍ଲୀ ଅତିଥିଙ୍କୁ ଧଉଳି ପାଦଦେଶରେ କଳିଙ୍ଗ ଯୁଦ୍ଧ ଏବଂ ସମ୍ରାଟ ଅଶୋକଙ୍କ ଚଣ୍ଡାଶୋକରୁ ଧର୍ମାଶୋକ ପାଲଟିବା କଥା କହିବା ସହ ମୋତେ ଦେଖାଇ "ଇଏ ଆମର ଆଉ ଜଣେ ଅଶୋକ ଯିଏ ଆମକୁ ଏବେ ଧଉଳି ନେଇ ଯିବେ" ବୋଲି ମନ୍ତବ୍ୟ ଦେବାରେ ମୁଁ ଟିକେ ମୁରୁକି ହସି ଦେଲି । ମୋ ମୁହଁକୁ ଚାହିଁ ବାବୁଜୀ ଧୀର କଣ୍ଠରେ କହିଲେ "ମୁଁ ଲୋକଙ୍କ କଥା ଭାଙ୍ଗିନପାରି କଣ ଟିକେ ଲେଖି ଦେଲି ବୋଲି ତମେ ଧର୍ମାଶୋକରୁ ଚଣ୍ଡାଶୋକ ହୋଇଯାଉଛ ?" ମୋ ପିଠିରେ ତାଙ୍କର ସ୍ନେହବୋଳା ହାତର ପରଶ ସେହି ମୁହୂର୍ତ୍ତରେ ମୋର ସବୁ ଅଭିମାନକୁ ପାଣି ଫୋଟକା ଭଳି ମିଳାଇ ଦେଇଥିଲା ଆଉ ମୁଁ ସେମାନଙ୍କ ସହ ଧଉଳି ଯାଇଥିଲି ।

**ପରାମର୍ଶ ଓ ଉତ୍ସାହ**

ଆଜିକାଲି ପ୍ରତିଯୋଗିତାର ଦ୍ୱାହି ଦେଇ ଅନେକେ ଶୁଣାକଥାକୁ ଯାଞ୍ଚ ନକରି ତାହା ପରିବେଷଣ କରି ବେଳେବେଳେ ଅଡୁଆରେ ପଡୁଥିବା ବେଳେ ଯେକୌଣସି ଅନୁସନ୍ଧାନମୂଳକ ସମ୍ବାଦ ଛାପିବା ପୂର୍ବରୁ ତହିଁର କଣ ପ୍ରମାଣ ଅଛି, ତାହା ବାବୁଜୀ ନିଜେ ଦେଖିବାକୁ ଚାହୁଁଥିଲେ । ଏବେକାର ଫଟୋକପି ସୁବିଧା ନଥାଇ ମଧ୍ୟ କିଛି ନଥିପତ୍ର ନେଇ ତାଙ୍କୁ ଦେଖାଇଲେ ସେ ତାହାକୁ ଅଫିସରେ ପାରମ୍ପରିକ ଢଙ୍ଗରେ ଫଟୋ ଉଠାଇ ବଡ଼ ବଡ଼ କପି କରି ଫାଇଲରେ ରଖୁଥିଲେ ଓ ଆବଶ୍ୟକ ସ୍ଥଳେ ତହିଁର ବ୍ଲକ୍ ଛପାଯାଉଥିଲା । ବାବୁଜୀଙ୍କର ଏହି ନୀତି ଯୋଗୁଁ ଅନେକ ସମୟରେ ଆମକୁ ଜଣାଥିବା କିଛି ଖବର ଛପାଇବାରେ ଅସୁବିଧା ହେଉଥିଲା ସିନା, କିନ୍ତୁ ପାଖରେ ପ୍ରମାଣ ରଖି ଯାହା ସେ ଛାପିବାକୁ ଅନୁମତି ଦେଉଥିଲେ, ତାହା ଜନମାନସରେ 'ସମାଜ'ର ସତ୍ୟନିଷ୍ଠତାକୁ ଦୃଢ଼ୀଭୂତ କରୁଥିଲା ।

ରାଜଧାନୀରେ ରାଜନୈତିକ ଦଳର ର୍‌ୟାଲି ପାଇଁ ମନ୍ତ୍ରୀ ଓ ବିଧାୟକମାନେ ନିଜ ନିଜ ଅଞ୍ଚଳରୁ ଲୋକଙ୍କୁ ଅଣାଇ ଠୁଳ କରିବା ଏବେ ଏକ ଧାରାରେ ପଡି ଗଲାଣି । ଅଶୀ ଦଶକରେ ଶାସକ ଦଳର ଏକ ବଡ ଧରଣର ର୍‌ୟାଲି ଆୟୋଜନ ଭୁବନେଶ୍ୱରରେ ବେଶ୍ ଚର୍ଚ୍ଚିତ ହୋଇଥିଲା ।

ଅଧିକାଂଶ ମନ୍ତ୍ରୀ ଓ ବିଧାୟକଙ୍କ ବାସଭବନ ହତାରେ ଖନ୍ଦାଶାଳ ଖୋଲିଥିଲା ଓ ଲିଙ୍ଗରାଜ ମନ୍ଦିରଠାରୁ ବିମାନବନ୍ଦର ଯାଏଁ ଅନେକ ସ୍ଥାନରେ ବାହାରୁ ଆସିଥିବା ଲୋକଙ୍କ ଭିଡ ଜମିଥିଲା । ର୍‌ୟାଲିର ଉଦ୍ଦେଶ୍ୟ ସମ୍ପର୍କରେ ସ୍ୱାଭାବିକ ଭାବେ ଅନେକେ ଜାଣିନଥିବା ବେଳେ ମୁଁ ସ୍କୁଟରରେ କେତେକ ସ୍ଥାନକୁ ଯାଇ ଲୋକଙ୍କୁ ଭେଟି 'ଉଡାଜାହାଜ ଦେଖିମି ବୋଲି ଆଇଥେଲି' ଶୀର୍ଷକ ଏକ ବକ୍ସ ନ୍ୟୁଜ 'ସମାଜ'ରେ ପ୍ରକାଶ କରାଇବାରେ ବାବୁଜୀ ତାହା ପଢି ଏତେ ଖୁସି ହୋଇଯାଇଥିଲେ ଯେ ଭୁବନେଶ୍ୱର ଆସି ବାଃ ବାଃ କହି ମୋତେ କୁଣ୍ଢାଇ ପକାଇଥିଲେ ।

କ'ଣ ଘଟିଲା ବା କିଏ କ'ଣ କହିଲେ ସେଥିରେ କେବଳ ରିପୋର୍ଟିଂକୁ ସୀମିତ ନରଖି ଲୋକଙ୍କ ଦୁଃଖ ଦୁର୍ଦ୍ଦଶାର ଚିତ୍ର ଠିକଣା ଭାବେ ଉପସ୍ଥାପନ କରିବାକୁ ବାବୁଜୀ ସଦା ପରାମର୍ଶ ଦେଉଥିଲେ । ଓଡ଼ିଶାରେ ଜଣେ ଆଗଧାଡ଼ିର ସମାଜସେବୀ ଓ ଅତ୍ୟନ୍ତ ଦରଦୀ ତଥା ସମ୍ବେଦନଶୀଳ ମଣିଷ ଭାବେ ରାଧାନାଥ ରଥ ସମସ୍ତଙ୍କ ପାଖରେ ଜଣାଶୁଣାଥିଲେ । ଭାରତ ସ୍କାଉଟ୍ ଓ ଗାଇଡ଼୍‌ସର ଚିଫ୍ କମିଶନର ଭାବେ ପରିଣତ ବୟସରେ ହାଫ୍ ପ୍ୟାଣ୍ଟ ପିନ୍ଧି ବିଭିନ୍ନ କାର୍ଯ୍ୟକ୍ରମରେ ସେ ଯୋଗ ଦେବାର ଦୃଶ୍ୟ ସମସ୍ତଙ୍କୁ ଆକୃଷ୍ଟ କରୁଥିଲା । ସେହିପରି ବନ୍ୟା ହେଉ ଅବା ଅନ୍ୟ କିଛି ଦୁର୍ବିପାକ, ବିପନ୍ନ ଲୋକଙ୍କ ପାଖରେ ସମାଜ ରିଲିଫ୍ ଗାଡ଼ି ଧରି ସେ ଆଗ ପହଞ୍ଚନ୍ତି ।

## ଅଘଟଣ ଓ ନୂଆ ଜୀବନ

୧୯୮୬ ମାର୍ଚ୍ଚ ମାସର କଥା । ଖୋର୍ଦ୍ଧା ଜିଲ୍ଲା ଗଡ଼ମାଣିତ୍ରୀକୁ ଏକ ଉତ୍ସବରେ ଯୋଗ ଦେବା ପାଇଁ ସିପିଆଇ ନେତା ଗଙ୍ଗାଧର ପାଇକରାୟଙ୍କ

ନିମନ୍ତ୍ରଣକ୍ରମେ ବାବୁଜୀ ଅତିଥି ଭାବେ ଗଲାବେଳେ ମୋତେ ସାଙ୍ଗରେ ନେଇ ଯାଇଥିଲେ । ସେ ସମୟରେ ତତ୍କାଳୀନ କଂଗ୍ରେସ ସରକାର ଓ ଦଳର କେହି କେହି 'ସମାଜ'କୁ ଭଲ ଦୃଷ୍ଟିରେ ଦେଖୁନଥିଲେ । ସଭାପରେ ଆମେ ଫେରିବା ବେଳକୁ ଗାଁ ମୁଣ୍ଡ ନିଛାଟିଆ ରାସ୍ତାରେ ଦଳେ ଲୋକ ଠେଙ୍ଗାବାଡ଼ି ଧରି ଆମ ଗାଡ଼ିକୁ ଅଟକାଇ ଆଗ କାଚ ଚୁରମାର୍ କଲା ବେଳକୁ ଆଗ ସିଟ୍‌ରେ ବସିଥିବା ବାବୁଜୀ ଉପସ୍ଥିତ ବୁଦ୍ଧିରେ ନିଜ ମୁଣ୍ଡକୁ ଏକ୍‌ଦମ ତଳୁଆ କରିଦେଲେ ଓ ତାଙ୍କ ଦେଖାଦେଖି ମୁଁ ମଧ୍ୟ ସେମିତି କରିଦେବା ମୁହୂର୍ତ୍ତରେ କଡ଼ପଟୁ ଏକ ହାତବୋମା ଗାଡ଼ିର କାଚ ଭାଙ୍ଗି ମୋ ମୁଣ୍ଡ ଉପର ଦେଇ ଅତିକ୍ରମ କରି ପାଖ ସିଟ୍‌ରେ ପଡ଼ିଲା । ଏଥିରେ ଗଙ୍ଗାଧର ପାଇକରାୟ ଓ ଗାଡ଼ିର ଡ୍ରାଇଭର୍ ବିପିନ୍ ଅଧିକ ଆହତ ହୋଇଥିଲେ ଏବଂ ବାବୁଜୀ ଓ ମୁଁ ସାମାନ୍ୟ ଆହତ ହୋଇଥିଲୁ । ତେବେ ବାବୁଜୀଙ୍କୁ ଦେଖି ମୁଁ ଯଦି ସାଙ୍ଗେସାଙ୍ଗେ ମୋ ମୁଣ୍ଡ ତଳକୁ କରିନଥାନ୍ତି, ତେବେ ସେଇ ହାତବୋମାଟି ମୋ ମୁଣ୍ଡରେ ନିଶ୍ଚୟ ବାଜିଥାନ୍ତା । ତେଣୁ ସେଦିନ ବାବୁଜୀଙ୍କୁ ହିଁ ମୁଁ ମୋର ଜୀବନରକ୍ଷକ ଓ ତାଙ୍କ ଯୋଗୁଁ ମୁଁ ନୂଆ ଜୀବନ ପାଇଲି ବୋଲି ମନେ କରିଥିଲି । ସ୍ୱାଭାବିକ ଭାବେ ରାଧାନାଥ ରଥଙ୍କ ଭଳି ବରିଷ୍ଠ ସମ୍ପାଦକଙ୍କ ଉପରେ ଆକ୍ରମଣ ବିଧାନସଭାଠାରୁ ଆରମ୍ଭ କରି ସାରା ଦେଶରେ ଚହଳ ସୃଷ୍ଟି କରିଥିଲା । ସେହି ଘଟଣାରେ ମୁଁ ହିଁ ଏତଲା ଦାଏର କରିଥିଲି ଓ ପରବର୍ତ୍ତୀ ସମୟରେ ପ୍ରେସ୍ କାଉନସିଲ୍ ବୈଠକକୁ ଯାଇଥିଲି। ଏହି ଘଟଣା ଦେଶର ପ୍ରାୟ ସବୁ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶ ପାଇବାରେ କୁସୁମ ପରଶେ ପଟ ନିସ୍ତର ଭଳି ବାବୁଜୀଙ୍କ ଫଟୋ ସହ ମୋ ଫଟୋ ମଧ୍ୟ ସବୁଠି ପ୍ରକାଶ ପାଇବାରୁ ମୋର ପରିଚିତି କିଛିଟା ବଢ଼ିଯାଇଥିଲା ।

## ଉଚିତ୍ ମାର୍ଗଦର୍ଶନ

୧୯୯୦ ବିଧାନସଭା ନିର୍ବାଚନ ପାଇଁ ତତ୍କାଳୀନ ଜନତା ଦଳର ରାଜ୍ୟ ସଭାପତି ତଥା ଓଡିଶାର ତୁଙ୍ଗ ନେତା ବିଜୁ ପଟ୍ଟନାୟକ ମୋତେ

## ବାବୁଜୀ ଓ 'ସମାଜ'

ଅଚାନକ ଜଟଣୀ ନିର୍ବାଚନ ମଣ୍ଡଳୀରୁ ଟିକଟ ଯାଚି ମନ୍ତ୍ରୀ କରିବେ ବୋଲି କହିଲେ । ସେତେବେଳେ ଜନତା ଦଳର ହାୱା ଯୋଗୁଁ ଟିକଟ ପାଇଲେ ଜିତାପଟ ସୁନିଶ୍ଚିତ ଓ ଏଣେ ମନ୍ତ୍ରୀ କରିବାକୁ ନିଜେ ବିଜୁବାବୁ ଆଗତୁରା ତାଙ୍କଆଡୁ କହିବାରେ ସାଙ୍ଗସାଥୀ, ବନ୍ଧୁବାନ୍ଧବ ଓ କିଛି ଶୁଭେଚ୍ଛୁ ସେହି ସୁଯୋଗକୁ ହାତଛଡା ନକରିବାକୁ ପ୍ରବର୍ତ୍ତାଇଥିଲେ । ଏଣେ ଟିକଟ ମିଳୁଥିବା ଖବର କିଛି ସମ୍ବାଦପତ୍ରରେ ପ୍ରକାଶିତ ହୋଇଯିବାରେ ସକାଳୁ ସକାଳୁ ଆମ ଜଟଣୀ ଘର ସାମ୍ନାରେ ବହୁ ଚିହ୍ନା ଅଚିହ୍ନା ଲୋକଙ୍କ ଭିଡ ଦେଖି ମୁଁ ଉଲ୍ଲସିତ ହେବା ପରିବର୍ତ୍ତେ ବିଚଳିତ ହୋଇପଡିଥିଲି । ସେ ସମୟରେ ଜଟଣୀ ଅଞ୍ଚଳର ରାଜନୈତିକ ବିଶୃଙ୍ଖଳା ପ୍ରେକ୍ଷାପଟ୍ଟରେ ମୋ ଭଳି ଜଣେ ଅଣରାଜନୈତିକ ବ୍ୟକ୍ତି ପାଦ ଥାପିବା ଠିକ୍ ହେବ କି ନା ତାହା ନିର୍ଣ୍ଣୟ କରିବା ମୋ ପାଇଁ କଷ୍ଟକର ଥିଲା । ଏଣେ ବିଜୁବାବୁ ନିଜେ ଡାକି ଦୃଢ ଭାବେ ମୋତେ କହିଥିବାରୁ ତାଙ୍କୁ କେମିତି ମନା କରିବି ସେଥିପାଇଁ ବାଟ ପାଇପାରୁନଥିଲି । ଶେଷରେ ସ୍ଥିର କଲି ବାବୁଜୀଙ୍କୁ ପଚାରିବି ଓ ସେ ଯାହା କହିବେ ସେ କଥା ମାନିବି । ଘରେ ବା ସାଙ୍ଗସାଥୀଙ୍କୁ କିଛି ନକହି ମୁଁ ଚୁପ୍‌ଚାପ୍ ସକାଳୁ ସକାଳୁ କଟକ ଯାଇ ବାବୁଜୀଙ୍କୁ ଭେଟିଲି । ସେତେବେଳକୁ ଅଫିସ୍‌ରେ ମଧ୍ୟ ଏକଥା ଆଉ କାହାକୁ ଅଜଣା ନଥାଏ । କିଛି ସହକର୍ମୀଙ୍କ ଔପଚାରିକ ଅଭିନନ୍ଦନର କୌଣସି ପ୍ରତ୍ୟୁତ୍ତର ନଦେଇ ଉପର ମହଲାକୁ ସିଡି ଚଢି ବାବୁଜୀଙ୍କ ପାଖରେ ପହଞ୍ଚିଗଲି । କ'ଣ କେମିତି ହଠାତ୍ ହେଲା ସେକଥା ତାଙ୍କୁ କହି ମୋ ପାଇଁ ଏହା ଠିକ୍ ହେବ କି ନାହିଁ ବୋଲି ପଚାରିଲି । ସେ ଯାହା କହିବେ ତାହାକୁ ହିଁ ମୁଁ ଗ୍ରହଣ କରିବି ବୋଲି ମୋ ଠାରୁ ଶୁଣି ବାବୁଜୀ କେଇ ମିନିଟ୍ ନୀରବ ରହିଲେ ଓ ତା'ପରେ କହିଲେ, "ଦୁଇଟିଯାକ କ୍ଷେତ୍ରରେ ମୋର ଅଭିଜ୍ଞତା ଦୃଷ୍ଟିରୁ ମୁଁ ତୁମକୁ ସାମ୍ବାଦିକତା ପେଶାରେ ରହିବାକୁ ପରାମର୍ଶ ଦେବି । ତେଣିକି ତୁମର ଇଚ୍ଛା ।" ବାବୁଜୀଙ୍କ ଏହି କଥା ପଦକ ସତେ ଯେମିତି ମୋ ମନରେ ଥିବା ସମସ୍ତ ଆଶା ଆଶଙ୍କା ଓ ଦ୍ୱନ୍ଦ୍ୱକୁ

ନିମିଷକ ମଧ୍ୟରେ ଦୂରେଇ ଦେଲା । ମୁଁ ଦୃଢମନା ହୋଇ ଭୁବନେଶ୍ୱର ଫେରିଲି ଓ ଦିଲ୍ଲୀରେ ଥିବା ବିଜୁବାବୁଙ୍କୁ ମୋ ନିଷ୍ପତ୍ତି ଜଣାଇଦେଇଥିଲି । ଏହା ସତ୍ତ୍ୱେ ଜନତା ଦଳର କେନ୍ଦ୍ରୀୟ ପାର୍ଲାମେଣ୍ଟାରୀ ବୋର୍ଡରୁ ବିଜୁବାବୁ ନେଇଆସିଥିବା ପ୍ରାର୍ଥୀ ତାଲିକାରେ ଜଟଣୀ ସ୍ଥାନଟି ଖାଲିରହିଥିଲା ଓ ସମ୍ପୃକ୍ତ ଆଶାୟୀ ପ୍ରାର୍ଥୀଙ୍କ ନାଁ ପରେ ହାତରେ ଲେଖାଯାଇଥିଲା । ଏକଥା ନିଜେ ମୁଁ ଦେଖିଥିଲେ ମଧ୍ୟ ବାବୁଜୀଙ୍କ ପରାମର୍ଶ ମୋର ମନୋବଳକୁ ଦୃଢ କରିଦେଇଥିବାରୁ କୌଣସି ପଦ ପଦବୀର ଲୋଭ ମୋତେ ଗ୍ରାସ କରିନଥିଲା । ଇତିମଧ୍ୟରେ ଏ ଘଟଣାର ସତେଇଶ ବର୍ଷ ବିତିଯାଇଛି ଓ ମୁଁ ୨୦୦୩ ମସିହାରେ 'ସମାଜ'ରୁ ଇସ୍ତଫା ଦେଇ ବିଭିନ୍ନ ଟିଭି, ରେଡିଓ ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତି ପାଇଁ 'ସଂକଳ୍ପ' ନାମରେ ଏକ ସଂସ୍ଥା ପ୍ରତିଷ୍ଠା କରିଛି । ତେବେ କେହି କେହି ପୁରୁଣା କଥା ମନେ ପକାଇ ରାଜନୀତିରେ ସେତେବେଳେ ଯୋଗଦେଇଥିଲେ ଭଲ ହୋଇଥାନ୍ତା ବୋଲି ଏବେବି ମନ୍ତବ୍ୟ ଦେଇଥାନ୍ତି । ମୁଁ ସେମାନଙ୍କୁ କିଛି କହେ ନାହିଁ ସିନା, କିନ୍ତୁ ଆଜିକାଲିର ରାଜନୈତିକ ବାତାବରଣ ଦେଖି ମୋର ନିଷ୍ପତ୍ତି ଠିକ୍ ଥିଲା ଓ ମୁଁ ଶାନ୍ତିରେ ଅଛି ବୋଲି ମନେକରେ । ଏସବୁର ଶ୍ରେୟ ମୁଁ କେବଳ ବାବୁଜୀଙ୍କୁ ହିଁ ଦେବି କାରଣ ଘରେ ବାହାରେ ସମସ୍ତେ ମୋତେ ନିର୍ବାଚନ ଲଢିବାକୁ ପ୍ରବର୍ତ୍ତାଉଥିବାବେଳେ ସେ ହିଁ ଥିଲେ ଏକମାତ୍ର ବ୍ୟକ୍ତି ଯିଏ ବିପରୀତ ମତ ଦେଇ ସାମ୍ବାଦିକ ଭାବେ ନିଜ କାର୍ଯ୍ୟ ତୁଲାଇବାକୁ କହିଥିଲେ । ଅନେକ ସମୟରେ ମୁଁ ଭାବେ, ବାବୁଜୀଙ୍କ କଥା ବାସ୍ତବିକ ମୋ ପାଇଁ ଆଶୀର୍ବାଦ ଥିଲା । ବୟସ ବିତିଲେ ମଧ୍ୟ ସାମ୍ବାଦିକତା ମାଧ୍ୟମରେ ସାଧାରଣ ଲୋକଙ୍କର କିଛି ଭଲ ପାଇଁ ନିଜ ସାଧ୍ୟମତେ ମୁଁ ଏବେବି ଗୁଣ୍ଡୁଚି ମୂଷା ଭଳି ଯତ୍‌କିଞ୍ଚିତ ପ୍ରୟାସ ଚଳାଇଛି । ଏହା ଯେ ବାବୁଜୀଙ୍କ ମାର୍ଗଦର୍ଶନ ଯୋଗୁଁ ହିଁ ସମ୍ଭବ ହୋଇଛି, ଏକଥା ମୁଁ ବାରମ୍ବାର କହିବି ।

*ସଂକଳ୍ପ ଟିଭି, ଫୋନ୍ -୯୪୩୭୦୬୦୫୬୩*

# ଏକ କଲୋସସ୍‌ର କାହାଣୀ

## ତପନ ମିଶ୍ର

"Show me a contented newspaper editor
and I will show you a bad newspaper"

**– Arther Christiansen**

ସମସାମୟିକ ହିଁ ସମସାମୟିକଙ୍କ ଶ୍ରେଷ୍ଠ ଆକଳକ। ପିଢ଼ି ପାର୍ଥକ୍ୟରେ ସେ ଆକଳନ ନିରୋଳା ହୁଏନା। ସେଠି ଆକଳନ ଅପେକ୍ଷା ସ୍ମୃତି ପ୍ରାଧାନ୍ୟ ଲାଭ କରେ। ମୋ କ୍ଷେତ୍ରରେ ସେ ସମ୍ଭାବନାଟି ଅଧିକ; କାରଣ ବାବୁଜୀ ଓ ମୋ ମଧ୍ୟରେ ବୟସର ବ୍ୟବଧାନ ଥିଲା ୬୩ବର୍ଷ। ଡକ୍ଟର ରାଧାନାଥ ରଥ ବିବିଧ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ। ରାଜନୀତି, ସମାଜସେବା, ସାମ୍ବାଦିକତା, ଖବରକାଗଜ ପରିଚାଳନା, ଗୋଷ୍ଠୀ ନେତୃତ୍ୱ, ଅନୁଷ୍ଠାନ ନିର୍ମାଣ ଓ ଦେଶଗଠନ ଆଦି ବିଭିନ୍ନ କାର୍ଯ୍ୟ ସେ ଏକ ସମୟରେ ଅତ୍ୟନ୍ତ ସୁଚାରୁରୂପେ ସମ୍ପାଦନ କରିପାରୁଥିଲେ। ଅଶୀ ଦଶକରେ ମୁଁ 'ସମାଜ' ଅନୁଷ୍ଠାନରେ ଜଣେ ସହସମ୍ପାଦକ ଭାବେ ଯୋଗଦେବା ପରେ ଡକ୍ଟର ରଥଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲି ଏବଂ ତାଙ୍କୁ ଅତି ନିକଟରୁ ଦେଖିଲି। 'ସମାଜ' କାର୍ଯ୍ୟାଳୟର କର୍ମଚାରୀମାନେ ରାଧାନାଥ ବାବୁଙ୍କୁ ଶ୍ରଦ୍ଧାରେ ବାବୁଜୀ ବୋଲି ସମ୍ବୋଧନ କରୁଥିଲେ। ସେତେବେଳକୁ ବାବୁଜୀ ପ୍ରତ୍ୟକ୍ଷ ରାଜନୀତିରୁ ଅବସର ନେଇ ସାରିଥାନ୍ତି ଓ ନିଜକୁ 'ସମାଜ'ର ସମ୍ପାଦନା,

ପରିଚାଳନା ଏବଂ ସମାଜସେବାରେ ନିୟୋଜିତ କରିଥାନ୍ତି। ତେଣୁ ବାବୁଜୀଙ୍କର ବହୁମୁଖୀ ପ୍ରତିଭାର ଦୁଇଟି ଦିଗ-ସାମ୍ବାଦିକତା ଓ ସମାଜସେବା ସମ୍ପର୍କରେ ମୋର ପ୍ରତ୍ୟକ୍ଷ ଅନୁଭୂତି ରହିଛି। ତା' ମଧ୍ୟରୁ ତାଙ୍କର ସାମ୍ବାଦିକତା ଦିଗ ସହିତ ମୋର ସମ୍ପୃକ୍ତି ଓ ଅନୁଭୂତି ଅଧିକ।

ସେତେବେଳେ ବାବୁଜୀଙ୍କ ପାଖରେ ଯେଉଁ ସମ୍ପାଦନାମଣ୍ଡଳୀ ଥିଲା ସେଥିରେ ମୁଁ ଥିଲି ସର୍ବକନିଷ୍ଠ। ନୂଆ ସାମ୍ବାଦିକ ବା କର୍ମଚାରୀ ଜଣେ ରଖିବା ପୂର୍ବରୁ ବାବୁଜୀ ସେହି ଲୋକ ବିଷୟରେ ବିଭିନ୍ନ ସୂତ୍ରରୁ ଖବର ସଂଗ୍ରହ କରୁଥିଲେ ଏବଂ ସବୁ କଥା ବୁଝିବା ପରେ ତା'ର କାମ ଦେଖି ତାକୁ ଚାକିରିରେ ସ୍ଥାୟୀ କରୁଥିଲେ। ମୋତେ ମଧ୍ୟ ଅନୁରୂପ ପ୍ରକ୍ରିୟା ଦେଇ ଯିବାକୁ ପଡ଼ିଲା ଏବଂ ଅନ୍ୟ ଏକ ଖବରକାଗଜ ସଂସ୍ଥାରେ ତାଲିମ ପାଇ ଦୁଇବର୍ଷ କାମ କରି ଆସିବା ପରେ ମଧ୍ୟ 'ସମାଜ' ବ୍ୟବସ୍ଥାରେ ମୋତେ ସ୍ଥାୟୀ ହେବାକୁ ପ୍ରାୟ ଦୁଇ ବର୍ଷ ସମୟ ଲାଗିଗଲା।

ରାଧାନାଥ ବାବୁ ଜଣେ ରକ୍ଷଣଶୀଳ, ଅନୁଶାସନ ପ୍ରିୟ ବ୍ୟକ୍ତି ଥିଲେ। ସେ ଆପଣା ଢଙ୍ଗରେ 'ସମାଜ' ଚଳାଉଥିଲେ ଏବଂ ଏଥିରେ କାହାର ହସ୍ତକ୍ଷେପର ଅବକାଶ ନ ଥିଲା। ପ୍ରଥମେ ଏ ଶୃଙ୍ଖଳା, ଅନୁଶାସନ ଓ ରକ୍ଷଣଶୀଳତା ମତେ ଭଲ ଲାଗୁ ନ ଥିଲା; କାରଣ ମୁଁ ଏକ ଉଦାରବାଦୀ ବ୍ୟବସ୍ଥାରେ ତାଲିମ ପାଇ ଆସିଥିଲି। ଆମେ ସେଠି କ'ଣ କାମ କରୁଥିଲୁ, କ'ଣ ଲେଖୁଥିଲୁ ତାହା ସମ୍ପାଦକ କ୍ୱଚିତ୍ ଦେଖୁଥିଲେ। 'ସମାଜ'ରେ କିନ୍ତୁ ଏକ ଭିନ୍ନ ବ୍ୟବସ୍ଥା ଥିଲା। ପୂର୍ବାହ୍ନ ୧୦ଟା ବେଳକୁ ବାବୁଜୀ ଆମ ସହ ସମ୍ପାଦକମାନଙ୍କୁ ତାଙ୍କ ଉପରମହଲା (ଆବାସିକ) ଅଫିସକୁ ଡାକିବେ। ପିଟିଆଇ, ୟୁଏନ୍ଆଇ କପି ସହ ଆମେ ଅନୁବାଦ କରିଥିବା ଖବର ଓ ଲେଖିଥିବା ଅନ୍ୟାନ୍ୟ ଖବର ସଯତ୍ନେ ଥୁଆ ହୋଇଥିବ।

ସେଠାରେ ବାବୁଜୀ ଭୁଲଭଟକା ବାହାର କରି ଆମକୁ ତାଗିଦ କରୁଥିଲେ। କେମିତି ଲେଖିବାକୁ ହେବ ଓ ଲେଖାର ଶୈଳୀ କିପରି ହେବ

ତାହା ଜଣାଉଥିଲେ। ତାଙ୍କ ରାଗ ଦେଖି ଆମେ ଅନେକ ସମୟରେ ଛାନିଆଁ ହୋଇପଡୁଥିଲୁ। କିଛି କାଳ ପରେ ଏହା ଏକ ଅଭ୍ୟାସରେ ପରିଣତ ହୋଇଗଲା। ମୁଁ ଜାଣିଲି ବାବୁଜୀଙ୍କ ଏ ରାଗ, ଧମକ ସୁଦ୍ଧୁ ମିଛ; ସେ କେବଳ ଆମକୁ ଆକଟରେ ରଖିବାକୁ ଓ ଶିଖାଇବାକୁ ଏସବୁ କରୁଛନ୍ତି। ହେଲେ ତାଙ୍କର ଏହି କାମରୁ ଆମକୁ ବଡ଼ ଲାଭ ମିଳୁଥିଲା। ଆମେ ଆମ ଦାୟିତ୍ୱ ଏବଂ କର୍ତ୍ତବ୍ୟ ପ୍ରତି ସଚେତନ ରହୁଥିଲୁ ଏବଂ ନୂଆ କିଛି ଶିଖିବାର ସୁଯୋଗ ପାଉଥିଲୁ। ଅଶୀତିପର ବର୍ଷର ଜଣେ ସମ୍ପାଦକ ସକାଳୁ ସାମ୍ବାଦିକମାନଙ୍କ କପି ପଢ଼ି ଭୁଲକୁ ନାଲି ଗାର ମାରି ସେମାନଙ୍କୁ ଦେଖାଇବା ଓ ବୁଝାଇବା ବୋଧହୁଏ ବାବୁଜୀଙ୍କ ଛଡ଼ା ଆଉ କେହି କରି ନ ଥିବେ।

ଏହା ପଛରେ ଖବର କାଗଜ ନିର୍ମାଣ, ସମ୍ବାଦର ମାନ ରକ୍ଷା ଏବଂ ବିଶ୍ୱସନୀୟତା ବଜାୟ ରଖିବାର ଯେ ଏକ ମହତ୍ତର ଉଦ୍ଦେଶ୍ୟ ଥିଲା ତାହା ଆମେ ବୁଝିପାରୁଥିଲୁ। କାଗଜଟିକୁ ଠିକଣା ଦିଗ୍‌ଦର୍ଶନ ଦେବା, ସମ୍ପାଦନାମଣ୍ଡଳୀକୁ ଆବଶ୍ୟକ ବାଟ ଦେଖାଇବାରେ ଜଣେ ସମ୍ପାଦକଙ୍କର ଯେଉଁ ମହତ୍ୱପୂର୍ଣ୍ଣ ଭୂମିକା ରହିଛି ରାଧାନାଥ ବାବୁ ତାହାର ଏକ ବିରଳ ଉଦାହରଣ ଥିଲେ। 'ସମାଜ'ରେ ସଂବାଦ ଲିଖନର ଶୈଳୀ ପାଇଁ 'ଷ୍ଟାଇଲ୍ ବୁକ୍' ନଥିଲେ ମଧ୍ୟ ଏହା ତାଙ୍କ ଦିଗ୍‌ଦର୍ଶନ ଯୋଗୁଁ ଏକ ଅଭ୍ୟାସରେ ପରିଣତ ହୋଇଥିଲା। ୧୯୯୨ କଟକ ମଦମୃତ୍ୟୁ ବିଭୀଷିକା ସମୟର ଏକ କଥା ମନେ ପଡୁଛି। ବାବୁଜୀ ବାର୍ତ୍ତା ସମ୍ପାଦକ ଆନନ୍ଦ କୁମାର ପାଣିଙ୍କୁ ଡାକି କହିଲେ "ଆମ କଟକ ରିପୋର୍ଟରଙ୍କୁ ଅବକାରୀ ବାଲା ପ୍ରଭାବିତ କରିପାରନ୍ତି। ଡେସ୍କରୁ ଲୋକପଠାଇ ସତ ଖବର ପ୍ରକାଶ କରିବାର ବ୍ୟବସ୍ଥା କରନ୍ତୁ। କେତେକ ମନ୍ତ୍ରୀ ଓ ମଦମାଫିଆଙ୍କ ପାଇଁ ଏହି କାଣ୍ଡ ଘଟିଥିବା ଜଣାପଡୁଛି। ଖବର ପ୍ରକାଶରେ ଯେପରି ସାମାନ୍ୟ ତ୍ରୁଟି ନ ହୁଏ ତାହା ନିଶ୍ଚିତ କରନ୍ତୁ।" ସେତେବେଳକୁ ବାବୁଜୀଙ୍କୁ ୯୬ ବର୍ଷ ବୟସ। ତାଙ୍କର ଏ ନିଷ୍ପତ୍ତି ଓ ନିର୍ଦ୍ଦେଶ ଆମକୁ କେବଳ ଉତ୍ସାହିତ କରି ନ ଥିଲା ତାଙ୍କ ଦାୟିତ୍ୱବୋଧ ଓ ପେସାଦାର ମନୋଭାବ ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା।

ପୂର୍ବରୁ କହିଛି ବାବୁଜୀ ରକ୍ଷଣଶୀଳ ଥିଲେ। ସେ ରକ୍ଷଣଶୀଳତା ପରିବର୍ତ୍ତନର ପରିପନ୍ଥୀ ନ ଥିଲା। 'ସମାଜ'ର ମୌଳିକ ମୂଲ୍ୟବୋଧ ରକ୍ଷା ଉପରେ ସେ ଅଧିକ ନଜର ଦେଉଥିଲେ। ସେ ପାରମ୍ପରିକ ଭାବେ ଆଧୁନିକ ହେବାକୁ ଚାହୁଁଥିଲେ ଏବଂ ତରବରିଆଭାବେ କିଛି କରିବାକୁ ଚାହୁଁ ନ ଥିଲେ। ସେତେବେଳେ 'ସମାଜ'ର ଦ୍ୱିତୀୟ ପୃଷ୍ଠାରେ ସମ୍ପାଦକୀୟ ପ୍ରକାଶ ପାଉଥିଲା। ଆଉ ମଧ୍ୟ ଖବରର ହେଡ୍‌ଲାଇନ୍ ସବୁ ଦୀର୍ଘ ଭାବେ ଏକାଧିକ ବାକ୍ୟରେ ଛୋଟବଡ଼ ହୋଇ ଲେଖାଯାଉଥିଲା। ଆମେ ସମ୍ପାଦକୀୟ ପୃଷ୍ଠାକୁ ମଝି ପୃଷ୍ଠାକୁ ନେବା ସହିତ ଛୋଟ ହେଡ୍‌ଲାଇନ୍‌ର ବ୍ୟବହାର ଓ ଲେ ଆଉଟ୍ ପରିବର୍ତ୍ତନ କରିବାକୁ ତାଙ୍କୁ ପ୍ରସ୍ତାବ ଦେଲୁ। ସେ ଏହାକୁ ପ୍ରଥମେ ବିରୋଧ କଲେ। ଆମେ ଅନ୍ୟାନ୍ୟ କାଗଜ ଦେଖାଇଲୁ। ସେ ସବୁ ଦେଖିଲେ ଏବଂ କହିଲେ, "ସେମାନେ କ'ଣ 'ସମାଜ'ର ଆଦର୍ଶ? 'ସମାଜ' ନିଜ ଢାଞ୍ଚାରେ ଚାଲିବ। ସମ୍ପାଦକ କିଏ, ତୁମେ ନା ମୁଁ ?" ଆମେ ନିରବ ରହିଲୁ। ମନୋରମା ଦେବୀ (ତାଙ୍କ କନ୍ୟା) ପୁଣି ଥରେ ତାଙ୍କୁ ବୁଝାଇଲେ; କିନ୍ତୁ କିଛି ଫଳ ମିଳିଲା ନାହିଁ। କିଛି ଦିନ ପରେ ସେ ନିଜଆଡୁ ଆମକୁ ଡାକି କହିଲେ, "ମୁଁ ତୁମ ପ୍ରସ୍ତାବରେ ରାଜି; କିନ୍ତୁ ଏମିତି କରିବ ଯେପରି 'ସମାଜ'ର ନୂଆ ଚେହେରା ଦେଖି ପାଠକେ ବିଭ୍ରାନ୍ତ ନ' ହେବେ?" ତା'ପରେ ସେୟା ହେଲା। କାଳକ୍ରମେ ସେ ଏହି ପରିବର୍ତ୍ତନକୁ ଗ୍ରହଣ କରିନେଲେ। ସମ୍ପାଦକୀୟ ପୃଷ୍ଠାରେ କି ପ୍ରକାର ଲେଖାମାନ ପ୍ରକାଶ ପାଇବ ଓ ସମ୍ପୃକ୍ତ ଲେଖକଙ୍କର ଯୋଗ୍ୟତା ତଥା ପୃଷ୍ଠଭୂମି କ'ଣ ହେବ ତାହା ଦେଖିବାକୁ ସେ ମନୋରମା ଦେବୀଙ୍କୁ ଦାୟିତ୍ୱ ଦେଲେ। ଏହାର କିଛି କାଳ ପରେ ତାଙ୍କୁ ଆନୁଷ୍ଠାନିକ ଭାବେ ସହଯୋଗୀ ସମ୍ପାଦିକା ଭାବେ ଅବସ୍ଥାପିତ କଲେ। ଖବର ଓ ଖବର ସଂଗ୍ରହକୁ ବାବୁଜୀ ସର୍ବଦା ଅଗ୍ରାଧିକାର ଦେଉଥିଲେ। ଆବଶ୍ୟକ ପଡ଼ିଲେ ସେ ଡେସ୍କରୁ ସ୍ୱତନ୍ତ୍ର ଟିମ୍ ପଠାଇ ଖବର ସଂଗ୍ରହର ବ୍ୟବସ୍ଥା କରୁଥିଲେ। ଭୁବନେଶ୍ୱରରେ ଏକ ଭଲ ଟିମ୍ ରଖିଥିଲେ ଏବଂ ଦିଲ୍ଲୀ, ରାଉରକେଲା, ସମ୍ବଲପୁର ଓ ପୁରୀ ଆଦିରେ

ଷ୍ଟାଫ୍ ପ୍ରତିନିଧି ସହ ପ୍ରଥମ କରି ହାଇକୋର୍ଟ ପାଇଁ ଜଣେ ଷ୍ଟାଫ୍ ପ୍ରତିନିଧି ନିଯୁକ୍ତ କରିଥିଲେ। ଜଣେ ଭ୍ରାମ୍ୟମାଣ ପ୍ରତିନିଧି, ଏକାଧିକ ସହକାରୀ ସମ୍ପାଦକ ଓ ସ୍ୱତନ୍ତ୍ର ପ୍ରତିନିଧି ରଖିଥିଲେ। ଉତ୍ତମ ନ୍ୟୁଜ୍ ପ୍ରିଣ୍ଟ୍, କାଳି, ଛାପାଖାନା, କର୍ମଚାରୀ, ସାମ୍ବାଦିକ, ଏଜେଣ୍ଟ ବ୍ୟବସ୍ଥା ସହ ଉତ୍ତମ କାମ କରିବାର ପରିବେଶକୁ ସେ ସର୍ବଦା ଅଗ୍ରାଧିକାର ଦେଉଥିଲେ। ସେଥିପାଇଁ ପଇସା ଖର୍ଚ୍ଚ ପ୍ରତି କୁଣ୍ଠାବୋଧ କରୁ ନ ଥିଲେ। ସେ ବୋଧହୁଏ ଓଡ଼ିଶାର ଏକମାତ୍ର ସମ୍ପାଦକ ଯିଏକି ହାତ କମ୍ପୋଜ ଓ ଟ୍ରେଡଲ ମେସିନରୁ ପିଟିଏସ୍, ଓ୍ୱେବ ଅଫ୍‌ସେଟ୍ ବ୍ୟବସ୍ଥାରେ କାମ କରିଥିଲେ। ମାନହାନୀ ମୋକଦ୍ଦମାକୁ ସେ ଡରୁ ନ ଥିଲେ। କୌଣସି ସାମ୍ବାଦିକଙ୍କ ବିରୋଧରେ ମାମଲା ହେଲେ ସେ ତାଙ୍କୁ ସାହାଯ୍ୟ କରୁଥିଲେ ଓ ମୋକଦ୍ଦମା ଲଢ଼ିବା ପାଇଁ ତା'ପଛରେ ଛିଡ଼ା ହେଉଥିଲେ।

ଜଣେ ସମ୍ପାଦକ ହିସାବରେ ସେ କର୍ମଚାରୀଙ୍କ ସ୍ୱାର୍ଥକୁ ସର୍ବାଗ୍ରେ ରଖିଥିଲେ। ଓଡ଼ିଶାର ଏକମାତ୍ର ସମ୍ବାଦପତ୍ର ଭାବେ ସେ 'ସମାଜ'ରେ ସାମ୍ବାଦିକ, କର୍ମଚାରୀଙ୍କ ପାଇଁ ବେତନ ବୋର୍ଡ ଲାଗୁ କରିବା ସହ, ଉତ୍ତମ ନିଯୁକ୍ତି ସର୍ତ୍ତାବଳୀ, ବୋନସ୍ ଓ ଏକ୍ସଗ୍ରାସିଆ ଆଦିର ବ୍ୟବସ୍ଥା କରିଥିଲେ; ଯାହା ଏ ଯାଏ ଅନ୍ୟ ଖବର କାଗଜ ସଂସ୍ଥା କରିପାରିନାହାନ୍ତି। କର୍ମଚାରୀଙ୍କୁ ପ୍ରାପ୍ୟ ଦେବାରେ ତାଙ୍କ ଉଦାରତାର ତୁଳନା ନାହିଁ। 'ସମାଜ' ଓଡ଼ିଶାର ଏକମାତ୍ର ଖବରକାଗଜ ଯେଉଁଠି ବାବୁଜୀ କର୍ମଚାରୀମାନଙ୍କୁ ୟୁନିୟନ ଗଢ଼ିବାର ସୁଯୋଗ ଦେଇଥିଲେ; କିନ୍ତୁ ତାଙ୍କ ଜୀବଦଶାରେ ଥରୁଟିଏ ମଧ୍ୟ କର୍ମଚାରୀ ସଂଘ କାମ ବନ୍ଦ କିମ୍ବା ଆନ୍ଦୋଳନ କରି ନ ଥିଲା। ଶିଳ୍ପ ସଂସ୍ଥାରେ ଶ୍ରମିକ-ମାଲିକ-ପରିଚାଳକଙ୍କ ଜଟିଳ ସମ୍ପର୍କ ମଧ୍ୟରେ ଏହା ଥିଲା ଏକ ବିରଳ ଘଟଣା ଏବଂ ଏହା ସମ୍ଭବ ହୋଇଥିଲା ତାଙ୍କ ଉଦାରତା ଓ କର୍ମଚାରୀବତ୍ସଳତା ପାଇଁ। ତାଙ୍କ ଜୀବଦଶାରେ ସେ କ୍ୱଚିତ୍ କର୍ମଚାରୀଙ୍କୁ କାର୍ଯ୍ୟରୁ ଅନ୍ତର କିମ୍ବା ହଇରାଣ ହରକତ କରିଛନ୍ତି। ଲୋକ ନିଯୁକ୍ତିରେ ସେ ମାନବସମ୍ବଳ ବିକାଶ ଦିଗ ପ୍ରତି ବେଶ୍ ସଚେତନ ଥିଲେ।

# ବାବୁଜୀ ଓ 'ସମାଜ'

ବାବୁଜୀ ସମାଜର ପ୍ରାୟ ଏକଶହ ବର୍ଷର ଇତିହାସ ମଧ୍ୟରୁ ପ୍ରାୟ ୭୫ବର୍ଷ କାଳ ଏହା ସହିତ ଓତପ୍ରୋତ ଭାବେ ଜଡ଼ିତ ଥିଲେ। ନିଜେ ସାମ୍ବାଦିକ, କମ୍ପୋଜିଟର, ହକର ଭାବେ କାର୍ଯ୍ୟ କରିବା ସହ ପ୍ରେସ୍ ପରିଚାଳକ, ସୁପରିଟେଣ୍ଡେଣ୍ଟ, ସାଧାରଣ ପରିଚାଳକ ଓ ସମ୍ପାଦକ ଭାବେ କାମ କରିବାର ସୌଭାଗ୍ୟ ତାଙ୍କୁ ହିଁ କେବଳ ମିଳିଛି। ଭାରତର ଏପରିକି ବିଶ୍ୱର ସେ ବୋଧହୁଏ ଏକମାତ୍ର ସମ୍ପାଦକ ଯେ କି ଏହି ପଦରେ ଏକାଦିକ୍ରମେ ୪୫ବର୍ଷରୁ ଅଧିକ କାଳ ରହିଛନ୍ତି। ସମାଜର ପୁରୁଣା ଲୋକଙ୍କଠାରୁ ଶୁଣିଛି ଗୋପବନ୍ଧୁଙ୍କ ମାନସ ପୁତ୍ରକୁ ସେ ଲିଙ୍ଗରାଜ ମିଶ୍ରଙ୍କ ନେତୃତ୍ୱରେ ଗଢ଼ିତୋଳିବାକୁ ଲାଗିପଡ଼ିଥିଲେ। ୧୯୫୯ରେ ଲିଙ୍ଗରାଜ ମିଶ୍ରଙ୍କ ମୃତ୍ୟୁ ପରେ ବାବୁଜୀ 'ସମାଜ' ଅନୁଷ୍ଠାନକୁ କଠୋର ଶ୍ରମ କରି ନିଜର ସନ୍ତାନ ଭଳି ଯୋଗ୍ୟ କରି ଛିଡ଼ା କରାଇଥିଲେ। ରାଜନୀତି ଓ ମନ୍ତ୍ରୀପଦରେ ରହି ମଧ୍ୟ ସେ ଏହାକୁ ଭୁଲି ନ ଥିଲେ। ସେ ଲୋକସେବକ ମଣ୍ଡଳର ଆଜୀବନ ସଦସ୍ୟ ଥିଲେ ଏବଂ ଏହାର ବିଭିନ୍ନ ପଦରେ ନିଷ୍ଠାର ସହ କାର୍ଯ୍ୟକରି ଦୀର୍ଘକାଳ ଓଡ଼ିଶା ଶାଖାର ମୁଖ୍ୟ ଏବଂ କେନ୍ଦ୍ରୀୟ ଅଧ୍ୟକ୍ଷ ପଦରେ ରହିଥିଲେ। ତେଣୁ ମଣ୍ଡଳ ପକ୍ଷରୁ କୌଣସି ହସ୍ତକ୍ଷେପର ବିଶେଷ ଅବକାଶ ନ ଥିଲା।

ତାଙ୍କଠାରୁ ଶୁଣିଛୁ, ଲାଲବାହାଦୁର ଶାସ୍ତ୍ରୀଙ୍କ ମୃତ୍ୟୁ ପରେ ଲୋକସେବକ ମଣ୍ଡଳର ସଭାପତି ପଦ ଖାଲି ପଡ଼ିଲା। ଓଡ଼ିଶାରେ ମନ୍ତ୍ରୀପଦ ଓ 'ସମାଜ' ଦାୟିତ୍ୱ ଯୋଗୁଁ ସେ ମଣ୍ଡଳର ରାଷ୍ଟ୍ରୀୟ ଦାୟିତ୍ୱ ନିର୍ବାହ କରିବାକୁ ସମୟ ପାଇଲେ ନାହିଁ। ତେଣୁ ଏହାର ସୁପରିଚାଳନା ପାଇଁ ତାଙ୍କ ଉଦ୍ୟମକ୍ରମେ ବିଶ୍ୱନାଥ ଦାସ ଏହାର ରାଷ୍ଟ୍ରୀୟ ସଭାପତି ହେଲେ। ଏହାର କିଛି କାଳ ପରେ 'ସମାଜ' ପରିଚାଳନା କ୍ଷେତ୍ରରେ କିଛି ବ୍ୟାଘାତ ଘଟିଲା ଏବଂ ପ୍ରକାଶନ ଦୀର୍ଘ ୧୧ଦିନ ବନ୍ଦ ରହିଲା। ଶେଷରେ କର୍ମଚାରୀଙ୍କ ଦୃଢ଼ ସମର୍ଥନ କ୍ରମେ 'ସମାଜ' ପୁନଃ ପ୍ରକାଶିତ ହେଲା ଓ ତତ୍କାଳୀନ ସାଧାରଣ ପରିଚାଳକଙ୍କୁ ଇସ୍ତଫା ଦେବାକୁ ପଡ଼ିଲା। ଏହାପରେ ବାବୁଜୀ ଲୋକସେବକ ମଣ୍ଡଳର ରାଷ୍ଟ୍ରୀୟ ଅଧ୍ୟକ୍ଷ ପଦ ଅଳଙ୍କୃତ କଲେ।

ବାବୁଜୀ ବିଜ୍‌ନେସ୍ ଲିଡର କିମ୍ବା ଶିଳ୍ପପତି ନ ଥିଲେ। ପରିଚାଳନା (ମ୍ୟାନେଜମେଣ୍ଟ) ଡିଗ୍ରୀ ତାଙ୍କର ନ ଥିଲା। ତଥାପି ଜଣେ ବିଜ୍‌ନେସ୍ ଲିଡର ଭାବେ ସେ 'ସମାଜ'ର ନେତୃତ୍ୱ ନେଉଥିଲେ। ସେ ଭଲଭାବେ ଜାଣି ଥିଲେ ଖବରକାଗଜ କାରବାରରେ ଉତ୍‌ଥାନ ପତନ ରହିବ; କିନ୍ତୁ 'ସମାଜ'ର ମୂଲ୍ୟବୋଧ ଓ ସଂସ୍କୃତିକୁ ଏଥିପାଇଁ ସାଲିସ କରିବାକୁ ଯେପରି ନ'ପଡ଼େ ସେଥିପ୍ରତି ସେ ସଦା ଜାଗ୍ରତ ଥିଲେ। ତାଙ୍କ ଗୁରୁ ଗୋପବନ୍ଧୁଙ୍କ ଆଦର୍ଶରୁ 'ସମାଜ' ବିଚ୍ୟୁତ ନ'ହେଉ ଓ ତା'ର ମୌଳିକ ମୂଲ୍ୟବୋଧ ବଜାୟ ରହୁ, ସେଥିପ୍ରତି ସେ ସର୍ବଦା ନଜର ରଖିଥିଲେ। ବାବୁଜୀଙ୍କ ସଂସ୍କୃତିରେ ସାଧୁତା, ସ୍ୱଚ୍ଛତା, ନିରପେକ୍ଷତା ଓ ଉତ୍ତରଦାୟିତ୍ୱ ଅଗ୍ରାଧିକାର ପାଇଥିଲା। 'ସମାଜ' ସହ ସମ୍ପୃକ୍ତ ସବୁ ପକ୍ଷ ଯେପରି ନିଜ ନିଜର ନ୍ୟାୟୋଚିତ ଭାଗ ପାଇବେ ଏବଂ ଅର୍ଥ କାରବାରର ହିସାବ ପତ୍ର ଠିକ୍‌ଠାକ୍ ରହିବ ତାହା ସେ ଯଥାସାଧ୍ୟ ନିଶ୍ଚିତ କରିଥିଲେ। ତାହା ହୋଇ ନ ଥିଲେ ତାଙ୍କ ମୃତ୍ୟୁ ବେଳକୁ 'ସମାଜ' ତା'ର ସ୍ଥାୟୀ ଜମାରେ ୩୨କୋଟିରୁ ଅଧିକ ଟଙ୍କା ରଖି ପାରି ନ ଥାନ୍ତା। ଏହାଛଡ଼ା କଟକ, ଭୁବନେଶ୍ୱର, ବ୍ରହ୍ମପୁର ଓ ସମ୍ବଲପୁରରେ ସେ 'ସମାଜ'ର ଭବିଷ୍ୟତ ସଂପ୍ରସାରଣ ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଜମି କିଣି ରଖିଥିଲେ। କଟକ ଗୋପବନ୍ଧୁ ଭବନ ପରିସରର ନବନିର୍ମାଣ କରାଇଥିଲେ। ଜଣେ ସୁଦକ୍ଷ ଉଦ୍ୟୋଗୀର ଯେଉଁ ବିଚାରଗତ ଉନ୍ମୁକ୍ତତା, ଦୂରଦୃଷ୍ଟି, ସ୍ୱଚ୍ଛତା, ପ୍ରତିଭା, ନ୍ୟାୟପରାୟଣତା, ନିରପେକ୍ଷତା, ଗତିଶୀଳତା, ପରିକଳ୍ପନା ଓ ରୂପାୟନ କଳା ଲୋଡ଼ା ତାହା ସେ ନିଜେ ଆୟତ୍ତ କରିଥିଲେ। ତାଙ୍କୁ ତାଙ୍କ ଅଧ୍ୟବସାୟ ଓ ଏକନିଷ୍ଠ ପ୍ରଚେଷ୍ଟା ତାହା ଶିଖାଇଥିଲା। ଏକଥା ମୁଁ ଏବେ ଅନୁଭବ କରୁଛି।

ରାଧାନାଥ ବାବୁ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଜୀବନ ବିତାଉଥିଲେ। ଏକ ସେକେଣ୍ଡ ହ୍ୟାଣ୍ଡ ଆମ୍ବାସାଡାର ଗାଡ଼ିରେ ତାଙ୍କ 'ସମାଜ' ଜୀବନ ଶେଷ ହୋଇଥିବା ଆମେ ଦେଖିଛୁ। ଖାଇବା, ପିନ୍ଧିବାରେ ଆଡ଼ମ୍ବର ନ ଥିଲା। ଲୋକଙ୍କୁ, କର୍ମଚାରୀଙ୍କୁ ଖୁଆଇବାରେ ସେ ଆନନ୍ଦ ପାଉଥିଲେ।

ନିଜର କିମ୍ବା ନିଜ ପରିବାରର ପ୍ରୌଢ଼ି ସେ କ୍ୱଚିତ୍ ବଖାଣୁଥିଲେ। ତାଙ୍କ ଅତିଥିପରାୟଣତା ଓ ବନ୍ଧୁବତ୍ସଳତା ଚର୍ଚ୍ଚାର ବିଷୟବସ୍ତୁ ଥିଲା। 'ସମାଜ'ର ପ୍ରଭାବ ଓ ତାଙ୍କର ବ୍ୟକ୍ତିତ୍ୱ ଯୋଗୁଁ ସେ ଥିଲେ ରାଜ୍ୟର ପ୍ରମୁଖ ଆକର୍ଷଣ। ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀ ଶପଥ ନେବା ପରେ ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିବା ଅନ୍ତେ କଟକ ଆସି ବାବୁ ରାଧାନାଥଙ୍କ ଆଶୀର୍ବାଦ ନେଉଥିଲେ। ସେଥିପାଇଁ କୁହାଯାଉଥିଲା "ପ୍ରଥମେ ଜଗନ୍ନାଥ, ଦ୍ୱିତୀୟରେ ବାବୁ ରାଧାନାଥ"। ରାଜ୍ୟକୁ ଆସୁଥିବା ବାହାରର ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ପାଇଁ କଟକ ଗୋପବନ୍ଧୁବାଗ ଏକ ତୀର୍ଥ ଓ ରାଧାନାଥ ରଥ ଏକ ପ୍ରକାର ଦିଅଁ ଥିଲେ। ଏକଥା ମୁଁ ଦେଖିଛି। ଜଣେ ସମ୍ପାଦକ, କିପରି ଲୋକସମ୍ପାଦକ, ଲୋକନେତା ଓ କଲ୍‌ଫିଗର ପାଲଟିପାରନ୍ତି ତାହା ତରୁଣ ବୟସରେ ଆମ ଭଳି କେତେକଙ୍କ ପାଇଁ ଏକ ଅବୋଧ ପ୍ରଶ୍ନ ହୋଇ ରହିଯାଇଥିଲା। ବାବୁଜୀ ଆମ ଉପରେ ଯେଉଁ ସଂସ୍କାର ଓ ଅନୁଶାସନର ଛାପ ଛାଡ଼ି ଥିଲେ ତାହା ଆମ ଲେଖା, ଆଚାରବିଚାରକୁ ଏକ ନିର୍ଦ୍ଦିଷ୍ଟ ଢାଞ୍ଚା ଭିତରେ ଧରି ରଖିଥିଲା। ଆମେ ତାଙ୍କ ପ୍ରତିଫଳିତ ଗୌରବରେ ଗୌରବାନ୍ୱିତ ହେଉଥିଲୁ। 'ସମାଜ'ର ସାମ୍ବାଦିକ ଭାବେ ଗର୍ବ ଅନୁଭବ କରୁଥିଲୁ। ବେଳେବେଳେ ଏହା ଯୁବପ୍ରାଣରେ ଅହଙ୍କାର ମଧ୍ୟ ଉଦ୍ରେକ କରୁଥିଲା। ବାବୁଜୀ କିନ୍ତୁ ଏକ ଅଲିଖିତ ନିୟମ ଆମ ଉପରେ ଲଦି ଦେଇଥିଲେ। "କଲମ ପାଇଛ, ତାହାର ଅପବ୍ୟବହାର କରନାହିଁ। ଅନ୍ୟକୁ ସାହାଯ୍ୟ କରି ନ'ପାରିଲେ କାହାର କ୍ଷତି କରନି। ଲେଖାରେ ସଂଯମ, ଶାଳୀନ ଓ ସତ୍ୟାନୁରାଗୀ ହୁଅ। ଲୋକଙ୍କ ଦୁଃଖ, ସମସ୍ୟା, ସରକାରୀ ଉଦାସିନତା, ଦୁର୍ନୀତି ଆଦି ବିଷୟରେ ଲେଖ। କାହାଠାରୁ ଅର୍ଥ, ସୁବିଧା ଓ ଫାଇଦା ନିଅନାହିଁ।" ଏ ସବୁ ଖଡ଼ି ପାଠ ଆମ ଅସ୍ଥିମଜ୍ଜାଗତ ହୋଇଯାଇଥିଲା। ଏଥି ପାଇଁ ସେ ଆର୍ଥିକ ଦୃଷ୍ଟିରୁ ସେତେବେଳର ମାନରେ ଆମକୁ ବେଶ୍ ଭଲରେ ରଖିଥିଲେ। ବୃତ୍ତିକୁ ବ୍ରତ ଭାବେ ଗ୍ରହଣ କରି କର୍ତ୍ତବ୍ୟ କରିବାକୁ ସେ ଇଂଗିତରେ ଅନେକ କିଛି କହୁଥିଲେ ଓ କରୁଥିଲେ। ଖବରକାଗଜର ଭାଷା ଅତ୍ୟନ୍ତ ସରଳ ଓ ସାବଲୀଳ

ହେଉ ଏହା ତାଙ୍କର ପ୍ରଥମ ନିର୍ଦ୍ଦେଶ ଥିଲା। ସେଥିପାଇଁ ମନେ ହେଉଥିଲା ଯେ ସବୁ ଖବର ଯେପରି ଜଣେ ଲୋକ ଲେଖିଛି।

ବାବୁଜୀଙ୍କୁ ଆମେ କେତେଥର ତାଙ୍କର ଆତ୍ମଜୀବନୀ ଲେଖିବାକୁ କହିଛୁ। ସେ ଶୁଣନ୍ତି ଏବଂ ସ୍ମିତହାସ୍ୟ ପ୍ରକାଶ କରି ସବୁବେଳେ କହନ୍ତି, "କ'ଣ ଲେଖିବି, କାହା ବିଷୟରେ ଲେଖିବି ? ଯାହା ଲେଖିବି ଅନେକଙ୍କୁ ତାହା କଷ୍ଟ ଦେଇପାରେ। ତା' ଅପେକ୍ଷା ନ ଲେଖିବା ଭଲ।" ନିଜ ସମ୍ପର୍କରେ ସେ କହନ୍ତି, "ମୁଁ ଜଣେ ସାଧାରଣ ଲୋକ, ସାଧାରଣ ପରିବାରରୁ ଆସିଛି। ବେଶୀ ପାଠ ପଢ଼ିନାହିଁ। ମୋ ଗୁରୁଙ୍କ ଆଦର୍ଶକୁ ପାଥେୟ କରି କାମ କରିଆସିଛି। ଭାଗ୍ୟବଳରେ ଏ ପର୍ଯ୍ୟନ୍ତ ଆସିବାରେ ସକ୍ଷମ ହୋଇଛି। ଯାହା ପାରିଛି ସାଧମତେ କରିଛି।" ଏକଥା କହିବାବେଳେ ସେ ଆତ୍ମବିସ୍ମୃତ ହୋଇଯାଆନ୍ତି। ତାଙ୍କ ସାରା ଶରୀରରେ କୃତଜ୍ଞତା ଓ ବିନୟତାର ଏକ ଭାବ ଛାଇ ହୋଇଯାଏ। ତାଙ୍କ କଣ୍ଠ ବାଷ୍ପାକୁଳ ହୋଇଉଠେ। ସେଇ ଗୁରୁଦେବ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ସେ ବାରମ୍ବାର ପ୍ରଣିପାତ କରନ୍ତି।

ଜଣେ ସମ୍ପାଦକର ଦୁନିଆ କେବଳ ଖବରକାଗଜରେ ସୀମିତ ନ ଥାଏ। ସେ ଲୋକଙ୍କ ସହ ଯୋଡ଼ିହୁଏ, ଗୋଷ୍ଠୀ, ସଂପ୍ରଦାୟ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରଖେ, ସମାଜର ହାଲଚାଲ ବୁଝେ, ସରକାରୀ ବ୍ୟବସ୍ଥାର ସ୍ପନ୍ଦନ ଅନୁଭବ କରେ। ସେଥିରୁ ତା'କୁ ଖବର ମିଳେ, ଲୋକଙ୍କ ମତାମତ ଜାଣିହୁଏ। ସେଥିପାଇଁ ପ୍ରତ୍ୟକ୍ଷ ରାଜନୀତିରୁ ଅବସର ନେବା ପରେ ସେ ଅବିଶ୍ରାନ୍ତଭାବେ ସାରା ରାଜ୍ୟ ବୁଲି ଲୋକଙ୍କ ସହ ମିଶୁଥିଲେ, ବିଭିନ୍ନ ଶିକ୍ଷାନୁଷ୍ଠାନକୁ ଯାଉଥିଲେ। ଅନୁଷ୍ଠାନମାନ ବୁଲି ଦେଖି ସେସବୁର ସ୍ଥିତି ପରଖୁଥିଲେ, ଲୋକଙ୍କ ହାନୀଲାଭ ବୁଝୁଥିଲେ ଓ ଖବର ଛପାଉଥିଲେ। ସାଧାରଣ ଲୋକ, ମୁଖ୍ୟତଃ-ନିରକ୍ଷର, ଦରିଦ୍ର, ଦୁର୍ଦ୍ଦଶାଗ୍ରସ୍ତ, ପୀଡ଼ିତଙ୍କ ସହ ମିଶିବାରେ ସେ ଆନନ୍ଦ ପାଉଥିଲେ। ନିଜର ପଦ ମର୍ଯ୍ୟାଦା ଓ 'ସମାଜ' ରିଲିଫର ଉପଯୋଗ କରି ଯଥାସମ୍ଭବ ସହାୟତା ଦେଉଥିଲେ। ସେମାନଙ୍କ

ସମସ୍ୟା ଉତ୍ଥାପିତ କରୁଥିଲେ ନିଜ ଖବର କାଗଜରେ। ଶାସନ ଓ ବ୍ୟବସ୍ଥାର ତ୍ରୁଟିକୁ ମଧ୍ୟ ସେ ଶାଣିତ ଭାବେ ଉପସ୍ଥାପିତ କରୁଥିଲେ 'ସମାଜ'ରେ। ତାଙ୍କର ଭାଷା ଥିଲା ଅତ୍ୟନ୍ତ ସରଳ ଓ ବର୍ଣ୍ଣନା ଥିଲା ଦୀର୍ଘ। ସେ ସାଧାରଣ ଲୋକର ଭାଷାରେ ଲେଖୁଥିଲେ। ଢଗଢମାଳି ସାହାଯ୍ୟରେ ଲେଖାକୁ ରସାଳ ଓ ଚଟୁଳ କରୁଥିଲେ। ତାଙ୍କ ଲେଖାରେ ସବୁବେଳେ ନିଛକ ସମାଧାନର ସୂତ୍ର ନ ଥିଲା; କିନ୍ତୁ ସେଥିରେ ଛତ୍ରେଛତ୍ରେ ପୂରି ରହିଥିଲା ପରିକଳ୍ପନା ଓ ପ୍ରସ୍ତାବନାର ସନ୍ଦେଶ ଯାହା ପାଠକକୁ ଚିନ୍ତାର ଖୋରାକ ଯୋଗାଉଥିଲା ଓ କର୍ତ୍ତୃପକ୍ଷଙ୍କୁ ମାର୍ଗଦର୍ଶନ ଦେଉଥିଲା। ଏହା ତାଙ୍କୁ ସାର୍ବଜନିକ ବୁଦ୍ଧିଜୀବୀ ବା ପବ୍ଲିକ ଇଣ୍ଟେଲେକଚୁଆଲ ସ୍ତରକୁ ଉନ୍ନୀତ କରିଥିଲା। ସେ କେବଳ 'ସମାଜ'ର ସମ୍ପାଦକ ନ ଥିଲେ; ବରଂ ଏକ ବୃହତ୍ତର ସମାଜର କୁଶଳୀ ସମ୍ପାଦକ ଥିଲେ।

ଶ୍ରଦ୍ଧା ଓ ଶ୍ରମର ସହିତ ବାବୁଜୀ ସମାଜ, ଶାସନ, ଶାସିତ ଓ ସମୁଦାୟଙ୍କ ପାଇଁ ଲେଖୁଥିଲେ। ଅନ୍ୟାୟ ଓ ସରକାରୀ ପ୍ରତାରଣା, ଉଦାସୀନତା ବିରୋଧରେ ସେ ଅନେକ କ୍ଷୁଦ୍ର ଜନଆନ୍ଦୋଳନକୁ ପ୍ରୋତ୍ସାହିତ କରୁଥିଲେ। ବିରୋଧୀ ଦଳ ଦୁର୍ବଳ ଥିବାବେଳେ 'ସମାଜ'କୁ ସେ ବିରୋଧୀଦଳ ଭୂମିକା ନିର୍ବାହରେ ଲଗାଉଥିଲେ। ତାଙ୍କର ଯୁକ୍ତି ଥିଲା ଗଣତନ୍ତ୍ରର ସୁରକ୍ଷା ପାଇଁ ଏହା ଏକ କର୍ତ୍ତବ୍ୟ। ସେହି ନ୍ୟାୟରେ ସେ ଅନେକ ମୁଖ୍ୟମନ୍ତ୍ରୀ ଓ ତୁଙ୍ଗନେତାଙ୍କର ଶତ୍ରୁ ହୋଇଛନ୍ତି। ଅସୁବିଧାରେ ପଡ଼ିଛନ୍ତି; କିନ୍ତୁ ନୀତି ସହ କ୍ୱଚିତ ସାଲିସ କରିଛନ୍ତି। ଏକ ଖବରକାଗଜକୁ ଜନାଦୃତ କରିପାରିଥିବାରୁ ସବୁବେଳେ ଜନତା ତାଙ୍କ ସପକ୍ଷରେ ରହିଛନ୍ତି। ତାଙ୍କ ସାମ୍ବାଦିକତା ଓ ସେବାରେ ଥିଲା ଏକ ବିରଳ ଆବେଗ ଯାହା ତାଙ୍କ ପାଇଁ ଏକ ନିଶା ପାଲଟିଥିଲା।

ବାବୁଜୀ ବହୁତ ପଢ଼ାପଢ଼ି କରୁଥିଲେ। ହିନ୍ଦି ଓ ବଙ୍ଗଳା ସହ ଇଂରାଜୀ ଭାଷାରେ ସେ ବେଶ୍ ନିପୁଣ ଥିଲେ। ତାଙ୍କ ଇଂରାଜୀ ଲେଖା ଓଡ଼ିଆଠାରୁ

ଯଥେଷ୍ଟ ଭଲ ଥିଲା। ବାବୁଜୀଙ୍କର ଗୋଟିଏ ଦୁର୍ବଳତା ହେଲା - ସେ ଅଳ୍ପରେ ନିଜକୁ ପ୍ରକାଶ କରିପାରୁ ନ ଥିଲେ। ସେଥିପାଇଁ ବେଳେବେଳେ ତାଙ୍କ 'ଝିଟିପିଟି କହେ' (ଅଣାକାର ଛଦ୍ମନାମରେ ଲିଖିତ) ସାପ୍ତାହୀକ ସ୍ତମ୍ଭ ଗୋଟେ ପୃଷ୍ଠାର ଆଠ କଲମ ଡେଇଁ ଅନ୍ୟ ପୃଷ୍ଠା ମଣ୍ଡନ କରୁଥିଲା।

ଖୋରଧା ଗଡ଼ମାଣିତ୍ରିରେ ଯେତେବେଳ ତାଙ୍କ ଉପରେ ଆକ୍ରମଣ ହେଲା ସେ ସମ୍ପର୍କରେ ସେ କ୍ରମାଗତ ତିନି ଦିନ 'ସମାଜ'ରେ ଅତି ବଡ଼ ବଡ଼ ଲେଖା ମାନ ଲେଖିଲେ। ଏହାର ଜବାବରେ 'ପ୍ରଜାତନ୍ତ୍ର'ର ପ୍ରତିଷ୍ଠାତା ହରେକୃଷ୍ଣ ମହତାବ ତାଙ୍କ 'ଗାଁ ମଜଲିସ' ସ୍ତମ୍ଭରେ ଛୋଟ ଲେଖାଟିଏ ଲେଖିଥିଲେ। ତାହାର ସାରାଂଶ ଥିଲା - 'ରାଧାନାଥ ବାବୁ ସଙ୍ଗ ଦୋଷରୁ ମାଡ଼ ଖାଇଲେ।' ସେ ଲେଖା ସମ୍ପର୍କରେ ବାବୁଜୀ ଜାଣିବା ପରେ ତା'କୁ ସେ ପଢ଼ିଲେ ଏବଂ କହିଲେ, "ମହତାବ ବାବୁ ଯାହା ଲେଖିଛନ୍ତି ଠିକ୍। ମୋର ଗଡ଼ମାଣିତ୍ରି ସଭାକୁ ଯିବାର ନ ଥିଲା। ମୋତେ ନିମନ୍ତ୍ରଣ କରାଯାଇ ନ ଥିଲା। ଗଙ୍ଗାଧର ପାଇକରାୟଙ୍କ ଅନୁରୋଧରେ ମୁଁ ତାଙ୍କ ସାଙ୍ଗରେ ଯାଇଥିଲି। କଂଗ୍ରେସ ଦଳର ଗୁଣ୍ଡାମାନେ ତାଙ୍କୁ ଆକ୍ରମଣ କଲାବେଳେ ମୋ ଉପରେ ମାଡ଼ ବାଜିଲା।" ଏଭଳି ନିରୋଳା ସ୍ୱୀକାରୋକ୍ତି ଖୁବ୍ କମ୍ ଲୋକ କରିଥାନ୍ତି।

ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥୀ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ତାଙ୍କର ରାଜନୈତିକ ଓ ଆଦର୍ଶଗତ ମତପାର୍ଥକ୍ୟ କେତେକ ସ୍ଥଳରେ ଥିଲା; କିନ୍ତୁ ସେମାନଙ୍କୁ ସମାଲୋଚନା କରିବାବେଳେ ସେମାନଙ୍କ ପାଇଁ ପକ୍ଷ ରଖିବାକୁ ସେ 'ସମାଜ'ରେ ଯାଗା ରଖୁଥିଲେ। ହରେକୃଷ୍ଣ ମହତାବଙ୍କ ମୃତ୍ୟୁ ଖବର ପାଇ ସେ ଭାଙ୍ଗି ପଡ଼ିଥିଲେ। ନିଜର ଅସୁସ୍ଥତା ସତ୍ତ୍ୱେ ସେ ତାଙ୍କ 'ସମାଜ' ବାସଭବନର ଉପର ମହଲା ଝରକା ପାଖରେ ଛିଡ଼ା ହୋଇ ମହତାବଙ୍କ ଶବାଧାରକୁ ଛଳ ଛଳ ଆଖିରେ ଶେଷ ପ୍ରଣତି ଜଣାଇଥିଲେ। ଶବାଧାର ସହିତ ଆସିଥିବା ଲୋକମାନେ ଏ ଦୃଶ୍ୟ ଦେଖି ଅଭିଭୂତ ହୋଇଯାଇଥିଲେ।

## ବାବୁଜୀ ଓ 'ସମାଜ'

ଏହି ଘଟଣାର କିଛି ସମୟ ପରେ ବାବୁଜୀ ଇଂରାଜୀରେ ଡିକ୍‌ଟେସନ୍ ଦେଇଥିବା ଏକ ବଡ଼ ଶୋକାଂଜଳି ଆମ ପାଖକୁ ଆସିଲା। ନିର୍ଦ୍ଦେଶ ଥିଲା ତା'କୁ ଓଡ଼ିଆ କରି ଭଲଭାବେ ଛପାଇବାକୁ। ତା' ସହିତ ବାର୍ତ୍ତା ସମ୍ପାଦକଙ୍କୁ ନିର୍ଦ୍ଦେଶ ଥିଲା 'ଗିଭ୍ ଏ ବିଫିଟିଙ୍ଗ କଭରେଜ ଟୁ ଦି ଗ୍ରେଟ୍ ଲିଡର'। ମହତାବଙ୍କ ପୁତ୍ର ଭର୍ତ୍ତୃହରି ନିଜେ ସ୍ୱୀକାର କରିଥିଲେ, "ବାବାଙ୍କୁ 'ସମାଜ' ଯେଉଁ କଭରେଜ୍ ଦେଲା ତାହା ଆଶାତୀତ ଓ ସବୁଠାରୁ ଭଲ।" ବାବୁଜୀ ତାଙ୍କ ଶୋକାଂଜଳିରେ ଲେଖିଥିବା ଗୋଟିଏ ଧାଡ଼ି ମୋର ଏବେ ମଧ୍ୟ ମନେ ଅଛି, "ସେବା, ତ୍ୟାଗ ଓ ପ୍ରତିଷ୍ଠାରେ ହରେକୃଷ୍ଣ ମହତାବ ମୋ ଠାରୁ ବହୁ ଆଗରେ। ସେ ମୋର ଅଗ୍ରଜ ଓ ନମସ୍ୟ।"

ବାବୁଜୀ ଜଣେ ରକ୍ତମାଂସଧାରୀ ମଣିଷ ଥିଲେ। ସେଥିପାଇଁ ସେ ତ୍ରୁଟିମୁକ୍ତ ନ ଥିଲେ। ତାଙ୍କର ଜିଦ୍‌ଖୋର ନୀତି ଓ ଦୃଢ଼ ଅନୁଶାସନ ପାଇଁ 'ସମାଜ' ଅଫିସ ଭିତରେ ତାଙ୍କୁ କେତେକ 'କୁନି ନେପୋଲିୟନ୍' ବୋଲି କହୁଥିଲେ। ସେ କ୍ଷଣକୋପୀ ଥିଲେ ଏବଂ ହଠାତ୍ ହିତାହୀତଜ୍ଞାନ ଭୁଲି ଗାଳିମନ୍ଦ କରୁଥିଲେ। ସେ ବେଳେବେଳେ ଚୁଗୁଲି ଶୁଣି ଅଯଥାରେ ରାଗୁଥିଲେ; ମାତ୍ର ଘଟଣା ବିଷୟରେ ବୁଝିଗଲାପରେ ନିଆଁରେ ପାଣି ପଡ଼ିଲା ଭଳି ଥମିଯାଉଥିଲେ। ଭୀଷଣ ଅନୁତାପ କରି ପ୍ରକାଶ୍ୟରେ କ୍ଷମା ପ୍ରାର୍ଥନା କରୁଥିଲେ। ତାଙ୍କୁ କିଏ ଭୁଲ ତଥ୍ୟ ଦେଇ ରଗାଇଲା ତା' ନାଁ, ମଧ୍ୟ କହିଦେଉଥିଲେ। ତାଙ୍କର ପସନ୍ଦ, ଅପସନ୍ଦ ଭାବ ତୀବ୍ର ଥିଲା। ଯାହାକୁ ସେ ଭଲ ପାଉ ନ ଥିଲେ ତା'କୁ ସହଜରେ ପାଖ ମଡ଼ାଇ ଦେଉ ନ ଥିଲେ। କିନ୍ତୁ ତାଙ୍କ ଧାରଣା ଓ ମନୋଭାବ ଦୀର୍ଘସ୍ଥାୟୀ ନ ଥିଲା। ବାବୁଜୀଙ୍କୁ କିଛି କାନକୁହା ଓ ଖଳ ପ୍ରକୃତିର ଲୋକ ଘେରିରହୁଥିଲେ। ମିଛ ସତ କହି ଫାଇଦା ମଧ୍ୟ ଉଠାଉଥିଲେ। ସେଥିପାଇଁ ସେ ବେଳେବେଳେ ମହାଅସୁବିଧାରେ ପଡୁଥିଲେ। ଏହା ଜାଣି ମଧ୍ୟ ସେ ସେମାନଙ୍କ ପାଲରୁ ଖସି ପାରୁ ନ ଥିଲେ। ଶେଷ ଆଡ଼କୁ ବାବୁଜୀଙ୍କ ଭିତରେ ଦାନ, ଧର୍ମ,

ସାହାଯ୍ୟ ଆଦି କରିବାର ଭାବ ଅତି ତୀବ୍ର ହୋଇଥିଲା। ଏ ନେଇ ସେ ଏକ ପ୍ରକାର ପାଗଳ ପ୍ରାୟ (ମେଗାଲୋମାନିକ) ହୋଇପଡ଼ିଥିଲେ।

ତାଙ୍କର ସ୍ମରଣ ଶକ୍ତି ଥିଲା ଅତି ପ୍ରଖର। ବିଭିନ୍ନ ତଥ୍ୟ, ପରିସଂଖ୍ୟାନ ତାଙ୍କ ତୁଣ୍ଡରେ ଥିଲା। ସେ ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାରେ ଅନର୍ଗଳ ଭାଷଣ ଦେଇପାରୁଥିଲେ। ତାଙ୍କ ଓଡ଼ିଆ ଭାଷଣ ଆହୁରି ଚମତ୍କାର ଥିଲା। କେତେ ସାଧନା କଲେ ଜଣେ ଏତେ ପ୍ରତିଭାର ଅଧିକାରୀ ହୋଇପାରିବ ତାହା ଅନୁମାନ କରିବା କଷ୍ଟ। ବନ୍ୟା, ବାତ୍ୟା ଓ ଅନ୍ୟ ପ୍ରାକୃତିକ ଦୁର୍ବିପାକ ସମୟରେ ସେ ଦେବଦୂତ ସାଜୁଥିଲେ। ଚିର ମରୁଡ଼ି ପ୍ରପୀଡ଼ିତ କଳାହାଣ୍ଡିର ଖବର ବାରମ୍ବାର 'ସମାଜ'ରେ ପ୍ରକାଶ କରାଇ ଏହାକୁ ସେ ଏକ ଜାତୀୟ ଓ ଆନ୍ତର୍ଜାତିକ ପ୍ରସଙ୍ଗ କରିଥିଲେ। ଏହାର ସୁଫଳ ଅବଶ୍ୟ ଅନେକାଂଶରେ ମିଳିଥିଲା। ଲୋକଙ୍କ ପାଖରେ ପରିଣତ ବୟସରେ ମଧ୍ୟ ପହଞ୍ଚୁଥିଲେ। 'ସମାଜ' ସହ ସେବାକୁ ଏକ ଆନୁଷ୍ଠାନିକ ରୂପ ଦେଇଥିଲେ ବାବୁଜୀ ରିଲିଫ ମାଧ୍ୟମରେ। ଅଗଣିତ ଛାତ୍ର, ରୋଗୀ ଓ ଦୁଃଖୀରଙ୍କିଙ୍କୁ ବୃତ୍ତି, ସହାୟତା ଦେଉଥିଲେ।

ବାବୁଜୀଙ୍କ ଶେଷ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆସିଲା। ସେ କ୍ରମଶଃ ଚିନ୍ତାଗ୍ରସ୍ତ ଓ ଭାରାକ୍ରାନ୍ତ ହୋଇପଡ଼ିଲେ। ସେତେବେଳେ ପୁତ୍ର, ପତ୍ନୀଙ୍କ ମୃତ୍ୟୁ ଭଳି ବ୍ୟକ୍ତିଗତ କ୍ଷତି ତାଙ୍କର ଘଟିଥିଲା। ତାଙ୍କ ଉତ୍ସାହରେ ଭଟ୍ଟା ପଡ଼ିଥିଲା। ଯେଉଁ ଦିନ ତାଙ୍କୁ ଲୋକସେବକ ମଣ୍ଡଳର ସଭାପତି ପଦରୁ ଅବ୍ୟାହତି ଦିଆଯାଇ ନୂଆ ସଭାପତି ଓ 'ସମାଜ' ପରିଚାଳନା ମଣ୍ଡଳୀ ଗଠନ କରାଗଲା ତାହା ତାଙ୍କ ମାନସିକ ସ୍ଥିତିକୁ ଅଧିକ ଦୋହଲାଇ ଦେଇଥିଲା। ନୂଆ ସଭାପତି କୃଷ୍ଣକାନ୍ତଙ୍କ ଦସ୍ତଖତରେ ଏକ ଚିଠି ଆସି ପହଞ୍ଚିଲା। ତା'ର ସାରାଂଶ ଥିଲା "ବୟସାଧିକ୍ୟ ହେତୁ ଶ୍ରୀ ରଥଙ୍କୁ 'ସମାଜ' ପରିଚାଳନାରେ ସହାୟତା କରିବାକୁ ଏକ ବୋର୍ଡ ଗଠନ କରାଯାଇଛି।" ତାହାକୁ 'ସମାଜ'ରେ ଛାପିବାକୁ ନିର୍ଦ୍ଦେଶ ଥିଲା। ବାବୁଜୀ

ସେ ଚିଠି ପଢ଼ି ଭାଙ୍ଗି ପଡ଼ିଥିଲେ। ସେ ବୁଝିପାରିଥିଲେ ଯେ ମଲା ପର୍ଯ୍ୟନ୍ତ ତାଙ୍କୁ 'ସମାଜ'ର ସମ୍ପାଦକ ରହିବାକୁ ଲୋକସେବକ ମଣ୍ଡଳ ଓ ପରିଚାଳନାମଣ୍ଡଳୀ ସୁଯୋଗ ଦେଇଛି; କିନ୍ତୁ ତାଙ୍କର ବାସ୍ତବ କ୍ଷମତା ଆଉ କିଛି ନାହିଁ। ସେ ଖବର 'ସମାଜ'ରେ ପ୍ରକାଶ କରିବାକୁ ରାଧାନାଥ ବାବୁ ନିର୍ଦ୍ଦେଶ ଦେଲେ। ଏହି ନିର୍ଦ୍ଦେଶକୁ ଅମାନ୍ୟ କରିବାକୁ କିଛି ଲୋକ ତାଙ୍କୁ ପରାମର୍ଶ ଦେଇଥିଲେ ହେଁ ତାହାକୁ ସେ ଗ୍ରହଣ କରି ନ ଥିଲେ। ରାଧାନାଥ ବାବୁଙ୍କୁ ସମ୍ଭବତ କାବୁ କରିରଖିବାକୁ ଲୋକସେବକ ମଣ୍ଡଳର ନୂଆ ସଭାପତିଙ୍କ ନିର୍ଦ୍ଦେଶରେ ଆର୍ଥିକ ଅନିୟମିତତା ଅଭିଯୋଗରେ ଦିଲ୍ଲୀରେ ଏତଲା ଦିଆଗଲା ଓ ମାମଲା ଚାଲିଲା। ତାଙ୍କ କନ୍ୟା ବିଚାରୀ ବୃଦ୍ଧ ପିତାଙ୍କ ପକ୍ଷରୁ ଓକିଲ ଦେଇ ଦିଲ୍ଲୀରେ ମାମଲା ଲଢ଼ିଲେ। ବୟସାଧିକ୍ୟ କାରଣରୁ ସେ ଅଦାଲତରେ ହାଜର ହୋଇପାରିବେ ନାହିଁ ଦର୍ଶାଇ ତାରିଖ ପରେ ତାରିଖ ନେଲେ। ବାବୁଜୀ ଆଖି ବୁଜିବା ପରେ ମାମଲାଟି ଆପଣାଛାଏଁ ବନ୍ଦ ହୋଇଗଲା।

ସେ 'ସମାଜ' ଅନୁଷ୍ଠାନକୁ ଇଟା ପରେ ଇଟା ଯୋଡ଼ି କେବଳ ଗଢ଼ି ନ ଥିଲେ; ତାଙ୍କ ଗୁରୁଦତ୍ତ ଅନୁଷ୍ଠାନଟିକୁ ଏକ ଶକ୍ତିଶାଳୀ 'ବ୍ରାଣ୍ଡ'ରେ ପରିଣତ କରିବା ସହ ଏହାକୁ ଘରେ ଘରେ ପରିଚିତ କରାଇ ପାରିଥିଲେ। ଗୋଟିଏ ବ୍ରାଣ୍ଡ ଗଢ଼ିବା ପାଇଁ ଯେଉଁ ଶ୍ରମ, ଶ୍ରଦ୍ଧା, ଅଧ୍ୟବସାୟ, ଦୂରଦୃଷ୍ଟି ଓ ବିଚାର ଲୋଡ଼ା, ତାହା ସେ ହାସଲ କରି ସେଥିରେ ସଫଳ ହୋଇଥିଲେ। ବିଶିଷ୍ଟ ସାହିତ୍ୟିକ ଓ ସାମ୍ବାଦିକ ସୁରେନ୍ଦ୍ର ମହାନ୍ତି ମତେ ଥରେ କହିଥିଲେ "ରାଧାନାଥ ରଥଙ୍କ କୃଚ୍ଛ୍ର ସାଧନାରେ 'ସମାଜ' ଅନୁଷ୍ଠାନ ପୁଷ୍କଳ ହୋଇଛି।" ସେ କୃଚ୍ଛ୍ର ସାଧନା ଓ ତ୍ୟାଗକୁ ଆମେ ସ୍ୱଚକ୍ଷରୁରେ ଦେଖିଛୁ। ସେ ଥିଲେ 'ସମାଜ'ର ବ୍ରାଣ୍ଡ ନିର୍ମାତା ଓ ବ୍ରାଣ୍ଡ ଆମ୍ବାସଡର। ବିଶ୍ୱସନୀୟତା ଏକ ବ୍ରାଣ୍ଡର ସବୁଠୁ ବଡ଼ ଶକ୍ତି। 'ସମାଜ'ର ସେ ବିଶ୍ୱସନୀୟତା ରାଧାନାଥ ବାବୁ ତିଆରି କରିଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏବେ ଖବରର

ସଂଜ୍ଞା ଓ ରୁଚି ବଦଳୁଛି। ଖବରକାଗଜର କଳେବର ମଧ୍ୟ ବଦଳିଛି। ରାଧାନାଥ ବାବୁ ନାହାନ୍ତି, କିନ୍ତୁ ତାଙ୍କ ବ୍ରାଣ୍ଡର ମାନ ଯାଇନାହିଁ। ତା'କୁ କିଏ କେତେକାଳ ବଜାୟ ରଖିବ ସମୟ କହିବ।

ବାବୁଜୀଙ୍କର ମଧ୍ୟ ନିନ୍ଦୁକଙ୍କ ଅଭାବ ନ ଥିଲା। ସେ ମଧ୍ୟ ସମାଲୋଚନାରୁ ଊର୍ଦ୍ଧ୍ୱରେ ନ ଥିଲେ। ନିଜର ପ୍ରତିଷ୍ଠା ପାଇଁ 'ସମାଜ'ର ବ୍ୟବହାର, ଉତ୍ତରାଧିକାରୀ ମନୋନୟନ, 'ସମାଜ'ର ଭବିଷ୍ୟତ ନିର୍ଦ୍ଧାରଣରେ ତାଙ୍କ ବିଫଳତା ନେଇ ସମାଲେଚନା ହୁଏ। ସେ ବିଷୟରେ ତର୍କ ଏଠି ଅନାବଶ୍ୟକ। ଏହା ଏକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ। ଏସବୁ ସତ୍ତ୍ୱେ ଏକ ପ୍ରକାଣ୍ଡ ଶକ୍ତି (କଲୋସସ୍) ପରି ସେ ଓଡ଼ିଶାର ଜନଜୀବନରେ ଦୀର୍ଘକାଳ ଛାଇହୋଇ ରହିଥିଲେ। ତାଙ୍କ ଉଲ୍ଲେଖବିନା ଓଡ଼ିଶା ଇତିହାସ ଅସଂପୂର୍ଣ୍ଣ ରହିବ। 'ସମାଜ'ର ଇତିହାସ ଲେଖାଯାଇପାରିବ ନାହିଁ।

ପ୍ରାକ୍ ସ୍ୱାଧୀନତା କାଳରେ 'ସମାଜ'ର ଲୋକପ୍ରିୟତା ବୃଦ୍ଧି ପଛରେ ମୁଖ୍ୟ କାରଣ ଥିଲା ଏହାର ଜାତୀୟତାବାଦୀ ଆଭିମୁଖ୍ୟ। ଏହା ବ୍ୟକ୍ତିଗତ ମାଲିକାନାରୁ ମୁକ୍ତ ଥିଲା ଏବଂ ନିରପେକ୍ଷ ଖବର ପ୍ରସାରଣ କରିବା ସହ ଆଞ୍ଚଳିକ ବାସ୍ତବତା, ଓଡ଼ିଆ ଅସ୍ମିତାର ସୁରକ୍ଷା ଓ ବିକାଶ ସହିତ ଯୋଡ଼ିହୋଇଯାଇଥିଲା। ଏହା ପଛରେ ସେମିତି କିଛି ନିର୍ଦ୍ଦିଷ୍ଟ ବ୍ୟାବସାୟିକ କାରସାଦି ନ ଥିଲା, ବରଂ ଥିଲା ଏକ ସ୍ୱତଃପ୍ରବୃତ୍ତ ଭାବାବେଗ ଯାହାର ମୂଳଦୁଆ ପକାଇଥିଲେ ଏହାର ସଂସ୍ଥାପକ ଗୋପବନ୍ଧୁ ଦାସ। ଅତଏବ ଯେଉଁ ଗୁଳାରେ 'ସମାଜ'ର ଚକ ଗଡ଼ିବା ଆରମ୍ଭ କରିଥିଲା, ରାଧାନାଥ ବାବୁ ତାଙ୍କ ଦୀର୍ଘ ନେତୃତ୍ୱ ସମୟରେ ତାହାର ଗତିକୁ ତ୍ୱରାନ୍ୱିତ କରିଥିଲେ ସିନା, ଗୁଳା ବଦଳାଇ ନ ଥିଲେ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଯେତେବେଳେ ରାଷ୍ଟ୍ର ନିର୍ମାଣର ଯୁଗ ଆରମ୍ଭ ହେଲା 'ସମାଜ' ସେଥିରେ ଆଗରେ ରହିଲା। ଶାସକ ଓ ଶାସନକୁ ବାଟ ଦେଖାଇବାକୁ ଶାଣିତ ସମାଲୋଚନା କଲା। ନିଜର

ଗୁରୁଦାୟିତ୍ୱ ନିଭାଇ ଏହା ମଧ୍ୟ ଗଣତନ୍ତ୍ରର ଏକ ସୁଦକ୍ଷ ସହଯୋଗୀ ଅଙ୍ଗ ପାଲଟି ଗଲା। ଲୋକସ୍ୱାର୍ଥର ଜାଗ୍ରତ ପ୍ରହରି ଭାବେ ନିରନ୍ତର କାମ କରିବା ପରେ ଏହା ଉପରେ ଜନତାର ପ୍ରଗାଢ଼ ଆସ୍ଥା ଓ ବିଶ୍ୱାସ ଗଢ଼ିଉଠିଲା ଆଉ 'ସମାଜ'ର ବ୍ରାଣ୍ଡ ମଜବୁତ ହୋଇଗଲା।

ସ୍ୱାଧୀନୋତ୍ତର କାଳର ସମାଜବାଦୀ ଶାସନ ଢାଞ୍ଚା ଭାରତର ସମ୍ବାଦପତ୍ର ଜଗତର ବିକାଶ ପାଇଁ ବିଶେଷ ସହାୟକ ଥିଲା। 'ସମାଜ' ସେଇ ଅଧ୍ୟାୟର ଏକ ହିତାଧିକାରୀ ଥିଲା କହିଲେ ଭୁଲ ହେବ ନାହିଁ। ଅନେକ ପ୍ରଭାବଶାଳୀ ପ୍ରମୁଖ ଆଞ୍ଚଳିକ ଖବର କାଗଜ ଭଳି ଏହାକୁ ପ୍ରଚୁର ସରକାରୀ ଓ ବେସରକାରୀ ବିଜ୍ଞାପନ, ରିଆତି ମୂଲ୍ୟର ନ୍ୟୁଜ୍ ପ୍ରିଣ୍ଟ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ମିଳିଲା। ରାଜ୍ୟର ଏକ ନମ୍ବର ତଥା ଲୋକପ୍ରିୟ ଖବରକାଗଜ ହୋଇଥିବାରୁ 'ସମାଜ' ଏହା ଦ୍ୱାରା ସମୃଦ୍ଧ ହେବା ସହିତ ତାହାର ପ୍ରସାରଣ ଓ ବ୍ୟବସାୟ ବଢ଼ାଇବାରେ ସଫଳ ହୋଇଥିଲା।

ସମ୍ପୂର୍ଣ୍ଣ ନିରପେକ୍ଷ ହେବା କୌଣସି ଖବରକାଗଜ ପକ୍ଷେ ସମ୍ଭବ ନୁହେଁ। ନିରପେକ୍ଷତା ଏକ ଆପେକ୍ଷିକ ଶବ୍ଦ। ସେ ଦୃଷ୍ଟିରୁ 'ସମାଜ' ମୋଟାମୋଟି ନିରପେକ୍ଷ ଥିଲା; କିନ୍ତୁ ରାଜନୀତିରୁ ସମ୍ପୂର୍ଣ୍ଣ ଉର୍ଦ୍ଧ୍ୱରେ ନ ଥିଲା। ରାଧାନାଥ ବାବୁ ପ୍ରତ୍ୟକ୍ଷ ଓ ପରୋକ୍ଷ ରାଜନୀତିରେ ଦୀର୍ଘ କାଳ ଥିଲେ। ସେ ପ୍ରଥମେ କଂଗ୍ରେସ ଓ ପରେ ନିର୍ଦ୍ଦଳୀୟ ଭାବେ ଆଠଗଡ଼ ବିଧାନସଭା ଆସନରୁ ବିଧାନସଭାକୁ ବହୁବାର ନିର୍ବାଚିତ ହୋଇଥିଲେ। ମନ୍ତ୍ରିପରିଷଦର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଥିଲେ। ନିର୍ବାଚନ ପ୍ରଚାର ସମୟରେ 'ସମାଜ'କୁ ସେ ବ୍ୟବହାର କରୁଥିଲେ ବୋଲି ମଧ୍ୟ ଅଭିଯୋଗ ହେଉଥିଲା। ମାତ୍ର ସେତେବେଳର ରାଜନୀତିକ ବାସ୍ତବତା ଥିଲା ଭିନ୍ନ। ଖବରକାଗଜର ସମ୍ପାଦକ, ମାଲିକମାନେ ରାଜନୀତି କରୁଥିଲେ ହେଁ କାଗଜକୁ ସେମାନେ ସମ୍ପୂର୍ଣ୍ଣ ଭାବେ ଗୋଟିଏ ନୀତି, ଆଦର୍ଶ ବା ଦଳ ପାଖରେ ବନ୍ଧା ପକାଉ ନ ଥିଲେ। ବାବୁଜୀ ମନ୍ତ୍ରୀ ହେବା ପରେ 'ସମାଜ'ର

ସମ୍ପାଦକଙ୍କ ପଦରୁ ଇସ୍ତଫା ଦେଲେ ଏବଂ ଶ୍ରୀହର୍ଷ ମିଶ୍ର ପ୍ରାୟ ୧୫ ବର୍ଷ କାଳ ଅସ୍ଥାୟୀ ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ। ସହକର୍ମୀଙ୍କଠାରୁ ଶୁଣିଛି ମାତ୍ର ଆଉ ମଧ୍ୟ ବାବୁଜୀ 'ସମାଜ'ର ସମ୍ପାଦନା ଓ ପରିଚାଳନାର ଟିକିନିଖି ଖବର ବୁଝୁଥିଲେ। 'ସମାଜ' ଲୋକ ଓ ପାଠକଙ୍କୁ ଉତ୍ତରଦାୟୀ ହୋଇଥିବାରୁ ତାହାର ନିରପେକ୍ଷ ସମ୍ପାଦକୀୟ ନୀତିରେ ସେ କ୍ୱଚିତ୍ ସାଲିସ କରୁଥିଲେ। ଏହା ଏକ ସହଜ କାମ ନ ଥିଲେ। ଏକ ଶକ୍ତିଶାଳୀ ଗଣମାଧ୍ୟମର ମୁଖ୍ୟ ନିୟନ୍ତକ ପ୍ରତ୍ୟକ୍ଷ ରାଜନୀତିରେ ରହିବେ ଓ ତାଙ୍କ କାଗଜ ପାଠକୀୟ ଆସ୍ଥା ଓ ବିଶ୍ୱାସ ବଜାୟ ରଖିବ ଏହି ବିରଳ ଭାରସାମ୍ୟ ରକ୍ଷା ସହଜ ମନେ ହେଉ ନ ଥିଲେ ମଧ୍ୟ ରଥେ ଆପଣେ ତାହା କରି ଦେଖାଇଥିଲେ।

ସବୁ ଦିନ ସମାନ ଯାଏ ନାହିଁ। ୧୯୯୦ ଦଶକର ଶେଷ ବେଳକୁ ବଜାରରେ ଏକ ବଡ଼ ପରିବର୍ତ୍ତନ ଆସିଲା। ଆର୍ଥିକ ଉଦାରୀକରଣ ଓ ବିଶ୍ୱାୟନର ପ୍ରଭାବରେ ବଜାର ବ୍ୟବସ୍ଥା ସବୁ ତାସ୍ ଘର ପରି ଭୁଶୁଡ଼ିବାକୁ ଲାଗିଲା। ସମ୍ବାଦପତ୍ର ଜଗତରେ ମଧ୍ୟ ଆଧୁନିକୀକରଣ ଓ ନୂଆ ବ୍ୟାବସାୟିକ ସଂସ୍କୃତି ପ୍ରବେଶ କଲା। ଲାଭଦାୟକ ବେସରକାରୀ ବିଜ୍ଞାପନ ପରିମାଣ କମିଲା। ଉଦାରବାଦୀ ଅର୍ଥନୈତିକ ବ୍ୟବସ୍ଥାରେ ବଜାର ଶକ୍ତି (ମାର୍କେଟ ଫୋର୍ସ) ସବୁ କଥାକୁ ନିୟନ୍ତ୍ରଣ କଲା। ଟାଇମସ୍ ଅଫ୍ ଇଣ୍ଡିଆରୁ ପ୍ରଥମେ ଆରମ୍ଭ ହେଲା ଏହାର ପରୀକ୍ଷା ନିରୀକ୍ଷା। ସେଇ ପରୀକ୍ଷାର ପ୍ରଥମ ଶିକାର ହେଲେ 'ସମ୍ପାଦକ'। ଖବର କାଗଜ ଏକ ପ୍ରୋଡକ୍ଟ ବା ପଦାର୍ଥ ଭାବେ ବିବେଚିତ ହେଲା। ସମ୍ପାଦକ ଓ ସମ୍ପାଦନା ମଣ୍ଡଳୀର ପ୍ରଭୁତ୍ୱକୁ ନ୍ୟୁନ କରାଯାଇ ଅଧିକ ଲାଭ ଅର୍ଜନ ଆଶାରେ ଏହାକୁ ପରିଚାଳକ ସର୍ବସ୍ୱ କରାଗଲା। ଏହି ପ୍ରକ୍ରିୟରେ ସମ୍ପାଦକଙ୍କ କର୍ତ୍ତୃତ୍ୱ କେବଳ ଉଚ୍ଛେଦ ହେଲା ନାହିଁ, ମାଲିକ ଓ ମ୍ୟାନେଜର ସର୍ବସ୍ୱ ନୂଆ ବ୍ୟବସ୍ଥାଟିଏ ଲଦି ଦିଆଗଲା। ବେପାରର ନୂଆ ସୂତ୍ର ହେଲା, 'ଯିଏ ଅର୍ଥ ରୋଜଗାରର ବାଟ କରିବ ଏବଂ ଅଧିକ ଆୟ ଦେଖାଇବ ସେ ହେବ 'ପେପରର ବସ୍'। ଏହି

ପ୍ରକ୍ରିୟାରେ ଅନେକ ତୁଙ୍ଗ, ପ୍ରତିଷ୍ଠିତ ସମ୍ପାଦକ ଆପଣା ମାନ ଦୃଷ୍ଟିରୁ ବୃତ୍ତିରୁ ଦୂରେଇ ଗଲେ। ଜୋତା, ଛତା, ବିସ୍କୁଟ କମ୍ପାନୀର ମ୍ୟାନେଜରମାନେ ଖବରକାଗଜର ପରିଚାଳକ, ସିଇଓ, ସର୍ବେସର୍ବା ସାଜିଲେ। ପରିଚାଳନା ବିଦ୍ୟାର ଅହେତୁକ ସ୍ତୁତି କରାଗଲା ଏବଂ ମ୍ୟାନେଜମେଣ୍ଟ ଡିଗ୍ରୀଧାରୀ ଖବର କାଗଜର ଭାଗ୍ୟ ନିର୍ଦ୍ଧାରଣ କଲେ। ସରସ୍ୱତୀଙ୍କୁ ଆଡ଼ ଆଖି କରି ଖବରକାଗଜରେ ଲକ୍ଷ୍ମୀଙ୍କ ଆବାହନ ଜୋରଦାର ଚାଲିଲା।

ନୂଆ ମନ୍ତ୍ର ହେଲା 'ଟୁ ମନିଟାଇଜ ଏଭ୍ରି ଇଞ୍ଚ' ଅର୍ଥାତ୍ ଖବର କାଗଜର ପ୍ରତ୍ୟେକଟି ଇଞ୍ଚରୁ କିପରି ଆୟ ମିଳିବ ସେ ଫିକର ବାହାର କରିବା। ଏହି ପ୍ରକ୍ରିୟାରେ ଖବରର ସଂଜ୍ଞା, ରୂପ, ଭେକ, ନିୟମ ସବୁ ବଦଳିଗଲା। ଖବରକାଗଜର କଳେବର ମଧ୍ୟ ନୂଆ ରୂପ ଧାରଣ କଲା। ଏ ନୂଆ 'ବ୍ୟାଧି' ଟି କେବଳ ଇଂରାଜୀ ପ୍ରିଣ୍ଟ ମିଡିଆରେ ସୀମିତ ରହିଲା ନାହିଁ। କ୍ରମଶଃ ହିନ୍ଦୀ ଓ ଆଞ୍ଚଳିକ ଖବରକାଗଜକୁ ସଂକ୍ରମିତ କଲା। କମ୍ କାଗଜ ଛପେଇ ଏବିସିରୁ ଅଧିକ ପ୍ରସାରଣର ସାର୍ଟିଫିକେଟ୍ ହାତେଇବା ପାଇଁ ରୀତିମତ ମାଲିକମାନେ କଳବଳ କଉଶଳ ପ୍ରୟୋଗ କଲେ। ଫଳରେ ଉତ୍କୋଚ ଦେଇ ଅନେକ ଅଜ୍ଞାତ ଖବର କାଗଜ ରାତାରାତି ସରକାରୀ ଭାବେ ସର୍ବାଧିକ ପ୍ରସାରଣର ମାନ୍ୟତା ପ୍ରମାଣପତ୍ର ପାଇ ଅଧିକରୁ ଅଧିକ ସରକାରୀ / ବେସରକାରୀ ବିଜ୍ଞାପନ ହାତେଇଲେ। ଯେଉଁମାନେ ଏହା କରି ନ ପାରିଲେ ବା ଦୁଇ ନମ୍ବର ରାସ୍ତା ଆପଣେଇବାରେ ବିଫଳ ହେଲେ ସେମାନେ ପଛରେ ପଡ଼ିଗଲେ। 'ସମାଜ' ଏ ନୂଆ ବ୍ୟବସ୍ଥାକୁ ଆପଣେଇଲା ନୂଆ ପରିଚାଳନା ମଣ୍ଡଳୀର ନିଷ୍ପତ୍ତିରେ। ପାରମ୍ପରିକତା ଛାଡ଼ି ନୂଆ କିଛି କରିବାର ଉଦ୍ୟମ ଆରମ୍ଭ ହୋଇଥିଲା।

ଏହି ପରିବର୍ତ୍ତନକୁ ବୁଝିବା ଓ ଏହାର ମୁକାବିଲା କରିବାକୁ ସେତେବେଳକୁ ରାଧାନାଥବାବୁଙ୍କର ବୟସ ଓ ସାମର୍ଥ୍ୟ ନ ଥିଲା। ପରିବେଶ ମଧ୍ୟ ଯଥେଷ୍ଟ ବଦଳି ଯାଇଥିଲା। ସେତେବେଳକୁ ବାବୁଜୀଙ୍କ କ୍ଷମତା ସଂକୁଚିତ କରି ଲୋକସେବକ ମଣ୍ଡଳ 'ସମାଜ' ପାଇଁ ଏକ ପରାମର୍ଶଦାତା

କମିଟି ଗଠନ କରିଥାଏ। ନୂଆ ସଭାପତି କୃଷ୍ଣକାନ୍ତଙ୍କ ନେତୃତ୍ୱରେ ଲୋକସେବକମଣ୍ଡଳ ଓ 'ସମାଜ'ର ଏକ 'ପେରିସ୍ତ୍ରୋଇକା' ଓ 'ଗ୍ଲାସ୍‌ନସ୍ତ' (ପୁନର୍ଗଠନ ଓ ଉନ୍ମୁକ୍ତତା) ଆରମ୍ଭ ହୋଇଯାଇଥାଏ। ଉଭୟ 'ସମାଜ' ଓ ଲୋକସେବକମଣ୍ଡଳର ମୁଖ୍ୟ ପଦରେ ଦୀର୍ଘ କାଳ ରହିବା ଫଳରେ ବାବୁଜୀ ତାଙ୍କର କିଛି ସହକର୍ମୀଙ୍କ ଈର୍ଷା ଓ କ୍ରୋଧର ସମ୍ମୁଖୀନ ହୋଇ କ୍ଷମତାଶୂନ୍ୟ ହୋଇସାରିଥାନ୍ତି। ସବୁ ଅନୁଷ୍ଠାନରେ ରାଜନୀତି ଓ କ୍ଷମତାକନ୍ଦଳ ଥାଏ। 'ସମାଜ ଓ ଲୋକସେବକମଣ୍ଡଳ ତା'ର ଊର୍ଦ୍ଧ୍ୱରେ ନ ଥିଲା। ସେ ବିଷୟରେ ଅଧିକ କଥନ ଏଠି ଅନାବଶ୍ୟକ।

ଓଡ଼ିଶାରେ ବରପୁତ୍ର / ପୁତ୍ରୀମାନଙ୍କର ଅଭାବ ନାହିଁ। ଓଡ଼ିଶାର ଏହି ମହାନ ବିଭୂତିମାନଙ୍କୁ କସ୍ମିନକାଳେ ବାବୁଜୀ ନ୍ୟୁନ କରୁ ନ ଥିଲେ। ପୂଜ୍ୟପୂଜାରେ ଦୃଢ଼ ବିଶ୍ୱାସୀ ବାବୁଜୀଙ୍କର ଲକ୍ଷ୍ୟ ଥିଲା ଉତ୍କଳମଣି ଓ ଉତ୍କଳଗୌରବ ଆଦିଙ୍କ ଭଳି ଓଡ଼ିଶାରେ ନୂଆ ଆଦର୍ଶ ପୁରୁଷ ସୃଷ୍ଟି ହୁଅନ୍ତୁ, ନୂତନ ପ୍ରତିମାନ ତିଆରି ହେଉ। ସେଥିପାଇଁ 'ସମାଜ'ର ପୃଷ୍ଠା ସେ ଉନ୍ମୁକ୍ତ ରଖିଥିଲେ ଏବଂ ଅପସଂସ୍କୃତିର ପ୍ରସାରକୁ ନିରୁତ୍ସାହିତ କରି ଏକ ବିଜ୍ଞାନ ଭିତ୍ତିକ, ବିଚାରଶୀଳ, ସମୃଦ୍ଧ ନୂଆପିଢ଼ି ସୃଷ୍ଟି କରିବା ଥିଲା ତାଙ୍କର ଲକ୍ଷ୍ୟ। ଶସ୍ତା ଅରୁଚିକର ଓ ସମାଜର କ୍ଷତିସାଧନକାରୀ ବିଜ୍ଞାପନକୁ ସେ 'ସମାଜ'ରେ ନିଷିଦ୍ଧ କରିଥିଲେ ଏବଂ ଏଥିପାଇଁ ଆର୍ଥିକ କ୍ଷତିକୁ ସେ ଭ୍ରୂକ୍ଷେପ କରୁ ନ ଥିଲେ।

ଏକ ଦାୟିତ୍ୱ ସମ୍ପନ୍ନ, ଉତ୍ତରଦାୟୀ, ଲୋକାଭିମୁଖୀ ଖବରକାଗଜ ନିର୍ମାଣ କରିବା ସହ ଏହାକୁ ଲୋକସ୍ୱାର୍ଥର ଜାଗ୍ରତ ପ୍ରହରି କରିବାକୁ ଯାହାସବୁ ଦରକାର ତାହା ସେ ପ୍ରାଣପଣେ କରୁଥିଲେ। ସେଥିପାଇଁ ସେ ତିଆରି କରିଥିଲେ ଏକ ଆଦର୍ଶ ସମ୍ବାଦପତ୍ରର ଧାରା ଯାହା 'ସମାଜ'ର 'କୋର୍ ଭ୍ୟାଲୁ'ର ଆଧାର ଥିଲା। ତଥ୍ୟ ସତ୍ୟ, ଭାଷା ସରଳ ଓ ସଂଯତ ଏବଂ ସର୍ବଜନଗ୍ରାହୀ ହେଉ ଏହା ଥିଲା ତାଙ୍କ ସମ୍ପାଦନାଶୈଳୀର ପ୍ରମୁଖ ଧାରା। ସେଥିପାଇଁ 'ସମାଜ' ପାଲଟିଥିଲା ପାରିବାରିକ ଖବରକାଗଜ।

ସବୁ ଆରମ୍ଭର ଶେଷ ଥାଏ। 'ସମାଜ'ର ରାଧାନାଥୀୟ ଯୁଗର ମଧ୍ୟ ଅବସାନ ଘଟିଛି। ତାଙ୍କର ତ୍ରୁଟି ବିଚ୍ୟୁତି ଏବଂ ସୀମିତତା ମଧ୍ୟରେ ସେ ଓଡ଼ିଆ ଜାତି ହାତରେ ଯେଉଁ ସମର୍ଥ କାଗଜଟିକୁ ସମର୍ପି ଯାଇଥିଲେ ତାହା ଥିଲା ତାଙ୍କ ଗୁରୁଙ୍କୁ ସେ ଦେଇଥିବା ପ୍ରତିଶ୍ରୁତିର ଫଳ। ଏଥିପାଇଁ ଉପରବାଲା ତାଙ୍କୁ ବୋଧ ହୁଏ ଦୀର୍ଘ ନିରାମୟ ଜୀବନ ଦେଇ ଯଥେଷ୍ଟ ସୁଯୋଗ ଦେଇଥିଲେ। ରାଧାନାଥ ରଥ ନ ଥିଲେ 'ସମାଜ'ର ସ୍ଥିତି ଅବଶ୍ୟ ଭିନ୍ନ ହୋଇଥାନ୍ତା। ତାଙ୍କ ବ୍ୟକ୍ତିତ୍ୱ ଓ କାର୍ଯ୍ୟାବଳୀର ମୋର ଅଧ୍ୟୟନର ନିର୍ଯାସ ହେଲା - ସେ ଏକ ବିଚିତ୍ର ବିଲକ୍ଷଣର ସମାହାର। ସେ ଗମ୍ଭୀର, ସଂଭ୍ରାନ୍ତ, ରକ୍ଷଣଶୀଳ ଅଥଚ ଯୁଗପତ୍ ଉଦାର, ଦରଦୀ ନିଷ୍କପଟ। ବିପ୍ରବାଦୀ ରାଧାନାଥ ରଥ ଅପବାଦ ଭିତରେ ସେ ଥିଲେ ଖ୍ରୀଷ୍ଟିୟାନ, ମୁସଲମାନ, ଦଳିତ, ବୌଦ୍ଧ, ଜୈନ ଆଦି ବିଭିନ୍ନ ସଂପ୍ରଦାୟର ଅତି ନିକଟତର। କଂଗ୍ରେସ ଦର୍ଶନରେ ଦୀକ୍ଷିତ କିନ୍ତୁ ସର୍ବୋଦୟ, ବାମ-କେନ୍ଦ୍ର ଓ ଦକ୍ଷିଣପନ୍ଥୀର ସମ ପ୍ରୋତ୍ସାହକ ସହିତ ଖଟିଖିଆ ଓ ଶ୍ରମିକ ଶ୍ରେଣୀର ସ୍ୱାର୍ଥ ରକ୍ଷା ଥିଲା ତାଙ୍କ ଜୀବନବ୍ରତ। ସାମାଜିକ ଉତ୍‌ଥାନ, ଅନୁଷ୍ଠାନ ନିର୍ମାଣ, ମାନବାଧିକାର, ଶିକ୍ଷା ପ୍ରସାର, ମହିଳା ସଶକ୍ତୀକରଣ, ରାଜ୍ୟର ସର୍ବାଙ୍ଗୀନ ବିକାଶ, ସାମ୍ପ୍ରଦାୟିକ ସଂପ୍ରୀତି, ଧାର୍ମିକ ଓ ଆଧ୍ୟାତ୍ମିକ ବିକାଶ ସବୁ କ୍ଷେତ୍ରରେ ସେ ବଳିଷ୍ଠ ନେତୃତ୍ୱ ପ୍ରଦାନ କରିବାରେ ସଫଳ ହୋଇଥିଲେ।

ଗୋପବନ୍ଧୁ ଓଡ଼ିଶାର ଯେଉଁ ସାମାଜିକ, ଆର୍ଥିକ, ଶୈକ୍ଷିକ ଓ ସାଂସ୍କୃତିକ ବିକାଶର ସ୍ୱପ୍ନ ଦେଖିଥିଲେ ତାହାକୁ ପୂରଣ କରିବାରେ ସେ ନିଜ ସାମର୍ଥ୍ୟ ଅନୁସାରେ ପ୍ରୟାସ କରିଥିଲେ। ତାଙ୍କର ଦୀର୍ଘ ନିରନ୍ତର ଅଭିଯାନ ପଛରେ 'ସମାଜ'ର ଶକ୍ତି ଓ ସମର୍ଥନ ଥାଉ ପଛକେ, ତାଙ୍କ ସାହସ ଓ ଅଦମନୀୟ ପ୍ରବୃତ୍ତି ଯୋଗୁ ସେ ସମାଲୋଚକଙ୍କ ମୁହଁ ବନ୍ଦ କରିଦେଇଥିଲେ। ଜଣେ ଖବର କାଗଜ ସମ୍ପାଦକ ସାମାଜିକ, ରାଜନୈତିକ ସଚେତନତା ସୃଷ୍ଟି କରିବାରେ କେତେ ସଫଳ ହୋଇପାରେ ସେ ଥିଲେ ତାହାର ଉଦାହରଣ।

ସେଥିପାଇଁ ତାଙ୍କ ସାମଲୋଚକମାନେ ନିରାଶ ହେଉଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକ ତାଙ୍କ ପାଖରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଉଥିଲେ। ତାଙ୍କ କାର୍ଯ୍ୟର ନିରର୍ଥକତା ଓ ଅବଗୁଣକୁ ପଦାରେ ପକାଇ ପାରୁ ନ ଥିଲେ। ଜଣେ ସଫଳ ସମ୍ପାଦକ ତା'ର କାଗଜ ମାଧ୍ୟମରେ କ୍ଷମତାର ଏକ ପ୍ରମୁଖ ସମାନ୍ତରାଳ କେନ୍ଦ୍ର କିପରି ହୋଇପାରେ ଓ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭର ଶକ୍ତି କେତେ ରାଧାନାଥ ବାବୁ ତାହା ପ୍ରମାଣ କରିବାରେ ସଫଳ ହୋଇଥିଲେ। ବାବୁଜୀ 'ସମାଜ'ର କେବଳ ବିବେକରକ୍ଷକ ନ ଥିଲେ ସେ ମଧ୍ୟ 'ଗେଟ୍ କିପର' ଭୂମିକା ନିର୍ବାହ କରୁଥିଲେ। ଖବରର ସଂଜ୍ଞା ପରିବର୍ତ୍ତନ, ପେଡ୍ ନ୍ୟୁଜ୍, ଆଡ୍‌ଭଟରିଆଲ୍, ଶସ୍ତା ଲୋକପ୍ରିୟତା ଅର୍ଜନ ପାଇଁ ମନଇଚ୍ଛା 'ସମାଜ'ର ବ୍ୟବହାର, ସାମ୍ବାଦିକଙ୍କ କ୍ଷମତା ଖର୍ବ, ସବୁ କଥା ମ୍ୟାନେଜର ସର୍ବସ୍ୱ-ଏସବୁ ତାଙ୍କୁ କ୍ରମଶଃ ଅତିଷ୍ଠ କରିଥିଲା। ଏହା ଥିଲା ବୋଧହୁଏ ତାଙ୍କ ପାଇଁ ସମାଜବାଦୀ ବ୍ୟବସ୍ଥାରେ ପୁଂଜିବାଦୀ ଔଷଧ ସଦୃଶ। ବାବୁଜୀଙ୍କ ଜୀବଦଶାରେ ପେଡ୍ ମ୍ୟାନେଜର ବ୍ୟବସ୍ଥା 'ସମାଜ'ରେ ସାମୟିକ କାର୍ଯ୍ୟକାରୀ ହେଲା। ପେଡ୍ ଏଡିଟର ଆସିବା ପାଇଁ ପଥ ପରିଷ୍କାର ହେଉଥିଲା। ଏସବୁ ପରିବର୍ତ୍ତନ ଓ ସଂସ୍କାର ଭିତରେ ଅସଲରେ 'ସମାଜ'ର ଆତ୍ମାଟି ଅଣନିଃଶ୍ୱାସୀ ହୋଇପଡ଼ିଥିଲା।

ସାମ୍ବାଦିକ କର୍ମଚାରୀ ନିଯୁକ୍ତିରେ ବାବୁଜୀ ପ୍ରତିଭା, ଦକ୍ଷତା, ନିଷ୍ଠା ଓ ସଚ୍ଚୋଟତା ଆଦିର ଯେଉଁ ଉଚ୍ଚମାନ ନିର୍ଦ୍ଧାରଣ କରି ତାହାକୁ ପାଳନ କରୁଥିଲେ। ପରବର୍ତ୍ତିତ ବ୍ୟବସ୍ଥାରେ ତାହାକୁ ପାଳନ କରିହେଲା ନାହିଁ। ଫଳରେ 'ସମାଜ' ସଂସ୍କୃତି ଓ ବ୍ୟବସ୍ଥା ସହ ଅବଗତ ନ ଥିବା ବହୁ କର୍ମଚାରୀ ପଶିଆସିଲେ ଏବଂ ଅନୁଷ୍ଠାନର କର୍ମ ସଂସ୍କୃତି, ନୀତି ଓ ମୂଲ୍ୟବୋଧ କ୍ରମଶଃ କ୍ଷୟିତ ହେଲା। ପ୍ରତିବାଦକାରୀ କର୍ମଚାରୀ ସଂଗଠନକୁ ଭାଙ୍ଗିଦେବା ସହ କର୍ମଚାରୀଙ୍କ ବିରୋଧରେ ଦମନମୂଳକ ନୀତି ଆରମ୍ଭ ହେଲା। ଏହା ସହିତ କିଛି ପୁରୁଣାକର୍ମଚାରୀଙ୍କୁ ଚାକିରି ଛାଡ଼ିବାକୁ ପଡ଼ିଲା କିମ୍ବା ଆତଙ୍କିତ

ଅବସ୍ଥାରେ ଚୁପ୍ ରହିବାକୁ ହେଲା। ହଠାତ୍ ସବୁ ବଦଳିଗଲା। ଦୀର୍ଘ ୫୦ବର୍ଷ କାଳ ଧରି ବାବୁଜୀ ଯେଉଁ ଶୃଙ୍ଖଳା, ଅନୁଶାସନ, ନୀତି ଓ ବ୍ୟବସ୍ଥା ଲାଗୁ କରି 'ସମାଜ'କୁ ଏକ ନିଆରା ଅନୁଷ୍ଠାନ ଭାବେ ଗଢ଼ି ତୋଳିଥିଲେ ତାହା ତାଙ୍କ ଜୀବଦ୍ଦଶାରେ ଏକ ଭିନ୍ନ ମାର୍ଗରେ ଚାଲିଲା। ପରିଣତ ବୟସରେ ସଜ୍ଞାନରେ ଥିବା ବାବୁଜୀ ଏହି ପତନର ଧାରାକୁ ଦେଖୁଥିଲେ ଓ ବୁଝୁଥିଲେ ସତ; କିନ୍ତୁ ତାଙ୍କର କିଛି କର୍ତ୍ତୃତ୍ୱ ନ ଥିଲା ଏହାକୁ ରୋକିବାକୁ। ନିଜ ସୃଷ୍ଟିରେ ସେ କ୍ରୀତଦାସ ପାଲଟିଯାଇଥିଲେ। ହଁ ମୋ ବିଚାରରେ ରାଧାନାଥ ବାବୁ ଏହି ସ୍ଥିତି ପାଇଁ ବହୁଳ ଭାବେ ନିଜେ ଦାୟୀ। ନା' ଠିକଣା ସମୟରେ ଉଚିତ ପଦକ୍ଷେପ ନେଲେ, ନା ଯାହାକୁ ଆଣିଲେ ତାଙ୍କୁ ଯଥାର୍ଥ ଭାବେ କୂଳରେ ଲଗାଇଲେ। ଉତ୍ତରାଧିକାର ନିର୍ଣ୍ଣୟରେ ସେ ଠିକ ସମୟରେ ବୋଧହୁଏ ଯଥାର୍ଥ ନିଷ୍ପତ୍ତି ନେଇ ପାରି ନ ଥିଲେ। 'ସମାଜ'ରେ ଯେତେବେଳେ ପରିବର୍ତ୍ତନ ଓ ନୂଆ ନେତୃତ୍ୱର ଆବଶ୍ୟକତା ପଡୁଥିଲା ତାହାକୁ ବାବୁଜୀ ବିଳମ୍ବିତ କରିଦେଇଥିଲେ। ତାଙ୍କ ଦୁନିଆରେ ସେ ବୋଧେ ଅନ୍ୟର ପ୍ରବେଶ ଚାହୁଁ ନ ଥିଲେ। ବାବୁଜୀ ଆହତ ହୃଦୟରେ ଆଖି ବୁଜିଲେ। ଆଉ ତାଙ୍କ ଜୀବନ ଦୀପ ସହ ଲିଭିଗଲା 'ସମାଜ'ର ଏକ ଗୌରବୋଜ୍ଜ୍ୱଳ ଯୁଗ। ସେ ଯୁଗଟିକୁ 'ସମାଜ' ଇତିହାସର ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ।

ତା'ପରେ ଯାହାସବୁ ଘଟିଲା ଏବଂ ଘଟୁଛି ତାହା ଚଳନ୍ତି ଇତିହାସର ଗୋଟିଏ ଗୋଟିଏ ଅଧ୍ୟାୟ। ଆଧୁନିକୀକରଣ ଓ ବ୍ୟାବସାୟିକ ପରିଚାଳନା ବ୍ୟବସ୍ଥାରେ ଯେଉଁ 'ନୂଆ ସଂସ୍କୃତି' ସୃଷ୍ଟି ହେଲା ତା'ର ଭଲମନ୍ଦ ସ୍ୱତନ୍ତ୍ର ଆଲୋଚନା ଲୋଡ଼େ। ସେ କଥା ଅନ୍ୟ କେବେ।

'ସମାଜ'ରେ ବାବୁଜୀ ଗଣତାନ୍ତ୍ରିକ ଚେତନା ଓ ପ୍ରତିବାଦର ସ୍ୱରକୁ କେତେକାଂଶରେ ବରଦାସ୍ତ କରିଥିଲେ। କିଂଚିତ୍ ଭୟର ବାତାବରଣ ଥିଲେ ମଧ୍ୟ ଆତଙ୍କ ନ ଥିଲା। 'ସମାଜ'ରେ ବସିଜିମ୍ ନ ଥିଲା। ଜଣେ ବସ୍,

ବାବୁଜୀ। ଏଠି କେଇ କାହାରିକୁ 'ସାର୍' ବୋଲି ସମ୍ବୋଧନ କରୁ ନ ଥିଲେ। ସମସ୍ତେ ସମସ୍ତଙ୍କ ନାମ ସହିତ ବାବୁ ଲଗାଇ ସମ୍ବୋଧନ କରୁଥିଲେ। ସେ ଧାରା ମଧ୍ୟ କ୍ରମଶଃ ବଦଳିଗଲା।

ଏହି ପରିବର୍ତ୍ତନ ଧାରାରେ ସବୁଠୁ ଅଧିକ କ୍ଷତିଗ୍ରସ୍ତ ଓ ନିର୍ଯାତିତ ହୋଇଥିଲେ 'ସମାଜ'ର ସ୍ଥାୟୀ ସାମ୍ବାଦିକଗଣ; ମୁଁ ଓ ମୋର ଅନେକ ବରିଷ୍ଠ ଏବଂ କନିଷ୍ଠ ସହଯୋଗୀ। ଗୋଟିଏ କାଗଜର ସବୁଠୁ ବଡ଼ ପୁଂଜି ହେଉଛି ଏହାର ସାମ୍ବାଦିକ। ସେମାନେ ସର୍ବଦା ଏକ ମୁକ୍ତ, ଉଦାର, ଉତ୍ତେଜନା ରହିତ, ଭୟମୁକ୍ତ ପରିବେଶ ଲୋଡ଼ନ୍ତି। ଏହା ତାଙ୍କ ସର୍ଜନା ଓ ବୃତ୍ତିଗତ ଉତ୍କର୍ଷ ପାଇଁ ସହାୟକ ହୋଇଥାଏ। ବାବୁଜୀ ସେ କଥାଟି ଭଲଭାବେ ଜାଣିଥିଲେ ଏବଂ ଏଥିପାଇଁ ନିଜର ସାମ୍ବାଦିକମାନଙ୍କୁ ଯଥେଷ୍ଟ ସ୍ୱାଧୀନତା ଓ ସୁରକ୍ଷା ଦେଇଆସୁଥିଲେ। ହଁ ଏକଥା ସତ ଯେ ଆମ ଭିତରୁ କେତେକ ଏହି ସୁଯୋଗର ଦୁରୁପଯୋଗ କରିବାକୁ ଚେଷ୍ଟା କରୁଥିଲେ ହେଁ ବାବୁଜୀଙ୍କ ଆକଟ ଓ ନିରନ୍ତର ତଦାରଖ ଯୋଗୁଁ ବିଶେଷ ସଫଳ ହୋଇପାରୁ ନ ଥିଲେ। ନୂଆ ବ୍ୟବସ୍ଥାରେ ଯେଉଁ କଠୋର ଶାସନତନ୍ତ୍ର ଓ ଆତଙ୍କରାଜ ଆରମ୍ଭ ହେଲା ସେଥିରେ ସାମ୍ବାଦିକମାନେ ସବୁଠୁ ଅଧିକ କ୍ଷତିଗ୍ରସ୍ତ ହେଲେ। ଏହି ଦମନତନ୍ତ୍ରର ନେତୃତ୍ୱ ନେଇଥିଲେ କାଗଜକୁ ବାଗେଇବା, ସଜାଡ଼ିବା ଉଦ୍ଦେଶ୍ୟରେ ଆସିଥିବା କତିପୟ ଅର୍ବାଚୀନ। ଆମେ ସବୁ ଯେଉଁମାନେ ବାବୁଜୀଙ୍କ ସମୟରେ ବିଶେଷ ସ୍ୱାଧୀନତା ପାଇଥିଲୁ ତାହା ଆମ ଭିତରେ ଏକ ନୂଆ ଚେତନା ଓ ଭାବ ସୃଷ୍ଟି କରିଥିଲା। ଆମେ ଅଧିକ ଯୁକ୍ତିପ୍ରବଣ ହୋଇପଡ଼ିଥିଲୁ ଏବଂ ମ୍ୟାନେଜରପ୍ରମୁଖ ଶାସନ ବ୍ୟବସ୍ଥାକୁ ଗ୍ରହଣ କରିପାରି ନ ଥିଲୁ। ସମ୍ପାଦକ ଆମର ପ୍ରଭୁ ବୋଲି ଆମେ ଧରିନେଇଥଲୁ। ତେଣୁ ସମ୍ପାଦନାରେ ମ୍ୟାନେଜରଙ୍କ ହସ୍ତକ୍ଷେପ ଆମ ପାଇଁ ଗ୍ରହଣୀୟ ନ ଥିଲା। ମ୍ୟାନେଜମେଣ୍ଟ କିନ୍ତୁ ଏହାକୁ ଗ୍ରହଣ କଲାନାହିଁ। ତେଣୁ ସାମ୍ବାଦିକ ଦଳନ ଓ ପରିଷ୍କରଣ ପ୍ରକ୍ରିୟାରେ ଆମେ ଅନେକ କ୍ଷତିଗ୍ରସ୍ତ, ଅପମାନିତ ଓ ଲାଂଛିତ

ହେଲୁ। ପଦୋନ୍ନତିକୁ ରୋକାଗଲା, ବଦଳି କରାଗଲା, ଲେଖିବାକୁ ବାରଣ କରାଯିବା ସହ ବିଭିନ୍ନ ଆଳ ଦେଖାଇ ଆମର ବେତନ କଟାଗଲା। ଅବସର ବୟସ ୬୦ରୁ ୫୮ ବର୍ଷକୁ କମାଇ ଦିଆଗଲା। ଅନେକଙ୍କୁ ଜବରଦସ୍ତ ବିଦା କରାଗଲା। 'ସମାଜ'ରେ ସବୁ ବିଶୃଙ୍ଖଳା ପାଇଁ ପୁରୁଖା ସାମ୍ବାଦିକମାନଙ୍କୁ ମୁଖ୍ୟତଃ ଦାୟୀ କରାଗଲା। ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ଭଲ କାମ କରୁଥିବା ଅନେକ ସାମ୍ବାଦିକଙ୍କୁ ମୁଖରା, ଅବାଧ୍ୟ ଓ ବିଶୃଙ୍ଖଳ କହି ହରକତ କରାଗଲା; କିନ୍ତୁ କାମ ଚୋର, ବଚସ୍କରମାନେ ପ୍ରୋତ୍ସାହିତ ହେଲେ। କର୍ତ୍ତୃପକ୍ଷ ଶେଷ ଆଡ଼କୁ ସତ୍ୟାସତ୍ୟ ବୁଝିବା ପରେ କିଛି ପଦକ୍ଷେପ ନେଲେ ସତ, ଏହା ସ୍ଥିତିକୁ ନିୟନ୍ତ୍ରଣ କରିବାରେ ସଫଳ ହୋଇ ନ ଥିଲା।

ବାବୁଜୀଙ୍କ ପରେ ମନୋରମା ଦେବୀ ଦୀର୍ଘ କାଳ 'ସମାଜ'ର ସମ୍ପାଦକ ରହିଲେ। ତାଙ୍କର ସମସ୍ତ ଯୋଗ୍ୟତା ସତ୍ତ୍ୱେ ତାଙ୍କୁ ବସ୍ତୁତଃ ବନ୍ଧନୀ ଭିତରେ ରଖାଯାଇଥିଲା। ତା'ପରେ ସମ୍ପାଦକ ପଦ ଏକ ମ୍ୟୁଜିକାଲ ଚେୟାରରେ ପରିଣତ ହେଲା। ପରିଚାଳକ ପଦର ମଧ୍ୟ ସମାନ ଅବସ୍ଥା।

ଏବେ ଲୋକସେବକମଣ୍ଡଳ ଓ 'ସମାଜ'ର ନୂଆ ପରିଚାଳନା ମଣ୍ଡଳୀ ଦାୟିତ୍ୱ ନିର୍ବାହ କରୁଛନ୍ତି। ଯେତେବେଳେ ନୂଆ ଓ ଯୁବ ସଭାପତି ଦୀପକ ମାଳବୀୟ ଦେଖାହୁଅନ୍ତି ଗୋଟିଏ କଥା ବାରମ୍ବାର କହନ୍ତି। "ଆପଣ ରାଧାନାଥ ବାବୁଙ୍କ ସମୟର ସାମ୍ବାଦିକ ଓ 'ସମାଜ'ର ପୁରୁଖା କର୍ମଚାରୀ। କାଗଜକୁ ଏପରି ତିଆରି କରନ୍ତୁ ଯେପରି ଏହା ରାଧାନାଥ ବାବୁଙ୍କ ବେଳେ ହେଉଥିଲା।" ଏହାର ଉତ୍ତର ମୋ ପାଖରେ ଥିଲେ ମଧ୍ୟ ମୁଁ ଦେବାକୁ ଉଚିତ ମନେ କରୁ ନ ଥିଲି ବିଭିନ୍ନ କାରଣରୁ।

ଏତିକି ବେଳେ ବାବୁଜୀଙ୍କ କଥା ବହୁତ ମନେ ପଡ଼େ। ଶାସ୍ତ୍ରରେ ପଞ୍ଚପିତାଙ୍କ ବର୍ଣ୍ଣନା ଅଛି। ସେମାନେ ହେଲେ - ଜନ୍ମଦାତା, କନ୍ୟାଦାତା (ଶ୍ୱଶୁର), ଅନ୍ନଦାତା, ଦୀକ୍ଷାଦାତା (ଗୁରୁ) ଓ ଭୟତ୍ରାତା (ସୁରକ୍ଷାଦାତା)।

ସେମାନଙ୍କୁ ସମାଲୋଚନା କରିବା ଏକ ପାପ ବୋଲି ଧରାଯାଏ। ଏହା କିନ୍ତୁ ନିନ୍ଦା ପ୍ରଶଂସାର କଥା ନୁହେଁ, ଏକ ଜଟିଳ ସମୀକ୍ଷା। ବାବୁଜୀ ଅନ୍ନଦାତା ଥିଲେ। ତାଙ୍କ ଅବର୍ତ୍ତମାନରେ 'ସମାଜ' ଦାନା ଯୋଗାଉଛି। ସକଳ ଜଂଜାଳ ଓ ବୃତ୍ତିଗତ ବିପଦ ସତ୍ତ୍ୱେ ଆମକୁ ଏହା ସମାଜରେ ସ୍ୱୀକୃତି ଓ ମର୍ଯ୍ୟାଦା ଦେଇଛି। ପରିବାର ପ୍ରତିପୋଷଣ ସହ ପିଲାଙ୍କୁ ଆମେ ମଣିଷ କରିଛୁ। ବୃତ୍ତିଗତ ଜୀବନର ସାୟାହ୍ନରେ ଆଉ ଦୁଃଖ, ଅନୁଶୋଚନା ଓ କ୍ଷୋଭ ନାହିଁ। ବାବୁଜୀଙ୍କୁ ଦେଖିଛୁ ଓ ତାଙ୍କଠାରୁ ଜୀବନ ଜିଇଁବାର କଳା ଅନେକ ଶିଖିଛୁ। ଅନୁଭବ ଓ ଅନୁଭୂତି ଆମକୁ ନିରହଙ୍କାର କରିଦେଇଛି। ପରିବର୍ତ୍ତନ ହିଁ ଏକମାତ୍ର ସତ୍ୟ ଓ ସ୍ଥାୟୀ ଏକଥା ଭଲଭାବେ ବୁଝିପାରିଛୁ। 'ସମାଜ' ଅନୁଷ୍ଠାନ ୨୦୧୯ରେ ଏକଶହ ବର୍ଷରେ ପଦାର୍ପଣ କରିବ। ଏହା ଅନେକ ଉତ୍‌ଥାନ ପତନ ଦେଖିଛି। ଅସଂଖ୍ୟ ଘଟଣାବଳୀକୁ ନିଜ ବୁକୁରେ ଦସ୍ତାବିଜ କରି ସାକ୍ଷୀ ପାଲଟିଛି। ଇତିହାସ କହେ, ଏକ ସାମାଜିକ ଆବଶ୍ୟକତାରୁ ଜନ୍ମ ଲାଭ କରିଥିବା ଅନୁଷ୍ଠାନ ସହଜରେ ନଷ୍ଟ ହୁଏନା। 'ସମାଜ'ର ଜନ୍ମ ସେଭଳି ଏକ ଆବଶ୍ୟକତାରୁ। ଯେତେଦିନ ପର୍ଯ୍ୟନ୍ତ ଏହା ତା'ର ଦାୟିତ୍ୱ ନିର୍ବାହ କରୁଥିବ ସେତେଦିନ ପର୍ଯ୍ୟନ୍ତ ପ୍ରାସଙ୍ଗିକ ହୋଇ ରହିବ। ଅନୁଷ୍ଠାନ ଖରାପ ହୁଏନା, ଏହାର ଯାତ୍ରା ଓ ବିକାଶ ଏହା ସହିତ ସଂପୃକ୍ତ ମଣିଷମାନଙ୍କ ଦ୍ୱାରା ନିର୍ଦ୍ଧାରିତ ହୁଏ। ସେମାନଙ୍କର ପାରିବାର ପଣିଆ ଉପରେ ସବୁ ନିର୍ଭର କରେ। ରାଧାନାଥ ରଥ ତାହାର ଏକ ବଳିଷ୍ଠ ଉଦାହରଣ। ସବୁ ଆଧୁନିକତା ଓ ବ୍ୟାବସାୟିକ ପରିଚାଳନା ବ୍ୟବସ୍ଥା ମଧ୍ୟରେ ଏବେ ମଧ୍ୟ 'ସମାଜ'ର ଚିହ୍ନରା ପାଠକ ଏଥିରୁ ରାଧାନାଥୀୟ ସଂସ୍କୃତି ଓ ସାମ୍ବାଦିକତାର ସ୍ୱାଦ ଉଣ୍ଡାଳୁଛନ୍ତି। ଯେତେ ନୂଆ ପାଠକ ଆସିଲେ ମଧ୍ୟ 'ସମାଜ'ରୁ ସେମାନେ ଏକ ନିଆରା ସ୍ୱାଦ, ସନ୍ଦେଶ ଖୋଜୁଛନ୍ତି। ଏକ ପୁରୁଣା ବିଶ୍ୱାସ ଓ ଭାବର ବାର୍ତ୍ତା ଦେଉଥିବା 'ସମାଜ' ଖୋଜୁଛନ୍ତି। ବାବୁଜୀ ଓଡ଼ିଆ ଜାତି ହାତରେ 'ସମାଜ' ରୂପି ଏକ ବିଶ୍ୱସ୍ତ ଚେକ୍‌ବୁକ୍ ଛାଡ଼ି ଯାଇଛନ୍ତି। ସେଥିରେ ପ୍ରତ୍ୟେକ୍ ଓଡ଼ିଆ ଗ୍ରାହକ ନିଜର ନାମ ପୂରଣ କରି ସେଇ ଅନୁପମ ସାମ୍ବାଦିକତାର ଧାରାର ହିତାଧିକାରୀ ହୋଇପାରିବେ।

ଯେଉଁମାନେ କହନ୍ତି ରାଧାନାଥୀୟ ସାମ୍ବାଦିକତା ଧାରା ଏକ ଅଚଳ ଦୋଅଣି, ସେମାନେ ବୋଧ ହୁଏ ଏକଦେଶଦର୍ଶୀ। ତେବେ ଗୋଟିଏ କଥା, ସେ ଯେଉଁ ସାମ୍ବାଦିକତାର ଧାରା ସୃଷ୍ଟି କରିଥିଲେ ସେଥିରେ ସରଳତା ଓ ବିଶ୍ୱାସ ବେଶୀ ଏବଂ କୃତ୍ରିମତା, ପରୀକ୍ଷାନିରୀକ୍ଷା କମ୍ ଥିଲା। ବାବୁଜୀ ପୁରୁଣାକାଳିଆ ଲୋକ ଭାବେ ସାଧାରଣତଃ ଦ୍ରୁତ ପରିବର୍ତ୍ତନର ପରିପନ୍ଥୀ ଥିଲେ। ସେ ଖବରରେ ମୂଲ୍ୟ ମିଶ୍ରଣ ଅପେକ୍ଷା ପାରମ୍ପରିକ ରୀତିରେ ଏହାକୁ ଉପସ୍ଥାପନ କରୁଥିଲେ। ଖବରରେ ପୁଟ ଲଗାଇ ତା'କୁ ଫେଣେଇ ଅଖବରକୁ ଖବର କରୁ ନ ଥିଲେ। ସରଳତା, ପ୍ରାଞ୍ଜଳତା, ନିରପେକ୍ଷତା ଓ ଯଥାର୍ଥତା 'ସମାଜ' ଖବର ଓ ସମ୍ପାଦକୀୟର ବିଶେଷତ୍ୱ। ଦେଶ ଦୁନିଆ ବଦଳୁଛି। 'ସମାଜ'କୁ ବଦଳିବାକୁ ପଡ଼ିବ। ବଦଳୁଛି ମଧ୍ୟ। ହେଲେ ସେହି ପରିବର୍ତ୍ତନରେ ପୁରୁଣା ସୁବାସ ରହିବା ଦରକାର। ଏବେ 'ସମାଜ' କିପରି ଅଛି ଓ ଆଗକୁ ଏହା କିପରି ଚାଲିବ ତାହା ଏହାର ଭାଗ୍ୟ ନିଅନ୍ତାଙ୍କ ଦୂରଦୃଷ୍ଟି ଓ ବିଚାର ଉପରେ ନିର୍ଭରଶୀଳ। ଗୋପବନ୍ଧୁ ଯାଇଛନ୍ତି, ରାଧାନାଥ ବାବୁ ନାହାନ୍ତି; କିନ୍ତୁ 'ସମାଜ' ଅଛି ଓ ରହିବ ଏ ବିଶ୍ୱାସ ମୋର ଅଛି। ଯୁଗର ଆବଶ୍ୟକତାରୁ ଜନ୍ମିତ ଏହି ଅନୁଷ୍ଠାନ ଯୁଗଉପଯୋଗୀ ହେବାକୁ ଅବଶ୍ୟ ବାଧ୍ୟ।

'ସମାଜ' ଏବେ ମଧ୍ୟ ସାଧାରଣ ଜନତାର ମୁଖପତ୍ର ହୋଇରହିଛି। ମହାବିଷ୍ଣୁଙ୍କ ପରି ଲୋକଙ୍କର ବିଶ୍ୱାସ ଏହା ଉପରେ ଅତୁଟ ରହିଛି। ଆଜି ମଧ୍ୟ 'ସମାଜ'ରେ କୌଣସି ଖବର ନ'ବାହାରିଲେ ତାହାର ବିଶ୍ୱସନୀୟତା ଓ ପ୍ରମାଣସିଦ୍ଧତାକୁ ପ୍ରଶ୍ନ କରାଯାଏ। କେତେକଙ୍କ ପାଇଁ ଏହା ସରକାରୀ, ବୋଇଲେ ଅଫିସିଆଲ ଖବର କାଗଜ। ଏହାକୁ ଲୋକେ ବେସରକାରୀ ଗେଜେଟ ବୋଲି ଭାବନ୍ତି, ଯାହା ସରକାରୀ ଗେଜେଟଠାରୁ ଅଧିକ ଶକ୍ତିଶାଳୀ ଓ ପ୍ରମାଣସିଦ୍ଧ। ଏହି ସଫଳତାର ଶ୍ରେୟ ନେବାକୁ ବାବୁଜୀଙ୍କ ସହ କେହି ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଅଛନ୍ତି ବୋଲି ମୁଁ ଭାବେ ନାହିଁ।

## ବାବୁଜୀ ଓ 'ସମାଜ'

ବାବୁଜୀ, ମନେ ପଡୁଛି ଆପଣ ମୋ ସାର୍ଟିଫିକେଟ ଦେଖି ମୋତେ କହିଥିଲେ, "ଏତେ ଭଲ କ୍ୟାରିୟର ତୁମର, ତମେ କ'ଣ 'ସମାଜ'ରେ ରହିବ ? ମୁଁ ଭାବୁଛି ତୁମେ ଏହାକୁ 'ସ୍ପ୍ରିଙ୍ଗବୋର୍ଡ' ଭାବେ ବ୍ୟବହାର କରିବାକୁ ଆସିଛ।" ମୁଁ ସେତେବେଳେ ଆପଣଙ୍କୁ କଥା ଦେଇଥିଲି, 'ନା' ମୁଁ ଏଠି ରହିବି, ମୋତେ ସୁଯୋଗ ମିଳିଲେ କୃତଜ୍ଞ ହେବି।" ସୁଲି ନାନୀ (ମନୋରମା ଦେବୀ) ତାହାର ସାକ୍ଷୀ। ଆପଣ ଥିଲେ ପ୍ରଭୁ ଓ ମୁଁ ଥିଲି ଜଣେ ବାଳକ ତୁଲ୍ୟ। ଆପଣଙ୍କ ସହିତ ମୁଁ କାମ କରିବାବେଳେ ଆପଣଙ୍କର ଅତି ପ୍ରିୟ ଓ ନିକଟତର ନ ଥିଲି। ଆପଣଙ୍କ ସହ ଯୁକ୍ତିତର୍କ କରିଥିବାରୁ ଆପଣ ମୋତେ କେଇବାର ଗାଳିମନ୍ଦ କରିଛନ୍ତି। ଆପଣଙ୍କ ଭାଷାରେ ମୋ 'ଇମ୍ପେରିଟେନ୍ସ' ଓ ଲେଖାର ମୋ 'ମୁରିଙ୍ଗସ୍'କୁ ସୁଧାରିଛନ୍ତି। ସେ ସବୁ ସ୍ପଷ୍ଟ ମନେ ଅଛି। ମୁଁ ଖୁସି ଆପଣ ମୋ କାମ ଓ ନିଷ୍ଠାରେ କେବେ ଅସନ୍ତୋଷ ପ୍ରକାଶ କରିନାହାନ୍ତି।

କେହି ଜଣେ କହିଥିଲେ - "An editor rides on the whirlwind and directs the storm". ବାବୁଜୀଙ୍କଠାରେ ତାହାର ପରିପ୍ରକାଶ ଦେଖିବାକୁ ମିଳିଥିଲା। ସେ ଆତ୍ମସନ୍ତୋଷଠାରୁ ଦୂରରେ ଥିଲେ। ସର୍ବଦା 'ସମାଜ' ପାଇଁ ଅଧିକ କିଛି କରିବାକୁ ଚାହିଁଥିଲେ। ଏଥିପାଇଁ ତାଙ୍କ କାଗଜଟି ବୋଧହୁଏ ଭଲ ହେଉଥିଲା, ସବୁରି ମନକୁ ଛୁଉଁଥିଲା। ଜଣେ ବିଦ୍ୱାନଙ୍କ ଉକ୍ତି ମନେ ପଡ଼େ। ସେ କହିଥିଲେ -

"The best fiction is far more true than any journalism." ମୋ ବିଚାରରେ ରାଧାନାଥ ରଥ ଓ ତାଙ୍କ ଜୀବନ କାହାଣୀ ଏହି ଲେଖାଠାରୁ ଅଧିକ ସତ୍ୟ ଓ ଚିତ୍ତାକର୍ଷକ।

*ବାର୍ତ୍ତା ସମ୍ପାଦକ 'ସମାଜ', କଟକ*
*ଫୋନ୍- ୯୪୩୯୨୪୧୫୪୧*

## ଅନ୍ୟ ରାଧାନାଥ ରଥ ସ୍ମାରକ ପ୍ରକାଶନ

୧. ଭାରତୀୟ ବିବାହ ସଂସ୍କାର ଇତିହାସ
- (ଇତିହାସଚାର୍ଯ୍ୟ) ୱିଶ୍ୱନାଥ କାଶୀନାଥ ରାଜୱାଡ଼େ
ଅନୁବାଦକ - ନୀଳକଂଠ ରଥ
(ପ୍ରକାଶ: ଚର୍ଚ୍ଚା ପବ୍ଲିକେଶନ୍, ୨୦୧ ଖାରବେଳ ନଗର, ଭୁବନେଶ୍ୱର-୧)

୨. ମୁଇଁ ସୁମନୀ କହୁଛେ
- ସୁମନୀ ଝୋଡ଼ିଆ

୩. ଖରସୁଆଁରୁ କୁଲାବିରି
- ନିଶାକର ଦାସ

୪. ପ୍ରାଥମିକ ସ୍ତରରେ ଭାଷାଓ ଗଣିତ ଶିକ୍ଷା
- (ସଂପାଦକ) ନୀଳକଂଠ ରଥ

୫. ମୋ ପ୍ରବାସ
(୧୮୫୭ର ଦେଖାଶୁଣା ବୃତାଂତ)
- ଗୋଡ଼ସେ ଗୁରୁଜୀ
ଅନୁବାଦକ -ନୀଳକଂଠ ରଥ

୬. Correspondence of Pandit Gopabandhu
ଦାସେ ଆପଣେଂକ ଚିଠିପତ୍ର
ପ୍ରକାଶକ: ନୀଳକଂଠ ରଥ

୭. ସାଓ୍ୱରକରଂକ ସାମାଜିକ ବିଚାର
ଅନୁବାଦକ: ନୀଳକଂଠ ରଥ

ଉପରୋକ୍ତ ସାତୋଟି ପୁସ୍ତକର ପ୍ରକାଶକ / ବିତରକ ହେଲେ-

ଶିକ୍ଷାସଂଧାନ
ଏନ.ଡ଼ି ୭, ଭି.ଆଇ.ପି ଏରିଆ,
ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର ୭୫୧୦୧୫

